# ପୀୟୂଷ-ପ୍ରବାହ

(ଭିକ୍ଟର୍ ହିଉଗୋଙ୍କ "ଲ ମିଜାରେବ୍‌ଲ୍" ନାମକ

ଉପନ୍ୟାସର ଗଳ୍ପାବଲମ୍ବନରେ ସଙ୍କଳିତ)

ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ.

# PIYUSHA-PRABAHA

BY

**Ramachandra Acharya**, B. A.

Published by

**THE STUDENTS' STORE**

PRINTERS & PUBLISHERS

BERHAMPUR

1935

**Rs. 1-4-0**

# ସୂଚୀ

## ଆଚାର୍ଯ୍ୟଙ୍କ ଅପ୍ରକାଶିତ ବହି

| | | |
|---|---|---|
| ୧ । କନକ ସୁନ୍ଦରୀ | (ଉପନ୍ୟାସ) | ପ୍ରକାଶିତ ହେବ |
| ୨ । ବୀରାଙ୍ଗନା | ,, | ,, |
| ୩ । ପାଦୁକା ପୂଜା | (ପୌ: ଉପନ୍ୟାସ) | ,, |
| ୪ । ବର୍ଜ୍ଜନ | ,, | ,, |
| ୫ । ଶିକ୍ଷିତା | (ସାମାଜିକ ଉପନ୍ୟାସ) | ,, |
| ୬ । ରୂପକ ରାମାୟଣ | | ,, |
| ୭ । ମଠ ରହସ୍ୟ | (ପ୍ରହସନ-ସଂସ୍କାରମୂଳକ) | ,, |
| ୮ । ପ୍ରାଚୀନ ଭାରତ | | ,, |
| ୯ । ଶିଳ୍ପ ମଞ୍ଜରୀ | | ,, |
| ୧୦ । ଅରୁଣବାଳା | (ପୌ: ଉପନ୍ୟାସ) | ,, |

# ନୂତନ ବହି

| | | | |
|---|---|---|---|
| ୧ । କଳାପାହାଡ଼ (ଐତିହାସିକ ଉପନ୍ୟାସ) | ଶ୍ରୀ ମୁକୁନ୍ଦ ଦାଶ | ଟ ୧ । |
| ୨ । ଅନ୍ନପୂର୍ଣ୍ଣା | ,, | ୰ ତାରଣୀଚରଣ ରଥ | ଟ ୦ ୳ |
| ୩ । ପୀୟୂଷ-ପ୍ରବାହ | ,, | ୰ ରାମଚନ୍ଦ୍ର ଆଚାର୍ଯ୍ୟ | ଟ ୧ । |
| ୪ । ଚନ୍ଦ୍ରମା | ,, | ,, | ବାରଅଣା |
| ୫ । ଘରଓଡ଼ିଆ | ,, | ,, | ଟ ୧ । |
| ୬ । ବାଲ୍ମୀକ (ପୌରାଣିକ ଉପନ୍ୟାସ) | | ,, | ବାରଅଣା |
| ୭ । ଅନସୂୟା | ,, | ,, | ଟ ୦ ୳ |
| ୮ । ଶାନ୍ତିଧାରା (ପ୍ରବନ୍ଧାବଳୀ) | | ଶ୍ରୀ ବାସୁଦେବ ମହାପାତ୍ର | ବାରଅଣା |
| ୯ । ପ୍ରବନ୍ଧ ପ୍ରବାହ ( ,, ) | | | ଦଶଅଣା |
| ୧୦ । ପ୍ରବନ୍ଧ ସାର | | ଶ୍ରୀ ଜଗବନ୍ଧୁ ସିଂହ | ଏକଟଙ୍କା |
| ୧୧ । ରଚନା ବନ୍ଧୁ | | ଶ୍ରୀ ବାସୁଦେବ ମହାପାତ୍ର | ଦଶଅଣା |
| ୧୨ । ନେପୋଲିୟନ୍ | | ଶ୍ରୀ ବନମାଳୀ ପଣ୍ଡା | ବାରଅଣା |
| ୧୩ । ଶିବାଜୀ | | ଶ୍ରୀ ନୀଳକଣ୍ଠ ରଥ | ଟ ୦ ୳ |
| ୧୪ । ଶୁକଦେବ | | ଶ୍ରୀ ହରିଚରଣ ଗିରି | ତିନଅଣା |
| ୧୫ । ରାଣା ପ୍ରତାପ ସିଂହ | | ଶ୍ରୀ ଦୟାନିଧି ମିଶ୍ର | ଦଶଅଣା |
| ୧୬ । ଶ୍ରୀଚୈତନ୍ୟ ଦେବ | | ଶ୍ରୀ ଗଣପତି ପତି | ଟ ୦ ୳ |
| ୧୭ । ଅର୍ଜୁନ | | ,, | ଦଶଅଣା |
| ୧୮ । ଯଯାତି | | ଶ୍ରୀ ଶ୍ରୀକଣ୍ଠ ଶତପଥୀ | ଟ ୦ ୳ |
| ୧୯ । ଦାସତ୍ବ ବିମୋଚନ | | ଶ୍ରୀ ଗୋଦାବରୀଶ ମିଶ୍ର | ଟ ୧ ୳ |
| ୨୦ । ପଞ୍ଚଶର | | ,, | ବାରଅଣା |
| ୨୧ । ଭକ୍ତି ଯୋଗ | | ଶ୍ରୀ ଗୋଦାବରୀଶ ମହାପାତ୍ର | ଏକଟଙ୍କା ବାରଅଣା |
| ୨୨ । ଶରୀର-ବିଜ୍ଞାନ | | ଶ୍ରୀ ସୀତାରାମ ହୋତା | ଛଅଣା |
| ୨୩ । ପ୍ରବେଶିକା ଭାରତ ଇତିହାସ | | ଶ୍ରୀ ଶିବପ୍ରସାଦ ଦାସ | ଟ ୨ |
| ୨୪ । English-English-Oriya Dictionary. | | | ଟ ୨ । |

*

# ପୀୟୂଷ-ପ୍ରବାହ

## ସ୍ନେହଶୀଳ ପିତା

ଆଜ ପୂର୍ଣ୍ଣିମା ରାତ୍ରି, ଆକାଶ ମଣ୍ଡଳରେ ପୂର୍ଣ୍ଣଚନ୍ଦ୍ର ସମୁଦିତ । ଗତ କାଲି ସନ୍ଧ୍ୟା ଓ୍ୱାଟର୍‌ଲୁ ଯୁଦ୍ଧର ଅବସାନ ହୋଇଅଛି । ଯୁଦ୍ଧକ୍ଷେତ୍ରରେ ଲକ୍ଷାଧିକ ନରଶବ ପତିତ, ରୁଧିର ତରଙ୍ଗରେ ଭୂତଳ ରକ୍ତମାକାର ଧାରଣ କରିଅଛି ।

ନିଶାଗମରେ ଚତୁର୍ଦ୍ଦିଗରୁ ଦଳେ ଦଳେ ଦସ୍ୟୁ ଆସି ସମର କ୍ଷେତ୍ରରେ ଉପସ୍ଥିତ ହେଲେ । ଏମାନଙ୍କର କାର୍ଯ୍ୟ ମୃତ ସୈନିକଗଣଙ୍କର ମୋଷଣ । ବ୍ୟବସାୟଟି ସାମାନ୍ୟ ଲାଭଜନକ ନୁହେଁ । ସୈନିକମାନଙ୍କ ନିକଟରେ ରହେ ମାସର ଦରମା ଟଙ୍କା, ଅସ୍ତ୍ର ଶସ୍ତ୍ର, ମୂଲ୍ୟବାନ୍ ପରିଚ୍ଛଦ, ଚେନ ଘଡ଼ି, କ୍ୱଚିତ୍ ବା ହୀରକ ମୁଦ୍ରିକା । ଓ୍ୱାଟର୍‌ଲୁର ତିନି ମାଇଲ ବ୍ୟାପୀ ଯୁଦ୍ଧକ୍ଷେତ୍ରରେ ଆଜ କୋଟି ମୁଦ୍ରା ବିକୀର୍ଣ୍ଣ ରହିଅଛି । ବାରଣ କରିବାକୁ କେହି ନାହିଁ—ଯେଉଁମାନଙ୍କର ଧନ ସେମାନେ ଚିର ନିଦ୍ରାରେ ଅଭିଭୂତ । ଯେ ଯେତେ ପାରିଲା ନେଲା ।

ବର୍ତ୍ତମାନ କ୍ଷେତ୍ରରେ ଦସ୍ୟୁଦଳର ସେତେ କିଛି ସୁବିଧା ନାହିଁ । ଯୁଦ୍ଧକ୍ଷେତ୍ରରେ ଅଗଣ୍ୟ ସଶସ୍ତ୍ର ପ୍ରହରୀ ଦଣ୍ଡାୟମାନ । ବିଜୟୀ ଇଂରେଜ ସେନାପତି ଡିଉକ୍ ଅବ୍ ୱେଲିଙ୍ଗଟନ୍ ଆଦେଶ କରିଅଛନ୍ତି, ଯଦି କେହି ମୃତ ସୈନିକମାନଙ୍କ ଅଙ୍ଗରେ ହସ୍ତାର୍ପଣ କରେ, ତାହାକୁ ତତ୍‌କ୍ଷଣାତ୍ ଶମନଭବନକୁ ପ୍ରେରଣ କରାଯିବ । ସୁସଭ୍ୟ ଇଂରେଜ ଜାତିର ମହତ୍ତ୍ୱ ଏହି ଯେ, ଏମାନେ ଜୀବିତାବସ୍ଥା ଅପେକ୍ଷା ମୃତାବସ୍ଥାରେ ମନୁଷ୍ୟ ପ୍ରତି ଅଧିକତର ଦୟା ପ୍ରକାଶ କରିଥା'ନ୍ତି ।

ଅନାହାରରେ ମରିବା ଅପେକ୍ଷା ଗୁଳିରେ ମରିବା ଶ୍ରେୟସ୍କର ମନେ କରି ଦସ୍ୟୁଦଳ ହଟିଲେ ନାହିଁ । ଲୁଣ୍ଠନ ଚାଲିଲା, ଗୁଳି ବି ଚାଲିଲା— ସମର କ୍ଷେତ୍ରରେ ଶବ ସଂଖ୍ୟା ବୃଦ୍ଧି ପାଇଲା । ଡିଉକ୍ ମହାଶୟଙ୍କର ଉଦାରତା ନର-ରକ୍ତପାତରେ ପର୍ଯ୍ୟବସିତ ହେଲା ।

ନିଶୀଥ ସମୟରେ ଜଣେ ଦସ୍ୟୁ ଶବରାଶି ପାର୍ଶ୍ୱରେ ଲୁକ୍କାୟିତ ରହି ଗୋଟିଏ ଗ୍ରେଟ ଖାତ ଭିତରୁ ଗୋଟିଏ ମୃତ ପ୍ରାୟ କଳେବର ଟାଣି ବାହାର କଲା । ସେତେବେଳେ ଯାଏଁ ପତିତ ସୈନିକଟିର ପକେଟ୍ ଅସ୍ପୃଷ୍ଟ ଥିଲା । ଦସ୍ୟୁ ତହିଁରେ ହସ୍ତକ୍ଷେପ କରିବା ମାତ୍ରକେ କତିପୟ ସ୍ୱର୍ଣ୍ଣ ମୁଦ୍ରା ପାଇଲା; ଦେଖୁ ଦେଖୁ ସ୍ୱର୍ଣ୍ଣ ଚେନଘଡ଼ି, ଶେଷରେ ଗୋଟିଏ ହୀରକା-ଙ୍ଗୁରୀୟ ତାହାର ହସ୍ତଗତ ହେଲା । ଅଙ୍ଗୁରୀୟ ବାହାର କରିବ ବେଳେ ବେଦନା ଅନୁଭୂତ ହେବାରୁ ବୋଧହୁଏ ସୈନିକଟି ସହସା ଚକ୍ଷୁ ଉନ୍ମୀଳନ କରି କ୍ଷୀଣ କଣ୍ଠରେ କହିଲା, "ବର୍ତ୍ତମାନ କେଉଁଠି ମୁଁ ? ଆମ ସମ୍ରାଟ କେଉଁଠି ? କେଉଁ ପକ୍ଷ ଜୟୀ ହୋଇଅଛି ?" ଏହି ସମସ୍ତ ପ୍ରଶ୍ନର ଉତ୍ତର ଦେବାକୁ ଦସ୍ୟୁ ପ୍ରସ୍ତୁତ ନଥିଲା, ସୈନିକର ନାମ ପଚାରିଲା । ସୈନିକ କହିଲା, "ମୋ ନାମ କର୍ଣ୍ଣେଲ୍ ପଣ୍ଟମାର୍ସି ।" ଦସ୍ୟୁ ଅନ୍ତର୍ହିତ ହୋଇଗଲା ।

କର୍ଣ୍ଣେଲ୍ ପଣ୍ଟମାର୍ସି ଦାରୁଣ ଆହତ ଓ ହତଚୈତନ୍ୟ ହୋଇ ସମର କ୍ଷେତ୍ରରେ ଶବରାଶି ମଧ୍ୟରେ ପଡ଼ିଥିଲେ । ଦସ୍ୟୁ ତାହାଙ୍କୁ ଟାଣି ବାହାର କରି ନଥିଲେ, ସେ ଅଳ୍ପ ସମୟ ମଧ୍ୟରେ ପ୍ରାଣ ତ୍ୟାଗ କରିଥା'ନ୍ତେ ।

ଦସ୍ୟୁ ତାଙ୍କର ସର୍ବସ୍ୱ ଲୁଣ୍ଠନ କରି ନେଲା ସତ, କିନ୍ତୁ ତାଙ୍କୁ ଜୀବନ ଦାନ କରି ଗଲା, ସେହି ସ୍ୱର୍ଣ୍ଣ ଶୃଙ୍ଖଳ ବକ୍ଷରେ—ମୋକ୍ଷଣ ଫଳରେ ତାଙ୍କର ମହୋପକାର ସାଧିତ ହେଲା । ଦୟାମୟ ଜଗଦୀଶ୍ୱର କେତେବେଳେ କାହାଦ୍ୱାରା କେଉଁ କାର୍ଯ୍ୟ ସାଧନ କରିଥାନ୍ତି, ତାହା ତାଙ୍କ ବିନା ଆଉ ଜାଣି ପାରିବ କିଏ ? କର୍ଣ୍ଣେଲ୍ ଧୀରେ ଧୀରେ ଯୁଦ୍ଧକ୍ଷେତ୍ର ତ୍ୟାଗ କରି ନିକଟସ୍ଥ ଏକ ପଲ୍ଲୀରେ କୌଣସି ବନ୍ଧୁଙ୍କ ଗୃହରେ ଆଶ୍ରୟ ନେଲେ ଏବଂ କ୍ରମଶଃ ସ୍ୱାସ୍ଥ୍ୟ ଲାଭ କରି ତିନି ମାସ ପରେ ପାରି ନଗରୀରେ ପ୍ରବିଷ୍ଟ ହେଲେ ।

ପାରିର ଆଉ ସେ ଦିନ ନାହିଁ । ସେଇ ଗ୍ରାମ ନାହାନ୍ତି କି ସେଇ ଅଯୋଧ୍ୟା ନାହିଁ । ନେପୋଲିୟନ୍ ସେଣ୍ଟ ହେଲେନା ଦ୍ୱୀପରେ ନିର୍ବାସିତ ହୋଇଅଛନ୍ତି । ପ୍ରବଳ ପ୍ରତାପ ଅଷ୍ଟାଦଶ ଲୁଇ ଫ୍ରାନ୍ସ-ସିଂହାସନରେ ଅଧିରୂଢ଼ । ବୋନାପାର୍ଟିଷ୍ଟ ଦଳ ଉପରେ ଭୟଙ୍କର ଅତ୍ୟାଚାର ଆରମ୍ଭ ହୋଇଅଛି । ନିହତ, ନିର୍ବାସିତ ଓ କାରାନିକ୍ଷିପ୍ତମାନଙ୍କର ସଂଖ୍ୟା ଦିନୁ ଦିନ ବୃଦ୍ଧି ପ୍ରାପ୍ତ ହେଉଅଛି । 'ନେପୋଲିୟନ୍' ନାମ ଉଚ୍ଚାରଣ ମହାପାପ, ଘୋର ଅପରାଧ ବିବେଚିତ ହେଉଅଛି । ନେପୋଲିୟନ୍ ପ୍ରମୁଖ ଯେଉଁ ସକଳ ବୀର ପୁରୁଷ ଫ୍ରାନ୍ସ ପାଇଁ ଶତ ଶତ ଯୁଦ୍ଧ କରିଅଛନ୍ତି, ସେମାନେ ବର୍ତ୍ତମାନ 'ରାଜଦ୍ରୋହୀ' ଅଭିଧାରେ ଅଭିହିତ ।

ମୃତ-ତାଲିକାଭୁକ୍ତ ସୈନିକ ପଣ୍ଟମାର୍ସିଙ୍କୁ ପୁନର୍ବାର ଦେଖି ପାରି-ନଗରୀ ହର୍ଷବିସ୍ମୟରେ ପରିପ୍ଲୁତ ହୋଇଗଲା । କର୍ଣ୍ଣେଲ୍ ମହାଶୟ ବନ୍ଧୁ ବାନ୍ଧବମାନଙ୍କୁ ଗଳ୍ପଚ୍ଛଳରେ କହିଲେ ଯେ, ଓୟାଟର୍ଲୁ ଯୁଦ୍ଧ ଦିନରୁ ସେ 'ବ୍ୟାରନ୍' (Baron) ହୋଇଅଛନ୍ତି ।

ଓୟାଟର୍ଲୁ ଯୁଦ୍ଧ ଦିନ ଅପରାହ୍ନରେ ପଣ୍ଟମାର୍ସି ଯେତେବେଳେ ଅମିତ ବିକ୍ରମରେ ଇଂରେଜ ସୈନ୍ୟର ବ୍ୟୂହ ଭେଦ କରୁଥିଲେ, ବକ୍ଷଃ-ସ୍ଥଳରେ ଶତ୍ରୁ-ସଙ୍ଗୀନ-ବିଦ୍ଧ ହୋଇ ସୁଦ୍ଧା ଅଶ୍ୱକୁ କଷାଘାତ କରି ସଦଳବଳରେ ଅଗ୍ରସର ହେଉଥିଲେ, ଯେତେବେଳେ ତରବାରି-ଆହତ ଲଲାଟରୁ ଅବିରଳ ଧାରାରେ ରୁଧିର ବର୍ଷଣ ହୋଇ ତାଙ୍କର ଦୃଷ୍ଟିରୋଧ

କରି ଦେଉଥିଲା, ଠିକ୍ ସେହି ସମୟରେ ତାଙ୍କର ପଶ୍ଚାଦ୍‌ଭାଗରେ ପ୍ରକାଣ୍ଡ ଶ୍ୱେତାଶ୍ୱ ପୃଷ୍ଠରେ ନେପୋଲିୟନ୍ ଉଚ୍ଚୈଃସ୍ୱରରେ ଚୀତ୍କାର କରି ତାଙ୍କୁ କହିଥିଲେ,—'ତୁମେ ଆଉ କର୍ଣ୍ଣେଲ୍ ପଣ୍ଟମାର୍ସି ନୁହ--ଆଜିଠାରୁ ବ୍ୟାରେନ୍ ପଣ୍ଟମାର୍ସି ହେଲ ।'

ନେପୋଲିୟନଙ୍କ ସହିତ ବ୍ୟାରେନଙ୍କର ସେଇ ଶେଷ ସାକ୍ଷାତ୍ । ଶିର ବିଦାୟ କାଳରେ ନେପୋଲିୟନ ତାହାଙ୍କୁ ଯେଉଁ ସମ୍ମାନ-ପଦବୀ ଦେଇ ଯାଇଥିଲେ, ତାହାର ସଦ୍‌ବ୍ୟବହାର କରିବା ପାଇଁ ବ୍ୟାରେନ୍ କୃତନିଶ୍ଚୟ ହେଲେ ।

କେତେକ ଦିନ ମଧ୍ୟରେ ପଣ୍ଟମାର୍ସି ଧୃତ ହୋଇ ରାଜଦ୍ୱାରକୁ ନୀତ ହେଲେ । ଜିଜ୍ଞାସିତ ହୋଇ ସେ ରାଜାଙ୍କୁ କହିଲେ, ତାଙ୍କର ମୂର୍ତ୍ତି ନାମ କର୍ଣ୍ଣେଲ ବ୍ୟାରେନ୍ ପଣ୍ଟମାର୍ସି ଏବଂ ଏହି ଉପାଧି ସମ୍ରାଟ ନେପୋଲିୟନ୍ ବୋନାପାର୍ଟିଙ୍କର ପ୍ରଦତ୍ତ । ଲୁଇ କ୍ରୋଧରେ ଗର୍ଜ୍ଜନ କରି କହିଲେ, 'ନେପୋଲିୟନ୍ ଇଶ୍ୱରଙ୍କର ଶତ୍ରୁ, ଶାନ୍ତିର ଶତ୍ରୁ, ମନୁଷ୍ୟଜାତିର ଶତ୍ରୁ । ତୁମେ ସେଇ ଦସ୍ୟୁ ପାଷଣ୍ଡର ଦତ୍ତ ଉପାଧିରେ ପ୍ରୀତ ? ଭୟ ହେଉଛି, ତୁମେ ମୋର ଶାନ୍ତିପ୍ରିୟ ରାଜଭକ୍ତ ନାଗରିକମାନଙ୍କୁ ଅସତ୍‌ପଥରେ ଚଳାଇ ନେବ । ପୁନର୍ବାର ବ୍ୟାରେନ୍ ବୋଲି ପରିଚୟ ଦେଲେ, ତୁମେ କାରାଗାରରେ ନିକ୍ଷିପ୍ତ ହେବ, ସାବଧାନ । ତୁମେ ପାରିସ୍‌ରେ ବାସ କରି ପାରିବ ନାହିଁ, କୌଣସି ଦୂରବର୍ତ୍ତୀ ପଲ୍ଲୀରେ ବାସ ସ୍ଥାନ ଠିକ୍ କରି ନିଅ ।'

ପଣ୍ଟମାର୍ସିଙ୍କ ମନୋବେଦନାର ସୀମା ରହିଲା ନାହିଁ । ସେ ରାଜଧାନୀ ପରିତ୍ୟାଗ କଲେ । ଜଗତରେ ଏକମାତ୍ର ପୁତ୍ର ଭିନ୍ନ ତାଙ୍କର ଆଉ କେହି ନଥିଲା । ଆଜକୁ ପ୍ରାୟ ଆଠ ବର୍ଷ ହେଲା, ପୁତ୍ର ସଙ୍ଗେ ଦେଖା ସାକ୍ଷାତ ନାହିଁ । ୟୁରୋପର ବିଭିନ୍ନ ସ୍ଥାନରେ ଯୁଦ୍ଧ କାର୍ଯ୍ୟରେ ବ୍ୟାପୃତ ରହି, ସେ ଗତ ଆଠ ବର୍ଷ ମଧ୍ୟରେ ଥରେ ହେଲେ ପୁତ୍ରକୁ ଦେଖି ଯିବାର ଅବକାଶ ପାଇନଥିଲେ । ଇତିମଧ୍ୟରେ ବାଳକଟି ମାତୃହୀନ ହୋଇ ମାତାମହଙ୍କ ଗୃହରେ ବାସ କରୁଥିଲା । ମାତାମହଙ୍କର ଦ୍ୱିତୀୟ କନ୍ୟା ନିଃସନ୍ତାନ ଥିବାରୁ ସେ ବାଳକଟିକୁ ଅପୂର୍ବ ଯତ୍ନ ଓ ଆଦରରେ ପାଳନ କରୁଥିଲେ ।

ଫର୍ଣମାର୍ସିଙ୍କର ଶ୍ୱଶୁର ଥିଲେ ଉଚ୍ଚବଂଶସମ୍ଭୂତ, ବିଦ୍ୱାନ୍ ଓ ଐଶ୍ୱର୍ଯ୍ୟଶାଳୀ ରୟାଲିଷ୍ଟ (Royalist) ନେପୋଲିୟନଙ୍କ ନାମ ଶୁଣିବା ମାତ୍ରକେ ସେ ରାଗ ଓ ବିଦ୍ୱେଷରେ ଜଳି ଉଠୁଥିଲେ—ଏହା ଥିଲା ତାଙ୍କର ଗୋଟିଏ ପ୍ରଧାନ ଦୋଷ । ତାଙ୍କ ବିଚାରରେ, ନେପୋଲିୟନ ଓ ତାଙ୍କର ଅନୁଚରଦଳ ଦସ୍ୟୁ, ତସ୍କର । ଓ୍ୱାଟରଲୁ ଯୁଦ୍ଧ ପରେ ନିହତ ସୈନିକଗଣଙ୍କର ତାଲିକାରେ ଫର୍ଣମାର୍ସି ନାମ ଦେଖି ସେ ଆହ୍ଲାଦଗଦ୍‌ଗଦ କଣ୍ଠରେ ଦୌହିତ୍ର ମେରିୟସଙ୍କୁ କହିଥିଲେ, 'ଯାଇ, ତୋ ବିପଦ ଘୁଞ୍ଚିଲା, ତୋତେ ଏଣିକ ମଣିଷ କରି ପାରିବି ।'

ପାରି ଛାଡ଼ି ଯିବାବେଳେ ଫର୍ଣମାର୍ସି ମେରିୟସଙ୍କୁ ନେଇ ଜୀବନର ଶେଷଭାଗ ସୁଖରେ କଟାଇବେ, ଏହି ଅଭିପ୍ରାୟରେ ଶ୍ୱଶୁରଙ୍କର ଦ୍ୱାରସ୍ଥ ହେଲେ । ପାରିର ରୟାଲିଷ୍ଟମାନଙ୍କର ଭବନ ସ୍ୱର୍ଗ ଅପେକ୍ଷା ବି ଅଧିକ ଦୁର୍ଭେଦ୍ୟ, ଦୁର୍ଗମ । ଦ୍ୱାରପାଳ ତାଙ୍କୁ ଘର ଭିତରକୁ ଛାଡ଼ିଲା ନାହିଁ । ଜାମାତା ଦ୍ୱାରଦେଶରେହିଁ ଠିଆ ହୋଇ ଗୁହାରି ଜଣାଇଲେ । ପ୍ରାର୍ଥନା ପ୍ରତ୍ୟାଖ୍ୟାତ ହେଲା । ବ୍ୟାରନଙ୍କୁ ଜଣାଇ ଦିଆଗଲା ଯେ, ମେରିୟସ୍ ମାତାମହଙ୍କର ଏକମାତ୍ର ଉତ୍ତରାଧିକାରୀ । ଏଣୁ ତାଙ୍କୁ ନେଇଗଲେ ସେ ତାଙ୍କ ପିତାମହଙ୍କର ବିପୁଳ ଐଶ୍ୱର୍ଯ୍ୟରୁ ବଞ୍ଚିତ ହେବେ ।

ମେରିୟସଙ୍କର ମଙ୍ଗଳ ପାଇଁ ଫର୍ଣମାର୍ସି ତାଙ୍କୁ ନେଇ ଯିବାର କଳ୍ପନା ପରିତ୍ୟାଗ କଲେ । କିନ୍ତୁ ଇଚ୍ଛା କଲେ ଥରେ ମାତ୍ର ତାଙ୍କୁ ଦେଖି ଯିବାକୁ । ଫର୍ଣମାର୍ସି ଯେତେବେଳେ ଶେଷ ଥର ଯୁଦ୍ଧ ଯାତ୍ରା କରନ୍ତି, ସେହି ସମୟରେ ମେରିୟସଙ୍କର ବୟସ ଥିଲା ଆଠ ବର୍ଷ ମାତ୍ର । ପରେ ଆଉ ଆଠ ବର୍ଷ କାଳ ସେ ପୁତ୍ରକୁ ଦେଖି ନାହାନ୍ତି । ସେ ଶ୍ୱଶୁରଙ୍କୁ ବିନୀତ ଭାବରେ କହି ପଠାଇଲେ—'ଅନେକ ଦିନ ହେଲା ମୁଁ ମେରିୟସକୁ ଦେଖି ପାରି ନାହିଁ । ତାହାକୁ ଦେଖିବା ପାଇଁ ମୋର ପ୍ରାଣ ବ୍ୟାକୁଳ ହୋଇ ଉଠୁଛି । ଆପଣ ନିକଟସ୍ଥ ପ୍ରକୋଷ୍ଠକୁ ଆସିବା ନିମନ୍ତେ ତାହାକୁ ଅନୁମତି ଦିଅନ୍ତୁ । ଦୂରରୁ ତାହାକୁ ଥରେ ମାତ୍ର ଅନାଇ ଚାଲିଯିବି ।

ସ୍ନେହଶୀଳ ପିତାର ଏଭଳି କାତର ପ୍ରାର୍ଥନାରେ ବି ନିଦାରୁଣ ରାଜଭକ୍ତ ଶ୍ୱଶୁରର ଅନ୍ତଃକରଣରେ କରୁଣା ଉଦ୍ରେକ ହେଲା ନାହିଁ । ଲାଞ୍ଛିତ ଓ ନିଗୃହୀତ ପଣ୍ଟମାର୍ସି ପ୍ରାଣ ଘେନି ପଳାଇବାକୁ ଲାଗିଲେ, ଶେଷରେ ପାରି ଗ୍ରାମ ଦୂରବର୍ତ୍ତୀ ସାର୍ଣ୍ଣନ ନାମକ ଏକ ପଲ୍ଲୀରେ ଯାଇ ଆଶ୍ରୟ ଗ୍ରହଣ କଲେ ।

ତାଙ୍କ ବାସଭବନ ସମ୍ମୁଖରେ ଗୋଟିଏ ସାମାନ୍ୟ ପୁଷ୍ପୋଦ୍ୟାନ ଥିଲା । ସେ ତାହାର ଶ୍ରୀବୃଦ୍ଧି ସାଧନରେ ଯତ୍ନବାନ୍ ହେଲେ । ପୁଷ୍ପ, ପତ୍ର, ଲତାର ସେବାରେ ପୁତ୍ରର ଅଦର୍ଶନ-ଜନିତ ଦୁଃଖର କଥଞ୍ଚିତ୍ ଲାଘବତା ସମ୍ପାଦିତ ହେବାକୁ ଲାଗିଲା । ସେ କେବେ କେବେ ପ୍ରଚ୍ଛନ୍ନ ବେଶରେ ପାରିସ ଯାଇ ରାଜମାର୍ଗରେ ଠିଆ ହୋଇ ରହନ୍ତି । କେବେ କେବେ ଦୈବାତ୍ ଦ୍ରୁତଗାମୀ ଶକଟାରୂଢ଼ ମେରିଯୂସଙ୍କୁ ଦେଖି ଆଶ୍ୱସ୍ତ ହୁଅନ୍ତି । ସେ ଏପରି ବହୁ ଦୁଃଖ କଷ୍ଟରେ କେବେ କେବେ ପୁତ୍ରର କ୍ଷଣିକ ଦର୍ଶନ ଲାଭ କରନ୍ତି; ମେରିଯୂସ୍ କିନ୍ତୁ ତାହାଙ୍କୁ କେବେ ହେଲେ ଦେଖି ପାରନ୍ତି ନାହିଁ ।

*

## ପିତୃ ଭକ୍ତି

ପିତାଙ୍କୁ ଦେଖିବାର ପ୍ରବୃତ୍ତି ମେରିଯୂସଙ୍କର ଆଦୌ ନଥିଲା । ତାଙ୍କ ହୃଦୟରେ ପିତା ପ୍ରତି ମୋଟେ ଶ୍ରଦ୍ଧା ବା ଭକ୍ତିର ଉଦ୍ରେକ ହେଉନଥିଲା । ସେ ପିଲା ଦିନୁ ଶୁଣି ଆସୁଥିଲେ, ତାଙ୍କର ପିତା ଦସ୍ୟୁ, ଲୁଣ୍ଠନକାରୀ । ବାଲ୍ୟକାଳାବଧି ତାଙ୍କର ଏହି କୁଶିକ୍ଷା - ପରମ ମୂଳଦାୟୀ ମାତାମହ ତାଙ୍କର ଶିକ୍ଷକ । ଯେଉଁ ସମାଜରେ ସେ ଏତେଦୂରୁ ଏତେ ହୋଇଥିଲେ, ସେହି ସମାଜର ସମସ୍ତେ ଏକ ବାକ୍ୟରେ ନେପୋଲିୟନଙ୍କୁ ରକ୍ତପିପାସୁ, ନରରାକ୍ଷସ ଏବଂ ତାଙ୍କର ଅନୁଚରଗଣଙ୍କୁ ଦସ୍ୟୁ ତସ୍କର ବୋଲି ବର୍ଣ୍ଣନା କରୁଥିଲେ । ସୁତରାଂ ମେରିଯୂସଙ୍କ ମତରେ, ପିତା ଦସ୍ୟୁ ହେବେ ନାହିଁ, ଆଉ ହେବ କିଏ ?

ସେ ଲୋକଙ୍କ ନିକଟରେ ପଣ୍ଟମାର୍ସିଙ୍କ ପୁତ୍ର ବୋଲି ପରିଚୟ ଦେବାକୁ କୁଣ୍ଠା, ଲଜ୍ଜା ବୋଧ କରୁଥିଲେ ଏବଂ ଯେଉଁ ସ୍ଥାନରେ ପିତାଙ୍କର

ନାମୋଲ୍ଲେଖ ହେବାର ସମ୍ଭାବନା, ସେପରି ସ୍ଥାନରେ କଦାପି ପଦାର୍ପଣ କରୁନଥିଲେ । ମାତାମହ ମେରୀୟୁସଙ୍କୁ ଉଚ୍ଚ ଶିକ୍ଷା ଓ ବିବିଧ ଗୁଣରେ ଭୂଷିତ କରିବାରେ ଯତ୍ନବାନ୍ ଥିଲେ ସତ; କିନ୍ତୁ ସୁକୁମାରମତି ଦୌହିତ୍ରଙ୍କ ହୃଦୟରେ ପିତୃ ଭକ୍ତିର ବୀଜ ଯେପରି ଅଙ୍କୁରିତ ନହୁଏ, ସେଥିପାଇଁ ବରାବର ଚେଷ୍ଟା କରୁଥିଲେ—ବରଂ ପୁତ୍ରର ପିତୃ ବିଦ୍ୱେଷ ଉତ୍ତରୋତ୍ତର ବଢ଼ାଇବା ପ୍ରୟାସରେ ଲେଶ ତ୍ରୁଟୀ କରୁନଥିଲେ ।

ଚଉଦ ମାସଙ୍କର ପାଣ୍ଡୁ-ପରିତ୍ୟାଗ ପରେ, ଦିନେ ତାଙ୍କର ଶ୍ୱଶୁର ମେରୀୟୁସଙ୍କୁ ପାଖରେ ବସାଇ କଥା ପ୍ରସଙ୍ଗରେ କହିଲେ—'ଅନଧିକାର-ଚର୍ଚ୍ଚା ଥିଲା ବୋନାପାର୍ଟିଷ୍ଟମାନଙ୍କ ଚରିତ୍ରର ମେରୁଦଣ୍ଡ । ଈଶ୍ୱର ଯାହାକୁ ଯାହା ଦେଇଛନ୍ତି, ତାହାକୁ ସେଥିରୁ ବଞ୍ଚିତ କରିବାକୁ ସେମାନେ ଅଣୁ-ମାତ୍ର ଦ୍ୱିଧା ବୋଧ କରୁନଥିଲେ । ଯେଉଁମାନେ ଶତ ସହସ୍ର ବର୍ଷ ଧରି ଫ୍ରାନ୍ସରେ ରାଜପଣ କରି ଆସୁଛନ୍ତି, ସେମାନଙ୍କୁ ସମୂଳ ନିର୍ମୂଳ କରି, ନେପୋଲିୟନ ପ୍ରଭୃତି ତସ୍କରଗଣ ଫରାସି-ରାଜଦଣ୍ଡ ଧାରଣରେ ପ୍ରୟାସୀ ହୋଇଥିଲେ । ଦସ୍ୟୁର ଜୟ କିନ୍ତୁ କେତେ ଦିନ ରହେ ? ଈଶ୍ୱର ବୋର୍ବନ୍‌ମାନଙ୍କୁ ପୁଣି ରାଜପଦ ଦାନ କରିଛନ୍ତି, ଦେଶରେ ପୁଣି ଶାନ୍ତି ସଂସ୍ଥାପିତ ହୋଇଅଛି । ଇଉରୋପର ଆତଙ୍କ ଦୂର ହୋଇଅଛି—ଆଜିକାଲି ଆବାଳ ବୃଦ୍ଧ ବନିତା ସମସ୍ତେ ନିର୍ଭୟରେ ନିଦ୍ରାର ଆଶ୍ରୟ ନେଇ ପାରୁଛନ୍ତି ।'

ମେରୀୟୁସ୍ :—ଅଜା, ସେମାନେ କଣ ଏତେ ମନ୍ଦ ପ୍ରକୃତିର ଲୋକ ?

ମାତାମହ :—ସେମାନେ ଯେ କେତେ ଦୂର ମନ୍ଦ ଲୋକ ଥିଲେ, ତାହା ବର୍ଣ୍ଣନା କରିବାକୁ ଭାଷାର ବଳ ନାହିଁ । ଇଉରୋପରେ ଏପରି କୌଣସି ରାଜା ନଥିଲା ଯାହାକୁ ସେମାନେ ସିଂହାସନ ଚ୍ୟୁତ କରି ନାହାନ୍ତି । ଏପରି କୌଣସି ରାଜସିଂହାସନ ନଥିଲା, ଯାହା ସେମାନଙ୍କଦ୍ୱାରା କଳୁଷିତ ହୋଇ ନାହିଁ ଏବଂ ଏପରି କୌଣସି ନଗରୀ ନଥିଲା ଯାହା ସେମାନେ ତୋପରେ ଉଡ଼ାଇ ଦେଇ ନାହାନ୍ତି । ସେମାନଙ୍କର ପ୍ରବଳ ଦୌରାତ୍ମ୍ୟରେ ସ୍ତ୍ରୀ ପତି

ଶୋକରେ, ମାତା ପୁତ୍ରଶୋକରେ ଅବିରତ ହାହାକାର କରି-ଅଛନ୍ତି । ସେମାନେ ଆଜ କିଛି କାଳ ଅପ୍ରତିହତ ରହିଥିଲେ, ଇଉରୋପ ତମାମ ପ୍ରକାଣ୍ଡ ସାହାରାରେ ପରିଣତ ହୋଇଥାନ୍ତା ।

ମେରିୟସ୍‌:—ମୋ ପିତା ଥିଲେ ସାମାନ୍ୟ ସୈନିକ ମାତ୍ର । ଏଣୁ ଏ ସମସ୍ତ କାର୍ଯ୍ୟ ପାଇଁ ମୋ ପିତା ଅପେକ୍ଷା ବୋଧହୁଏ ନେପୋଲିୟନ୍ ଈଶ୍ୱରଙ୍କ ନିକଟରେ ଅଧିକ ଦାୟୀ ହେବେ ।

ମାତାମହ:—ଏହି ସକଳ ସୈନିକଙ୍କର ସହାୟ୍ୟ ବ୍ୟତୀତ ନେପୋଲିୟନ୍ ଏକାକୀ କିଛି ଅନିଷ୍ଟ କରି ପାରି ନଥାନ୍ତା । ଯେଉଁମାନେ ରାଜପକ୍ଷ ପରିତ୍ୟାଗ କରି ତାହାର ପକ୍ଷ ଅବଲମ୍ବନ କରିଥିଲେ, ସେମାନଙ୍କ ମଧ୍ୟରେ ତୋ ପିତା ପ୍ରଧାନ । ନେପୋଲିୟନ ଅପେକ୍ଷା ସେ ଅଧିକ କୃତଘ୍ନ । ଈର୍ଷା ଓ ଉଚ୍ଚାଭିଳାଷରେ ଦୋହାଇ ଦେଇ ନେପୋଲିୟନ୍ ହୁଏତ, ସିଜାର ବା ସେକେନ୍ଦର ପରି, ଅବ୍ୟାହତି ପାଇ ପାରେ । ତୋ ବାପା କିନ୍ତୁ ଯେପରି ନେମକହାରାମି କରିଅଛି, ସେଥିରୁ ତାହାର ଆଉ ଉଦ୍ଧାର ନାହିଁ ।

ମେରିୟସ୍‌:—ମୋ ପିତା କଣ ବୋର୍ବନରାଜାମାନଙ୍କ ଅଧୀନରେ ଚାକିରି କରୁଥିଲେ ?

ମାତାମହ କମ୍ପିତ ବିରକ୍ତି-ଜଡିତ ସ୍ୱରରେ କହିଲେ—'ମୁଁ ତ ରୟାଲିଷ୍ଟ, ମୋର ଜାମାତା ହୋଇ ଯେତେବେଳେ ସାଧାରଣ ତନ୍ତ୍ରର ସୈନିକ ବୃତ୍ତି ଅବଲମ୍ବନ କଲା, ସେ କୃତଘ୍ନ । ବାରମ୍ବାର କହୁଛି ମେରିୟସ୍, ତୋ ପିତା ପରି କୌଣସି ଅପକୃଷ୍ଟ ଲୋକ ପୃଥିବୀରେ ଜନ୍ମ ଗ୍ରହଣ କରି ନାହିଁ । ଯାବଜ୍ଜୀବ କୁକର୍ମରେ ଲିପ୍ତ ରହି ଶେଷରେ 'ବ୍ୟାରନ୍' ହୋଇ ଦେଖେଁ ଫେରିଛି । କାଲଠାରୁ ମୋ ପାଦୁକାର ନାମ ରଖିବି 'ବ୍ୟାରନ୍' ।'

ରାଜଭକ୍ତ ମାତାମହଙ୍କର ଏହି କଥା ଶୁଣି ସୁକୁମାରପ୍ରାଣ ବାଳକ ମନରେ କି ଭାବ ଉଦିତ ହେଲା କେଜାଣି, କିନ୍ତୁ ପିତୃ ନିନ୍ଦାବାଦରେ

ତାଙ୍କ ହୃଦୟରେ ସେ ଦାରୁଣ ଆଘାତ ଲଗିଲା, ଏଥିରେ ସନ୍ଦେହ ନାହିଁ । ଯେ ତାହାଙ୍କୁ ଆଶୈଶବ ପାଳନ କରି ଆସିଛନ୍ତି, ବର୍ଣ୍ଣଶିକ୍ଷାରୁ ଆରମ୍ଭ କରି ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ଦେଇଛନ୍ତି, ଏପରି କି ଯେ ସର୍ବପ୍ରଥମେ ତାଙ୍କୁ କଥା କହିବାକୁ ବି ଶିଖାଇଛନ୍ତି, ସେହି ମାତାମହଙ୍କ କଥାରେ ଆସ୍ଥା ସ୍ଥାପନ କରିବା ମେରିୟସଙ୍କ ପକ୍ଷରେ ଅବଶ୍ୟ ସ୍ୱାଭାବିକ । ପିତୃନିନ୍ଦା ତାଙ୍କର ଅସହ୍ୟ ହେଲେହେଁ, ସେ କେବେହେଲେ ମାତାମହଙ୍କ କଥାର ପ୍ରତିବାଦ କରୁନଥିଲେ—ବରଂ ଏଭଳି ପିତାର ପୁତ୍ର ବୋଲି ନିଜକୁ ଅତି ଦୁର୍ଭାଗ୍ୟ ମନେ କରୁଥିଲେ ।

ମାତାମହଙ୍କ ଗୃହରେ ରାଜପୁତ୍ର ତୁଲ୍ୟ ସ୍ନେହ ଆଦରରେ ପ୍ରତିପାଳିତ ହେଲେ ମଧ୍ୟ, ମେରିୟସଙ୍କ ଅନ୍ତଃକରଣରେ ଏକ ଅନିର୍ବଚନୀୟ ବିମର୍ଷର ଉଦୟ ହେଲା । ତାଙ୍କର ବାଲ୍ୟକାଳର ବିମଳଶୋଭାପ୍ରତିଭ ପ୍ରଫୁଲ୍ଲ ମୁଖମଣ୍ଡଳ ବୟୋବୃଦ୍ଧି ସଙ୍ଗେ କାଳିମା-ଜଡ଼ିତ ହୋଇଗଲା । ସତତ କ୍ରୀଡ଼ାକୌତୁକପରାୟଣ ଅଭିଜାତ ତନ୍ତ୍ରର ବାଳକମାନଙ୍କ ସଙ୍ଗେ ପୂର୍ବ ପରି ମିଳାମିଶା କରିବା ତେଣିକି ଥାଉ, ବରଂ ସେ ଯତ୍ନପୂର୍ବକ ସେମାନଙ୍କର ସହବାସ ବର୍ଜ୍ଜନ କରିବାକୁ ଲାଗିଲେ । ଏକାକୀ ବସି ଭୂତପୂର୍ବ ସାଧାରଣ ତନ୍ତ୍ର ଓ ସାମ୍ରାଜ୍ୟର ବିବରଣାଦି ପାଠରେ ଆଗ୍ରହାନ୍ୱିତ ହେଲେ । କିନ୍ତୁ ଏକାର୍ଯ୍ୟରେ ବି ଦୁଇଗୋଟି ଅନ୍ତରାୟ ଥିଲା । ପ୍ରଥମତଃ ନବୀନ ନୃପତି ଲୁଇ ସେହି ସମୟର ସମ୍ବାଦପତ୍ରାଦି ଏକାବେଳକେ ଭସ୍ମୀଭୂତ କରାଇ ଦେଇଥିଲେ । ଦ୍ୱିତୀୟ ଅନ୍ତରାୟ—ଦୈବାତ୍ ଯଦି କୌଣସି କିଛି ବିବରଣ ମିଳେ ରୟାଲିଷ୍ଟମାନେ ତାହା ପଢ଼ିବାକୁ ସନ୍ତାନମାନଙ୍କୁ ଦେଉ ନଥିଲେ ।

ପ୍ରତିଦିନ ମାତାମହଙ୍କ ମୁଖରୁ ବୋନାପାର୍ଟିଷ୍ଟ ଦଳର ଓ ପିତାଙ୍କର ଅପକୀର୍ତ୍ତି ଶୁଣି, ତାଙ୍କ ହୃଦୟର ଅନ୍ତସ୍ଥଳରେ ଯେଉଁ ଭୀଷଣ ଆବର୍ତ୍ତ ଉପସ୍ଥିତ ହୋଇଥିଲା, ମେରିୟସ୍ ତାହା କାହାକୁ ଜଣାନ୍ତି ନାହିଁ । ପୁସ୍ତକାଦି ଯଥାରୀତି ପଢ଼ିବାକୁ ଉଦ୍ୟତ ହୁଅନ୍ତି, କିନ୍ତୁ ପଢ଼ି ପାରନ୍ତି ନାହିଁ—ମନୋଯୋଗ ହୁଏ ନାହିଁ । ପିତାଙ୍କ ବିଷୟରେ ତର୍କ ବିତର୍କ

କରିବାକୁ ଇଚ୍ଛା କରନ୍ତି, କିନ୍ତୁ ମାତାମହଙ୍କ ଭୟରେ ସେଥିରୁ ବି ବିରତ ହୋଇ ବସନ୍ତି ।

ମେରିୟସ୍ ପିତାଙ୍କୁ ଭୁଲିବାକୁ ଚେଷ୍ଟା କଲେ—ଭୁଲି ପାରିଲେ ନାହିଁ । ମାନବ ଯେ ପିତୃମୟ-ଶରୀର—ଦେହ, ମନ ସର୍ବତ୍ର ପିତା ବର୍ତ୍ତମାନ । ମେରିୟସ୍ ଦେଖିଲେ. ଜଗତର ସକଳ ପଦାର୍ଥ ସେ ଭୁଲି ପାରୁଛନ୍ତି, କିନ୍ତୁ ଯାହାଙ୍କୁ ଭୁଲିବାକୁ ଚେଷ୍ଟା କରୁଛନ୍ତି, କେବଳ ସେ ତାଙ୍କ ମନରେ ବରାବର ଜାଗ୍ରତ ହୋଇ ଉଠୁଛନ୍ତି । ଦେଖିଲେ, ତାଙ୍କ ଶରୀରର ପ୍ରତ୍ୟେକ ପରମାଣୁରେ ଯେପରି ପିତା ଆସି ଅଟଳ ଅଚଳ ଭାବରେ ବସି ରହିଛନ୍ତି ।

ଦିନେ ମେରିୟସ୍ ତାଙ୍କ କକ୍ଷରେ ନୀରବ ନିଶ୍ଚଳ ଭାବରେ ବସିଛନ୍ତି, ପିତୃଚିନ୍ତାରେ ବୁଡ଼ି ରହିଛନ୍ତି, ଏପରି ସମୟରେ ମାତାମହ ଧୀର ପଦସଞ୍ଚାରରେ ତାଙ୍କ ପାର୍ଶ୍ୱରେ ଯାଇ ଠିଆ ହେଲେ । ସେତେବେଳେ ମେରିୟସ୍ ଅନୁଚ୍ଚ ଅସ୍ଫୁଟ କଣ୍ଠରେ କହୁଥିଲେ, "କେବେହେଲେ ମାନବ ସମାଜର ଅନ୍ୟାୟ କରି ନାହାନ୍ତି । ଦେଶ ପାଇଁ, ଜାତି ପାଇଁ, ନୀତି ଓ ଶାନ୍ତି ପାଇଁ ଅକାତର ଭାବରେ ହୃଦୟର ରକ୍ତ ଢାଳିଛନ୍ତି—ଈଶ୍ୱରହିଁ ତାହାର ସାକ୍ଷୀ ।"

ମାତାମହ ଏ କଥା ବୁଝି ପାରିଲେ ନାହିଁ । ସେ ଯକ୍ଷ-ବନ୍ଧ୍ୟାକାରୀ ରାକ୍ଷସ ପରି ଦୌହିତ୍ରଙ୍କ କାନ୍ଧରେ ହଠାତ୍ ହାତ ପକାଇ ତାଙ୍କର ସେଇ ମଧୁର ସୁନ୍ଦର ଯୋଗ ଭାଙ୍ଗି ଦେଲେ । ତାଙ୍କୁ ଦେଖିବାକ୍ଷଣି ମେରିୟସ୍ ସସମ୍ଭ୍ରମ ଉଠି ଠିଆ ହେଲେ ଏବଂ ଆହାର ନିମନ୍ତେ ଆହୂତ ହୋଇ ବୃଦ୍ଧଙ୍କ ସଙ୍ଗେ ଯାଇ ଭୋଜନରେ ବସିଲେ ।

ମାତାମହ କହିଲେ, "ମେରିୟସ୍, ଦେଖୁଛି, ତୁମର ସ୍ୱାସ୍ଥ୍ୟଭଙ୍ଗ ହୋଇଅଛି । ତୁମେ ଠିକ୍ ସମୟରେ ଶ୍ରଦ୍ଧାସହିତ ଆଉ ଆହାର କରୁନାହଁ । ପଢ଼ୁ ପଢ଼ୁ ହଠାତ୍ ଗାଢ଼ ନିଦ୍ରାରେ ଶୋଇ ପଡ଼ୁଛ, ତନ୍ଦ୍ରାରେ ବସି ବସି ପ୍ରଳାପ ପରି ଅସ୍ଫୁଟ ବାକ୍ୟ ଉଚ୍ଚାରଣ କରି ଉଠୁଛ । ଡାକ୍ତରଦ୍ୱାରା ତୁମର ସ୍ୱାସ୍ଥ୍ୟ ପରୀକ୍ଷା କରାଇବି ସ୍ଥିର କରିଛି ।" ମେରିୟସ୍ ନିରୁତ୍ତର !

ବନ ବନ୍ଧ ଯିବାକୁ ଲାଗିଲା । ମେରିପୁସ୍ ନିଜ ମନକୁ ପ୍ରବୋଧ ଦେଇ ସ୍ଥିର କଲେ—ପିତାଙ୍କର କଥା ଭୁଲି ଯିବେ, ସତ୍ପଥରେ ଚାଲିବେ, ପର ପାଇଁ ଧନ ଜୀବନ ବିସର୍ଜନ କରିବେ, ମନୁଷ୍ୟର ଅପକାର କରିବେ ନାହିଁ, ପରନ୍ତୁ ଦୟା ଦାକ୍ଷିଣ୍ୟାଦି ସଦ୍‌ଗୁଣ ବଳରେ ବିମଳ ଯଶଃ ଲାଭ କରିବାକୁ ପ୍ରଗାଢ଼ ଚେଷ୍ଟା କରିବେ । ବିହଙ୍ଗମ ଯେପରି ସୁବର୍ଣ୍ଣ ପିଞ୍ଜରରେ ବାସ କରି କ୍ରମଶଃ ସୁରମ୍ୟ ଉପତ୍ୟକା ଭୁଲିଯାଏ, ଫଳ-ପୁଷ୍ପ-ଶୋଭିତ ନବ-ପଲ୍ଲବାବୃତ ବୃକ୍ଷବାଟିକାର କଥା ଭୁଲି ଯାଏ ଏବଂ ପକ୍ଷ ପ୍ରସାରିତ କରି ସ୍ୱାଧୀନ ସ୍ୱଚ୍ଛନ୍ଦ ଆକାଶ-ବିହାର ବିଷୟ ମୂଳରୁ ପାଶୋରି ଯାଏ, ମେରିପୁସ୍ ସେପରି ପିତାଙ୍କର କଥା ଏକାବେଳକେ ବିସ୍ମୃତ ହୋଇଗଲେ ।

ତାଙ୍କର ମୁଖମଣ୍ଡଳ ପୁଣି ପ୍ରସନ୍ନ ହୋଇ ଉଠିଲା । ସେ ପୂର୍ବ ପରି ଅଶ୍ୱପୃଷ୍ଠରେ ପ୍ରାତର୍ଭ୍ରମଣ କଲେ, ବିଦ୍ୟାଳୟକୁ ଗଲେ, ସମସ୍ତଙ୍କ ସଙ୍ଗେ ମିଶି ହସି କଥାବାର୍ତ୍ତା କରିବାକୁ ଲାଗିଲେ । ସେ ସାୟାହ୍ନରେ ମାତାମହଙ୍କ ସହିତ ବୁଲି ଯାଆନ୍ତି, ମାତାମହ ଯାହା ପଢ଼ାନ୍ତି ତାହା ପଢ଼ନ୍ତି । ସେହି ପିଞ୍ଜରାବଦ୍ଧ ବିହଙ୍ଗମ-ଶିଶୁ ବର୍ତ୍ତମାନ ପୁଷ୍ଟ କରି କୃତ୍ରିମକଥା କହିବାକୁ ଲାଗିଲେ—'ନେପୋଲିୟନ ଚରିତ୍ର ଦୁର୍ଦ୍ଦାନ୍ତପରାୟଣ—ତାଙ୍କର ଅନୁଚର-ଗଣ ଦସ୍ୟୁ, ପାଷଣ୍ଡ ।' ମେରିପୁସ୍ ପୂର୍ବଶିକ୍ଷା ପୁଣି ପାଇବାକୁ ଲାଗିଲେ—ସେଇ ଗୁରୁ, ସେଇ ସ୍କୁଲ, ସେଇ ସଂସର୍ଗ । ଯୌବନାରମ୍ଭରେ ମାନବ-ହୃଦୟର ସଦ୍‌ବୃତ୍ତି ସକଳ ବିକାଶୋନ୍ମୁଖ ହୋଇଥାଏ ଭଗବାନଙ୍କର ଅନିବାର୍ଯ୍ୟ ନିୟମବଶତଃ । ସୁତରାଂ ଇତିମଧ୍ୟରେ ମେରିପୁସଙ୍କ ପ୍ରାଣରେ ପିତୃଚିନ୍ତାକୁ ନେଇ କିଞ୍ଚିତ୍ ଆବେଗ ପଶିଥିଲା ।

ଏହି ସମୟରେ ପରମାର୍ସି ପୀଡ଼ିତ ହୋଇ ପଡ଼ିଲେ । ସେ ଶ୍ୱଶୁରଙ୍କ ନିକଟକୁ ପତ୍ର ଲେଖିଲେ—'ପିତଃ, ମୁଁ ଅକସ୍ମାତ୍ କଠିନ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଛି—ଆଉ ବୋଧହୁଏ ବଞ୍ଚିବି ନାହିଁ । ଦୟା କରି ପ୍ରାଣର ମେରିପୁସକୁ ଥରେ ଏଠାକୁ ପଠାଇବେ—ମରିବା ଆଗରୁ ତାହାକୁ ଥରେ ଦେଖିବି । ଆପଣଙ୍କ ନିକଟରେ ମୋର ଏହି ଶେଷ ପ୍ରାର୍ଥନା ।'

ପିତାଙ୍କୁ ଥରେ ଦେଖି ଆସିବା କାରଣ ବୃଦ୍ଧ ଦୌହିତ୍ରଙ୍କୁ ଆଦେଶ କଲେ । ମେରିୟୁସ୍ କହିଲେ, 'ଆପଣ ଯଦି ଆଦେଶ କରନ୍ତି, ତାହାହେଲେ ଯିବାକୁ ହେବ । କିନ୍ତୁ ଏହିକ୍ଷଣି ତ ମୋର ସମୟ ନାହିଁ । ପ୍ରୟୋଜନୀୟ କାର୍ଯ୍ୟାଦି ସାରି ଯଦି ପାରେ ଅପରାହ୍ଣରେ ଯିବି – ନଚେତ୍ କାଲି ସକାଳେ ।'

ଏହା କହି ସେ ପ୍ରସ୍ଥାନ କଲେ । ପିତାଙ୍କର ଶେଷ ସମୟ ଉପସ୍ଥିତ ହେବାର ଜାଣି ସୁଦ୍ଧା, ତାଙ୍କ ପ୍ରାଣରେ ଲେଶ ମାତ୍ର ଯନ୍ତ୍ରଣା ଅନୁଭୂତ ହେଲା ନାହିଁ । ଏହା ତ ଶିକ୍ଷାର ମହିମା ! ସନ୍ଧ୍ୟା ସମୟରେ ମାତାମହ ମେରିୟୁସ୍‌ଙ୍କୁ ପିତାଙ୍କୁ ଦେଖି ଯିବା କଥା ଆଉ ଥରେ ସ୍ମରଣ କରାଇଲେ । ମେରିୟୁସ୍ କହିଲେ ଯେ, ସେ ଭର୍ଣନ୍ ପଲ୍ଲୀକୁ କେବେ ଯାଇ ନାହାନ୍ତି, ରାତିବେଳେ ପିତାଙ୍କର ବାସସ୍ଥାନ ଖୋଜି ବାହାର କରିବା କଠିନ, ଅତଏବ ପରଦିନ ପ୍ରଭାତରେ ଯିବେ ।

ରାତି ପ୍ରଭାତ ହେଲା । ମେରିୟୁସ୍ କିଛିକ୍ଷଣ ଚିନ୍ତା ପରେ ସ୍ଥିର କଲେ, ପ୍ରାତଃଭ୍ରମଣ ପରେ ଭର୍ଣନ୍ ଯାତ୍ରା କରିବେ । ଶକଟ ସଜ୍ଜିତ ହେଲା । ପରିଧେୟର ପାରିପାଟ୍ୟ ସମ୍ବିଧାନରେ ବହୁ ସମୟ ଅତିବାହିତ କରି, ସେ ସକାଳ ଦଶଘଟିକା ସମୟରେ ବହିର୍ଗତ ହେଲେ ।

ଏଣେ ପଣ୍ଟମାର୍ସି ପୁତ୍ର ଦର୍ଶନ ନିମନ୍ତେ ନିତାନ୍ତ ବ୍ୟାକୁଳ ହୋଇ ପଡ଼ିଛନ୍ତି । ମୃତ୍ୟୁ-ଆସନ୍ନ—ମୁହୁର୍ମୁହୁଃ ସତୃଷ୍ଣ ନୟନରେ ଶୟନ କକ୍ଷର ଦ୍ୱାରଦେଶ ପ୍ରତି ଦୃଷ୍ଟିପାତ କରୁଅଛନ୍ତି । ନିକଟରେ ଜଣେ ଚିକିତ୍ସକ ଓ ଦୁଇଜଣ ପ୍ରତିବେଶୀ ଅଶ୍ରୁସିକ୍ତ ନୟନରେ ଉପବିଷ୍ଟ । 'କାହିଁ, ଏତେ-ବେଳଯାଏଁ ପୁଅ ଆସିଲା ନାହିଁ' ଏହା କହି ପଣ୍ଟମାର୍ସି ହଠାତ୍ ଉଠି ବସିଲେ । ଚିକିତ୍ସକ ତାଙ୍କ ହାତ ଧରି ଶୁଆଇବାକୁ ଚେଷ୍ଟା କଲେ । ପଣ୍ଟମାର୍ସି ଜୋରରେ ହାତ ଛଡ଼ାଇ ଉଠି ଠିଆ ହେଲେ, କହିଲେ, "ମୁଁ ଏହିକ୍ଷଣି ପାରି ଯିବି, ସେଇ ନିଷ୍ଠୁର ରୟଲିଷ୍ଟର ଦ୍ୱାର ତୋପରେ ଉଡ଼ାଇ ପୁତ୍ରକୁ ନେଇ ଆସିବି । ହା ମେରିୟୁସ୍ ।" ସେ ମୂର୍ଚ୍ଛିତ ହୋଇ ପଡ଼ିଲେ ।

ଉପସ୍ଥିତ ବନ୍ଧୁଗଣ ତନ୍ଦ୍ରାଲୋଚନ ଶୁଶ୍ରୂଷାରେ ବ୍ୟାପୃତ ଅଛନ୍ତି, ଏପରି ସମୟରେ ଜନୈକ ପରିଚାରିକା ଆସି ଜଣାଇଲା, ବହିର୍ଦ୍ୱାରରେ ଜଣେ ଯୁବକ ଆସି ବ୍ୟାରନ୍ ମହାଶୟଙ୍କର ପୁତ୍ର ବୋଲି ପରିଚୟ ଦେଉଅଛନ୍ତି । ସମସ୍ତେ ଏକ ବାକ୍ୟରେ କହିଲେ, 'ତାହାଙ୍କୁ ଶୀଘ୍ର ଏଠାକୁ ନେଇ ଆ ।'

ମେରାୟୁସ୍ କକ୍ଷ ମଧ୍ୟରେ ପ୍ରବେଶ କରି ପିତାଙ୍କର ଶଯ୍ୟା ପାର୍ଶ୍ୱରେ ବସିଲେ । ସେତେବେଳେ ପଣ୍ଟମାର୍ସି ସଂଜ୍ଞାହୀନ । ନିଶ୍ଚଳ ଚକ୍ଷୁ ଓ ଶ୍ୱାସକୃଚ୍ଛ୍ର ଦେଖି ସ୍ପଷ୍ଟ ବୁଝା ଯାଉଥିଲା, ତାଙ୍କର ମୃତ୍ୟୁ ସନ୍ନିକଟବର୍ତ୍ତୀ । ଡାକ୍ତର ମୃଦୁ କଣ୍ଠରେ ମେରାୟୁସଙ୍କୁ କହିଲେ, 'ଆପଣ ଖୁବ୍ ଡେରିରେ ଆସିଛନ୍ତି ।' ମେରାୟୁସ୍ ସେହି ଅବସ୍ଥା ଦେଖି ଅନୁତପ୍ତ ହୃଦୟରେ ବସି ପଡ଼ିଲେ ।

ଡାକ୍ତର—ତିନି ଘଣ୍ଟା ମିନଟ୍ ପୂର୍ବେ ଆପଣଙ୍କୁ ଦେଖିବା ପାଇଁ ବିଶେଷ ବ୍ୟାକୁଳତା ପ୍ରକାଶ କରିଥିଲେ; ବର୍ତ୍ତମାନ ତାଙ୍କର ଆଉ ଚୈତନ୍ୟ ନାହିଁ ।

ମେରାୟୁସ୍ ଡାକ୍ତରଙ୍କ ଅନୁଜ୍ଞା ନେଇ ଚିତ୍କାର କରି କହିଲେ, "ବାପା, ଦେଖନ୍ତି ମୁଁ, ଆପଣଙ୍କର ହତଭାଗ୍ୟ ମେରାୟୁସ୍ ଆସିଛି ।" ଉତ୍ତର ନାହିଁ । ପୁଣି ଚିତ୍କାର କଲେ; ତଥାପି ଇଙ୍ଗିତ ବା ଉତ୍ତର ମିଳିଲା ନାହିଁ । ସେ ସତୃଷ୍ଣଭାବରେ ମୃତ୍ୟୁ-ଶଯ୍ୟାଶାୟିତ ପିତାଙ୍କର ଆପାଦ ମସ୍ତକ ନିରୀକ୍ଷଣ କରିବାକୁ ଲାଗିଲେ । ପଣ୍ଟମାର୍ସିଙ୍କ ମୁଖମଣ୍ଡଳରେ କରଣୀୟ କ୍ଷତ ଚିହ୍ନ ଦେଖି ବୋଧହୁଏ ତାଙ୍କର ପ୍ରତୀତି ହେଲା ଯେ, ତାଙ୍କ ପିତା ଦସ୍ୟୁ ତସ୍କର ନୁହନ୍ତି, ଜଣେ ସ୍ୱଦେଶପ୍ରାଣ ବୀରପୁରୁଷ ।

ମେରାୟୁସ୍‌ଙ୍କୁ ଉତ୍କଟ ଶୋକ ଓ ମୋହ ଯୁଗପତ୍ ଆକ୍ରମଣ କଲା । ସେ ବାଷ୍ପାକୁଳ ଲୋଚନରେ କମ୍ପିତ କଣ୍ଠରେ କହିଲେ, "ଆହା, ମୋ ମାତାମହହିଁ ମୋର ସର୍ବନାଶ କରିଛନ୍ତି । ମୋ ପିତା ନୀତିଭ୍ରଷ୍ଟ ତସ୍କର ବୋଲି କହି, ସେ ମୋତେ ଦିନକ ପାଇଁ ସୁଦ୍ଧା ତାଙ୍କ ପାଖକୁ ଛାଡ଼ିଲେ ନାହିଁ । ମୋ ପିତା ଯେପରି ପ୍ରାଣତ୍ୟାଗ କରୁଅଛନ୍ତି, ତାହା ଦେଖି କେଉଁ

ପାଷଣ୍ଡ ତାଙ୍କୁ ମହାନୁଭବ ବୋଲି ସ୍ୱୀକାର କରିବ ନାହିଁ ? ତାଙ୍କର ଦୃଢ଼ କଳେବର ଯେପରି ମୂର୍ତ୍ତିମାନ୍ ପୁରୁଷକାର ବୋଲି ବୋଧ ହେଉଅଛି । ତାଙ୍କର ସୌମ୍ୟ ମୂର୍ତ୍ତିରେ ଦେଖୁଛି କେବଳ ନ୍ୟାୟ ଓ ଧର୍ମର ପ୍ରଖର ଜ୍ୟୋତି । ଦେଖ, ଦେଖ, ମୋ ପିତାଙ୍କ ମୁଖମଣ୍ଡଳ ବର୍ତ୍ତମାନ ହିଁ କପରି ପ୍ରସନ୍ନ ପ୍ରଫୁଲ୍ଲ ! ତାଙ୍କର ନିଷ୍ପ୍ରଭ ଚକ୍ଷୁରୁ ଏବେ ସୁଦ୍ଧା ପ୍ରେମ ପ୍ରୀତି ଫୁଟି ଉଠୁଛି ! ହାୟ, ନରାଧମ ମୁଁ --ଏପରି ସ୍ନେହମୟ ପିତାଙ୍କର ଦିନେ ହେଲେ ଚରଣ ସେବା କରି ପାରିଲି ନାହିଁ । ମୁଁ ଏଡ଼େ ଦୁର୍ଭାଗ୍ୟ ଯେ, ଏପରି ବୀର ପିତାଙ୍କ ସଙ୍ଗେ ଏକତ୍ର ବାସ କରି ପାରିଲି ନାହିଁ ।''

ମେରିୟସ୍ ପଣ୍ଟମାର୍ସିଙ୍କର ଗାତ୍ରବସ୍ତ୍ର ଉନ୍ମୋଚନ କରି ଉଚ୍ଚ ସ୍ୱରରେ କାନ୍ଦି କାନ୍ଦି କହିଲେ, "ପିତାଙ୍କ ସର୍ବାଙ୍ଗରେ ଯେଉଁ ସୁଗଭୀର ଅସ୍ତ୍ରାଘାତ ଦେଖୁଛି, ତାହା କଦାପି ଭ୍ରଷ୍ଟ ମତିର ପରିଚୟସୂଚକ ହୋଇ ନପାରେ । ଏହି ଅସ୍ତ୍ର ଲେଖା ଫ୍ରାନ୍ସର ମାନ ସମ୍ଭ୍ରମ ରକ୍ଷା କରିବା ପାଇଁ —ଜଗତ ବକ୍ଷରେ ଫରାସୀ ଜାତିକି ଶ୍ରେଷ୍ଠ ଜାତି ବୋଲି ପରିଚିତ କରାଇବା ପାଇଁ । ଯେଉଁମାନେ ମିତ୍ର ପାଇଁ ପ୍ରାଣପାତ କରନ୍ତି, ସେମାନେହିଁ ଏତେ ଆଘାତ ସହି ପାରନ୍ତି । ଆହା, ମାତାମହ ମତେ ପ୍ରତାରିତ କରି-ନଥିଲେ, ମୁଁ ପିତାଙ୍କ ଅଙ୍ଗରେ ପଡ଼ି ପାରିଥାନ୍ତି ଫ୍ରାନ୍ସର ଇତିବୃତ୍ତ — ପିତାଙ୍କୁ ପଚାରିଥାନ୍ତି ସେ କେଉଁ ଆଘାତଟି ଲୁଟ୍‌ଜେନରେ, କେଉଁ ଆଘାତଟି ବଟ୍‌ଜେନରେ, କେଉଁ ଆଘାତଟି ବା ଡ୍ରେସ୍‌ଡେନରେ ଏବଂ କେଉଁ ଆଘାତଟି ଅବା ଅଷ୍ଟରଲିଜରେ ପାଇଥିଲେ । ତାଙ୍କୁ ପ୍ରଶ୍ନ କରିଥାନ୍ତି—ଏହି ଶରୀରର କେଉଁ କେଉଁ ସ୍ଥାନର ରକ୍ତ ଦେଇ ଶେଷରେ 'ବ୍ୟାରନ୍' ଉପାଧି ଜୟ କରିଥିଲେ । ମାତାମହ କୁଶିକ୍ଷା ଦେଇ ନଥିଲେ, ଯଥା ସମୟରେ ଆସି ପିତାଙ୍କ ଚରଣତଳେ ବସିଥାନ୍ତି । ପିତା ବୋଲି ସମ୍ବୋଧନ (ସମ୍ଭାଷଣ) କରିଥାନ୍ତି, ତାଙ୍କ ମୁଖରୁ ଜାତୀୟ ମହା ସଂଗ୍ରାମର କଥା ଶୁଣି ବୀର-ଧର୍ମରେ ଅନୁପ୍ରାଣିତ ହୋଇଥାନ୍ତି । ଏହି ଅଲୌକିକ ବୀର ପିତାଙ୍କର ପଦସ୍ପର୍ଶରେ ମୁଁ ମଧ୍ୟ ଦିନେ ଫ୍ରାନ୍ସର ଗୌରବ ରକ୍ଷା କରିବାକୁ ସମର୍ଥ ହୋଇଥାନ୍ତି । ହାୟ, କିଛି ହେଲା ନାହିଁ ।

'କିଛି ଦେଖି ପାରିଲି ନାହିଁ, କିଛି ଶୁଣି ପାରିଲି ନାହିଁ, କିଛି କରି ପାରିଲି ନାହିଁ—କୁଶିକ୍ଷା ଫଳରେ କୁପୁତ୍ର ହୋଇ ରହିଲି, ଏପରି ପିତାଙ୍କର ସହବାସସୁଖରୁ ବଞ୍ଚିତ ହେଲି, ସ୍ୱର୍ଗ ହରାଇଲି । ମୋର ଶିକ୍ଷାକୁ ଧିକ୍, ମୋ ଜୀବନକୁ ଶତବାର ଧିକ୍, ଯେଉଁ ପାର୍ଥିବ ସୁଖୈଶ୍ୱ[ଶ୍ଚ]ର୍ଯ୍ୟ-କଳନ୍ଦରେ ଏହି ଅପାର୍ଥିବ ବସ୍ତୁ ହରାଇ ବସିଛି, ତା'କୁ ସହସ୍ରବାର ଧିକ୍ । ମୁଁ ସେଇ ରତ୍ନଲକ୍ଷ୍ମୀଙ୍କ ଗୃହରେ ରାଜଭୋଗରେ ବାସ କରିବା ଅପେକ୍ଷା ସାରାଦିନ ଭିକ୍ଷା ମାଗି ବୁଲି ଦିବସ ଶେଷରେ ପିତାଙ୍କ ଚରଣରେ ଆସି ନମସ୍କାର କରିବା ମୋ ପକ୍ଷରେ ସହସ୍ର ଗୁଣରେ ଶ୍ରେୟସ୍କର ହୋଇଥାନ୍ତା ସିନା ! ହାୟ, ଏହା ମୋ ଭାଗ୍ୟରେ ଘଟିଲି ନାହିଁ । ପୁତ୍ରବତ୍ସଳ ପିତା ମୋତେ ଦେଖିବା ପାଇଁ କେତେ ଉତ୍କଣ୍ଠିତ ଥିଲେ ! ଯଥା ସମୟରେ ଆସି ତାଙ୍କ ସହିତ ଦେଖା କଲି ନାହିଁ—ଏ ଅପରାଧ ମୋ'ର । ପିତା ! ମୁଁ ଯେପରି ଏହି ଅପରାଧ ପାଇଁ ଚିରଦିନ ଆପଣଙ୍କର ପଦପ୍ରାନ୍ତରେ ଏପରି ରୋରୁଦ୍ୟମାନ ହୋଇ ପଡିଥାଏଁ ।'

ବନ୍ଧୁମାନେ ମେରିୟୁସ୍‌ଙ୍କୁ ସାନ୍ତ୍ୱନା ଦେଲେ—ସେ ରୋଦନରୁ ବିରତ ହେଲେ । ପଣ୍ଟମାର୍ସିଙ୍କ ପକେଟରେ ଖଣ୍ଡିଏ ପତ୍ର ଥିଲା, ତାହାର ମର୍ମ—'ଓୟାଟାର୍ଲୁ ଯୁଦ୍ଧକ୍ଷେତ୍ରରେ ସମ୍ରାଟ୍ ମୋତେ 'ବ୍ୟାରନ୍' କରି-ଥିଲେ । ରାଜା ଲୁଇ ମୋତେ ସେହି ରକ୍ତ-ମୂଲ୍ୟରେ କ୍ରୀତ ଉପାଧି ବ୍ୟବହାର କରିବାକୁ ଅନୁମତି ଦେଇ ନାହାନ୍ତି । ଗଭର୍ଣ୍ଣମେଣ୍ଟଙ୍କର ଭ୍ରମ କେବେହେଲେ ଦୀର୍ଘକାଳ ସ୍ଥାୟୀ ହେବ ନାହିଁ । ମୁଁ ମୋର ଏକମାତ୍ର ପୁତ୍ର ମେରିୟୁସ୍‌କୁ ଏହି ଉପାଧି ଦେଇ ଯାଉଛି । ସେ ମୋ ମୃତ୍ୟୁ ପରେ "ଲି ବ୍ୟାରନ୍ ମେରିୟୁସ୍ ପଣ୍ଟମାର୍ସି" ନାମରେ ଅଭିହିତ ହେବ ।'

ପତ୍ର ଖଣ୍ଡିକ ପିତାଙ୍କର ଆଶୀର୍ବାଦ ମନେ କରି ମେରିୟୁସ୍ ତାହା ଶିରୋଧାର୍ଯ୍ୟ କଲେ । ପିତା ତ କିଛି ରଖି ଯାଇ ନାହାନ୍ତି । ମେରିୟୁସ୍ କୌଣସି ପ୍ରକାରେ ବନ୍ଧୁମାନଙ୍କ ସାହଚର୍ଯ୍ୟରେ ପିତାଙ୍କର ଅନ୍ତ୍ୟେଷ୍ଟି କାର୍ଯ୍ୟ ସମାଧା କରି ଦୁଇଦିନ ପରେ ମାତାମହଙ୍କ ଭବନକୁ ପ୍ରତ୍ୟାଗତ ହେଲେ ।

କେତେକ ଦିନ ଅତିବାହିତ ହୋଇଗଲା । ଦିନେ ମେରିଯୁସଙ୍କର ମାତୃଷ୍ୱସା ପିତାଙ୍କୁ କହିଲେ, "ପିତା ! ମେରିଯୁସର ଟିକିଏ ଯତ୍ନ ନିଅନ୍ତୁ । ସେ ପ୍ରାୟ ଘରେ ରହେ ନାହିଁ । ଲେଖା ପଢ଼ାରେ ତାହାର ମନ ନାହିଁ । ସକାଳେ ବାହାରିଯାଏ, ମଧ୍ୟାହ୍ନବେଳେ ଫେରେ, ପୁଣି ଅପରାହ୍ନରେ ବୁଲି ବାହାରି ଯାଏ, ରାତି ଦଶ ଘଣ୍ଟିକା ଆଗରୁ ଘରକୁ ଆସେ ନାହିଁ । ଏଥିରେ ତାହାର ଶିକ୍ଷା ଓ ସ୍ୱାସ୍ଥ୍ୟର ଖୁବ୍ କ୍ଷତି ହେଉଅଛି ।"

ଏହା କହି ତନୟା ସେଠାରୁ ପ୍ରସ୍ଥାନ କରିବା ପରେ, ବୃଦ୍ଧ ଜଳଦଗମ୍ଭୀର ସ୍ୱରରେ କହିଲେ, 'ହଁ ବୁଝିଛି । ମେରିଯୁସ୍ ବର୍ତ୍ତମାନ ପ୍ରାପ୍ତବୟସ୍କ—ଏଣୁ ବୋଧହୁଏ ପାତ୍ରୀ-ନିର୍ବାଚନ (Courtship) କରିବାକୁ ଯାଏ ।' ମେରିଯୁସ୍ କେଉଁଠାକୁ ଯା'ନ୍ତି, ତାହା ଜାଣିବାପାଇଁ ବୃଦ୍ଧ ଅନତିବିଳମ୍ବେ ଜଣେ ବିଶ୍ୱସ୍ତ ଲୋକ ନିଯୁକ୍ତ କଲେ । କେଉଁ କୁଳ-ବାଳିକା ମେରିଯୁସଙ୍କର ଚିତ୍ତାକର୍ଷଣ କରିଅଛି, ତାହା ଗୋପନରେ ତଦନ୍ତ କରି ଆସିବା କାରଣ ସେହି ଲୋକକୁ ଆଦେଶ କଲେ । କୌଣସି କୁଳବାଳିକା ଯଦି ରୂପ, ଗୁଣ ଓ ବଂଶମର୍ଯ୍ୟାଦାରେ ମେରିଯୁସଙ୍କର ସମକକ୍ଷ ହୋଇଥାଏ, ତାହାହେଲେ ତାହା ସହିତ ମେରିଯୁସଙ୍କର ପରିଣୟ ସମ୍ପନ୍ନ କରିବେ ବୋଲି ବୃଦ୍ଧ ସ୍ଥିରକଲେ ।

ପରଦିନ ପ୍ରାତଃକାଳରେ ମେରିଯୁସ୍ ଭ୍ରମଣ ପାଇଁ ବହିର୍ଗତ ହୋଇ, ପ୍ରାୟ ଏକ ମାଇଲ ଦୂରରେ ଗୋଟିଏ ଗୃହରେ ପ୍ରବେଶ କଲେ । ସେଠାରେ ଗୃହସ୍ୱାମୀଙ୍କୁ ଅଭିବାଦନ କରି କହିଲେ—'ମହାଶୟ ଶୁଣିଛି, ଆପଣ ମୋର ପରଲୋକଗତ ପିତାଙ୍କର ପରମ ବନ୍ଧୁ । ଅତଏବ ଆପଣଙ୍କ ସହିତ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ଆସିଛି ।'

ମେରିଯୁସ୍ କର୍ଣ୍ଣେଲ ବ୍ୟାରେନ୍ ପଣ୍ଟମାର୍ସିଙ୍କର ପୁତ୍ର ବୋଲି ଶୁଣିବା ମାତ୍ରକେ, ଗୃହସ୍ୱାମୀ ତାଙ୍କର କରମର୍ଦ୍ଦନ କରି କହିଲେ— 'ତୁମ ପିତାଙ୍କର ମୃତ୍ୟୁ ହୋଇଅଛି ଶୁଣି ଅତ୍ୟନ୍ତ ମର୍ମାହତ, ବ୍ୟଥିତ ହୋଇଅଛି । ସେ ବଡ଼ ଭଲ ଲୋକ ଥିଲେ । ଯଥା ସମୟରେ ଜାଣିପାରି ଥିଲେ, ତାଙ୍କୁ ଦେଖି ଯାଇଥାନ୍ତି ।'

ମେରେସ୍ପସଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା । ସେ କଥଞ୍ଚିତ୍ ଶୋକ ସମ୍ବରଣ କରି ପଚାରିଲେ, 'ମହାଶୟ, କେଉଁ ସୂତ୍ରରେ କେତେ ଦିନରୁ ମୋ ପିତାଙ୍କ ସଙ୍ଗେ ଆପଣଙ୍କର ବନ୍ଧୁତା ହୋଇଥିଲା, ତାହା ଜାଣି ପାରିବି ?'

ଗୃହସ୍ୱାମୀ କହିଲେ,—'ଅବଶ୍ୟ ପାରିବ—ସ୍ଥଳ ସେ କଥା ଯଥା ସ୍ଥାନରେ କହିବି ।'

ଉଭୟେ ବୁଲି ବାହାରିଲେ । ଅନତିଦୂରରେ ମଧ୍ୟମାକୃତି ଗୋଟିଏ ଗିର୍ଜା ଥିଲା । ସେଠାରେ ଉପସ୍ଥିତ ହୋଇ ବୃଦ୍ଧ ଗୃହସ୍ୱାମୀ ଯୁବକଙ୍କୁ କହିଲେ—'ଏହି ସ୍ଥାନରେ ତୁମ ପିତାଙ୍କ ସହିତ ମୋର ପ୍ରଥମ ଆଳାପ ହୁଏ । ତାହା ପ୍ରାୟ ପାଞ୍ଚ ଛ' ବର୍ଷ ପୂର୍ବର ଘଟଣା । ସେ ପ୍ରତି ରବିବାର ଏଠାରେ ଆସି ଠିଆ ହୁଅନ୍ତି । ସେ ଥିଲେ ବୋନାପାର୍ଟିଷ୍ଟ; ଏଣୁ ରାସ୍ତାରେ ଗଣ୍ଡା ଜନତା ଦେଖିଲେ ଏହି ଖମ୍ବ ପଛରେ ଲୁଚି ରହନ୍ତି । ମୁଁ ଏ ମାର୍ଗରେ ସର୍ବଦା ଯାତାୟାତ କରୁଥିଲି । ସେ ଦିନଠାରୁ ତୁମ ପିତାଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତ୍ୱ ଜନ୍ମିଲା । ସେ ଅନେକ ସମୟରେ ମୋତେ ତୁମ କଥା କହିଛନ୍ତି । କେବେ କେବେ ସେ ମୋ ଘରକୁ ଯା'ନ୍ତି ଏବଂ ହର୍ଷ ବିଷାଦରେ ପରିପ୍ଳୁତ ହୋଇ ବିଶ୍ୱସମରର ଘଟଣା ବର୍ଣ୍ଣନ କରନ୍ତି । ସେ ବଡ଼ ଲୋକ ଥିଲେ ।

ସ୍ୱର୍ଗତ ପିତା ଗିର୍ଜାର ଯେଉଁ ଭାଗରେ ଠିଆ ହେଉଥାନ୍ତି, ସେହି ସ୍ଥାନଟିକୁ ମେରିୟୁସ୍ ମନେ ମନେ ପ୍ରଣାମ କଲେ । ସେ ଯେଉଁ ସ୍ତମ୍ଭ ଅନ୍ତରାଳରେ ଲୁଚି ରହୁଥାନ୍ତି, ସେହି ସ୍ତମ୍ଭଟି ସ୍ପର୍ଶ କରିବାକ୍ଷଣି ପିତୃଭକ୍ତ ଯୁବକଙ୍କର ଶରୀର ରୋମାଞ୍ଚିତ ହୋଇ ଉଠିଲା । ବୋନାପାର୍ଟିଷ୍ଟ ଦଳର ବିସ୍ତୃତ ବିବରଣ ଶୁଣାଇବା କାରଣ ମେରିୟୁସ୍ ଅତି ବିନୀତ ଭାବରେ ବୃଦ୍ଧଙ୍କୁ ଅନୁରୋଧ କଲେ ।

*

# ବୋନାପାର୍ଟିଷ୍ଟ ଦଳ

ବୃଦ୍ଧ କହିଲେ, 'ନେପୋଲିୟନ୍ କିଏ ଏବଂ ତାଙ୍କ ଅନୁଚରଗଣ କି ପ୍ରକୃତିର ଲୋକ ଥିଲେ ତାହା ବୁଝିବାକୁ ହେଲେ, ଉପପ୍ଳବ ସମ୍ବନ୍ଧରେ କିଛି ଜାଣିବା ଦରକାର ।' ମେରିୟସ୍ ସେହି ଦିନ ଯାଏଁ ଫରାସୀ-ବିପ୍ଳବର ବୃତ୍ତାନ୍ତ ପାଠ କରି ନଥିଲେ । ସୁତରାଂ ତାହା ଜାଣିବା ନିମନ୍ତେ ତାଙ୍କର ଖୁବ୍ କୌତୂହଳ ଜନ୍ମିଲା ।

ବୃଦ୍ଧ କହିଲେ, 'ଉପପ୍ଳବ ବିଷୟ ଅତି ସଂକ୍ଷେପରେ ବର୍ଣ୍ଣନା କରିବି । ବୋନାପାର୍ଟିଷ୍ଟମାନେହିଁ ଫରାସୀ ଜାତିକି ଜଗତ ଆଗରେ ବଡ଼ କରି ଉଠାଇଛନ୍ତି; ଫ୍ରାନ୍ସର ପ୍ରକୃତ ପରିଚୟ ଦେଇଛନ୍ତି । ଉପପ୍ଳବହିଁ ସେମାନଙ୍କର ପଥ ପ୍ରସ୍ତୁତ କରିଥିଲା । ଅତି ପ୍ରାଚୀନ କାଳରୁ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ଫ୍ରାନ୍ସ ବୋଇଲେ ଲୋକେ ବୁଝୁଥିଲେ, ଏକ ଲକ୍ଷ ପ୍ରଭୁ ଆଉ ତିରିଶି ଲକ୍ଷ କିଙ୍କର । ପ୍ରଭୁମାନଙ୍କ ପ୍ରଭାବ ଓ ମହିମାର ଇୟତ୍ତା ନଥିଲା । କୌଣସି ପ୍ରଜା କୋଡ଼ିଏ ଶିଲିଂ ଉପାର୍ଜ୍ଜନ କଲେ, ତହିଁରୁ ଷୋଳ ଶିଲିଂ ପ୍ରଭୁ ଚରଣରେ ଅର୍ପଣ କରିବାକୁ ବାଧ୍ୟ ହେଉଥିଲା । ନିରୂପାୟ ପ୍ରଜାଗଣ ଯଥାସର୍ବସ୍ୱ ପ୍ରଭୁମାନଙ୍କ ଚରଣରେ ଅର୍ପଣ କରି ସ୍ତ୍ରୀ ପୁତ୍ର ନେଇ ବର୍ଷତମାମ ଅର୍ଦ୍ଧାଶନରେ ରହୁଥିଲେ କିମ୍ବା ଅନଶନରେ ପ୍ରାଣତ୍ୟାଗ କରୁଥିଲେ । ଏଥିରେ ପ୍ରଭୁସମ୍ପ୍ରଦାୟର ଯାଏ ଆସେ କେତେ ? ସେମାନଙ୍କର ବିଳାସ-ଭବନ ସୁସଜ୍ଜିତ, ନାଟ୍ୟଶାଳା ସକଳ ଉତ୍ସବମୟ ଆମୋଦପୂରିତ ହେଲା ! ଇତିମଧ୍ୟରେ କେଉଁଠାରୁ ଦଳେ ଲୋକ ଆସି ଗୋଟାଏ ଭୟଙ୍କର ସଂକଳ୍ପ କରି ବସିଲେ —ଆମେମାନେ ଏଇ ତିରିଶି ଲକ୍ଷ ପ୍ରଜାଙ୍କୁ ଏଇ ଏକ ଲକ୍ଷ ପ୍ରଭୁଙ୍କ ମୁଣ୍ଡରେ ବସାଇବୁଁ । ଏହା ହେଲା ଉପପ୍ଳବର ସୂତ୍ରପାତ ! ଦେଖୁଁ ଦେଖୁଁ ରାଜା, ରାଣୀ, ରାଜପରିବାର, ରାଜକୁଟୁମ୍ବ, ରାଜାନୁଚର, ରାଜକର୍ମଚାରୀ ଯେ ଯେଉଁଠି ଶ୍ୱାସ ପ୍ରଶ୍ୱାସ କରୁଥିଲା, ସମସ୍ତେ ଏକ ବର୍ଷ ମଧ୍ୟରେ ଗିଲୋଟିନ୍‌କୁ ପ୍ରେରିତ ହେଲେ ।

'ଜାତୀୟ ଅଭିଧାନରୁ 'ରାଜ' ଶବ୍ଦ ଏକାବେଳକେ ଉଠିଗଲା । ଉପପ୍ଲବକାରୀଗଣଙ୍କର ସାହସ ଓ ଅଧ୍ୟବସାୟ ଦେଖି ଜଗତ୍ ସ୍ତମ୍ଭିତ ହେଲା । ସେହି ରାଜନୈତିକ ଭୂମିକମ୍ପରେ ସମଗ୍ର ଇଉରୋପ କମ୍ପିତ ହୋଇ ଉଠିଲା । କେହି କେହି କହିଲେ, ଉପପ୍ଲବକାରୀମାନେ ଶୂନ୍ୟରୁ ଖସିଛନ୍ତି—କେହି କେହି ବା କହି ବୁଲିଲେ, ସେମାନେ ଭୂଗର୍ଭରୁ ଉଠି ଆସିଛନ୍ତି ।'

'ସେହି ନିଦାରୁଣ ଉପପ୍ଲବ କେବଳ ବର୍ତ୍ତମାନ ପ୍ରତି ଘୋରତର ଅତ୍ୟାଚାର କରି କ୍ଷାନ୍ତ ହେଲା ନାହିଁ, ଅତୀତ ପ୍ରତି ବି ତୀବ୍ର କଟାକ୍ଷପାତ କରିବାକୁ ଲାଗିଲା । ସେହି ଦୁର୍ଦ୍ଦମନୀୟ ପିଶାଚ ଫ୍ରାନସ୍‌ମୟ ସମାଧିକ୍ଷେତ୍ରରେ ପ୍ରବେଶ କରି, ଅନନ୍ତକାଳର ରାଜନ୍ୟବର୍ଗ, ବନ୍ଦିତାଶ୍ରେଣୀ ଓ ସାଧୁ ସନ୍ନ୍ୟାସି-ଗଣଙ୍କର ମୃନ୍ମୟ ଦେହାବଶେଷ ବାହାର କରି କପାଳକଙ୍କାଳରେ ଫୁଟବଲ୍ ଖେଳି ବୁଲିଲା । କେତେକ ଜଣ ଧର୍ମଯାଜକ ଗିଲୋଟିନ ଚଢ଼ିଲେ, କେତେକ ଜଣ ହୃତସର୍ବସ୍ୱ ହୋଇ ଅନାହାରରେ ଜୀବନ ହରାଇଲେ । ଅବଶିଷ୍ଟ ଧର୍ମଯାଜକମାନେ ଭୟୋଦ୍ବିଗ୍ନ ହୋଇ ପାରିସରୁ ରୋମକୁ ପଳାୟନ କରିବାବେଳେ ମାର୍ଗରେ ଲୋଷ୍ଟ୍ରବୃଷ୍ଟିରେ ସ୍ୱର୍ଗାରୋହଣ କଲେ ।'

"ବର୍ତ୍ତମାନ, ଅତୀତ ଓ ସ୍ୱର୍ଗର ଉନ୍ମୂଳନ କରି ସେହି ଦୁର୍ନିବାର ଉପପ୍ଲବ-ସ୍ରୋତ ଚତୁର୍ଧା ବିଭକ୍ତ ହୋଇ ପଡ଼ିଲା । ବେଲି ପ୍ରମୁଖ ପଣ୍ଡିତଗଣ ପୁନର୍ବାର ଇଂଲଣ୍ଡ ପରି ଜନୈକ ଖର୍ବୀକୃତ ନୃପତି ଲୋଡ଼ିଲେ । ଡାଣ୍ଟନ ପ୍ରମୁଖ ସଭ୍ୟଗଣ ମଧ୍ୟବିତ୍ତ ଲୋକଙ୍କର ମତାମତ ଗ୍ରହଣ କରି ଶାସନଦଣ୍ଡ-ପରିଚାଳନାର ପ୍ରସ୍ତାବ କଲେ । ରୋବସ୍ପାୟାର ପ୍ରମୁଖ ଅବତାରଦଳ ନିରକ୍ଷର ଇତରଗଣଙ୍କର ଇଚ୍ଛାନୁଯାୟୀ ଶାସନ ଚଳାଇବାକୁ ବଦ୍ଧପରିକର ହେଲେ । ଚତୁର୍ଥତଃ ମାରା ପ୍ରଭୃତି ରାକ୍ଷସମାନେ, ସମାଜର ଊର୍ଦ୍ଧ୍ୱସ୍ତରକୁ ଛେଦନ କରି କରି ଯେତେ ଦୂର ଓହ୍ଲାଇ ଆସିଲେ ଶାନ୍ତି ମିଳିପାରେ, ସେତେ ଦୂର ଓହ୍ଲାଇବାର ବ୍ୟବସ୍ଥା କଲେ ।

"ତୁମୁଳ କାଣ୍ଡ ଉପସ୍ଥିତ । ସମସ୍ତେ ଧନ ପ୍ରାଣ, ମାନ ନେଇ ବ୍ୟସ୍ତବ୍ୟସ୍ତ । ପଳାୟନ ଅସମ୍ଭବ । ପଥରେ ପ୍ରହରୀ, ଲୋଷ୍ଟ୍ର, ଝୁଲାଇବା

ପାଇଁ ଷଡ଼ଯନ୍ତ୍ର ବିଦ୍ୟମାନ । ଧନୀର ରକ୍ଷା ନାହିଁ—କାରଣ ଉପପ୍ଲବ ସକାଶେ ବିପୁଳ ଧନ ଆବଶ୍ୟକ । ନିର୍ଦ୍ଧନର ବି ନିସ୍ତାର ନାହିଁ—କାରଣ ସେ ଜଗତର ସକଳ ପାପ କାର୍ଯ୍ୟ କରିଥାଏ । ଯେ ବୁଦ୍ଧିମାନ୍, ତାହାର ରକ୍ଷା ନାହିଁ - କାରଣ ସେ ଉପପ୍ଲବ ବିରୋଧରେ ଷଡ଼୍ଯନ୍ତ୍ର କରିପାରେ । ଯେ ନିର୍ବୋଧ, ତାହାର ବି ରକ୍ଷା ନାହିଁ--ଗୁପ୍ତମନ୍ତ୍ରଭେଦ ଯେ ତାହାର କାର୍ଯ୍ୟ । ଉପପ୍ଲବକାରୀଗଣଙ୍କର ଶକ୍ତ ବିଶ୍ୱାସ, ସେମାନେ ପ୍ରକୃତ ସ୍ୱଦେଶ ହିତୈଷୀ, ଫ୍ରାନ୍ସର ମହୋପକାର ସାଧନ ପାଇଁ ଅବତୀର୍ଣ୍ଣ । ସେତେବେଳେ ଅଭିଜାତ ତନ୍ତ୍ରର ଉଦ୍ଧାର କଳ୍ପେ ଶାର୍ଲୋଟ୍ କର୍ଡ଼େ ଆସି ମାରାଙ୍କର ପ୍ରାଣସଂହାର କଲେ, ସେତେବେଳେ 'କମିଟି-ଅବ୍-ପବ୍ଲିକ ସେଫ୍ଟି' (ଅଭୟ-ସମିତି) ସଙ୍ଗଠିତ ହେଲା । ଯାହା ଉପରେ ଏହି କମିଟିର ସନ୍ଦେହ ହେଲା ସେ ଧୃତ ହୋଇ ପ୍ରାଣ ହରାଇଲା ।

'ପାରିସର ପଞ୍ଚାଶତ୍ ଗୋଟି କାରାଗାର ପୂର୍ଣ୍ଣ ହୋଇଗଲା । 'ଟିନ-ଭାଇଲ' ଅଭୟ-ସମିତି କର୍ତ୍ତୃକ ଧୃତ ଲୋକମାନଙ୍କର ବିଚାରାର୍ଥ ଜଜ ନିଯୁକ୍ତ ହୋଇଥିଲେ । ଜଗତରେ ତାଙ୍କ ପରି ନୃଶଂସ ଲୋକଙ୍କୁ କେହି କେବେହେଲେ କଳ୍ପନା-ଚକ୍ଷୁରେ ବି ଦେଖିନାହିଁ । ଅଭିଯୁକ୍ତ ବ୍ୟକ୍ତିର ପ୍ରାଣଦଣ୍ଡ ନହେଲେ ତାଙ୍କର ନିଦ୍ରା ହେଉ ନଥିଲା । ସେ ଅଭିଯୁକ୍ତଗଣଙ୍କ ମଧ୍ୟରେ ଶତକଡ଼ା ଅନେଶ୍ୱତ ଜଣଙ୍କୁ ଗିଲୋଟିନକୁ ପଠାଉଥାନ୍ତି । ଏହି ଉପପ୍ଲବକ ବିଚାରପତିଙ୍କ ଆନନ୍ଦର ଆଉ ସୀମା ରହିଲା ନାହିଁ । ପ୍ରତ୍ୟହ ଗିଲୋଟିନକୁ ଏକ ସହସ୍ର ମସ୍ତକ ପଠାଇବାକୁ ଲାଗିଲେ ।

ମେଡୋବ୍ରୁସ୍:—ମହାଶୟ ଆପଣ କଣ ଅତିରଞ୍ଜିତ କରି କହୁଛନ୍ତି ?

ବୃଦ୍ଧ:—କଦାପି ନୁହେ । ଯାହା ସ୍ୱଚକ୍ଷୁରେ ଦେଖିଛି, ତାହାହିଁ କହୁଛି । ଫରାସୀ-ଉପପ୍ଲବର ଅତିରଞ୍ଜିତ ବର୍ଣ୍ଣନା କରିପାରେ ଏପରି ବାଗ୍ମୀ ଧରାଧାମରେ ଅଦ୍ୟାପି ଅବତୀର୍ଣ୍ଣ ହୋଇ ନାହିଁ । ଭଗବାନଙ୍କର ମତ କି ବିଚିତ୍ର ! ଉପପ୍ଲବକାରୀଗଣ ଆତ୍ମରକ୍ଷାର୍ଥ ଯେଉଁ କମିଟି ସୃଷ୍ଟି କରିଥିଲେ, ସେହି କମିଟିହିଁ ସେମାନଙ୍କର ସର୍ବନାଶର କାରଣ ହୋଇ ଉଠିଲା । ବନୋଦ୍ଭୂତ ଅଗ୍ନି ଯେପରି ବନକୁହିଁ ଭସ୍ମୀଭୂତ କରେ, ସେପରି ସେମାନଙ୍କର ସଙ୍ଗଠିତ

ମନୋମତ କମିଟି ସେମାନଙ୍କୁହିଁ ଗ୍ରାସ କରିବାକୁ ବଦନ ବ୍ୟାଦାନ କରି ବସିଲା । କମିଟି-ସଭାପତି ରୋବସ୍ପିୟାର କହିଲେ, 'ଜାତୀୟ ସଭାର ଅନ୍ୟତମ ସଦସ୍ୟ ବେର୍ଲିଙ୍କ ଉପରେ ଘୋର ସନ୍ଦେହ ହେଉଅଛି; କାରଣ—ସେ କେବେ କେବେ ରାଜା ଗୃହାନ୍ତ ଏବଂ ଅଭିଜାତ ତନ୍ତ୍ରର ପୃଷ୍ଠପୋଷଣ କରନ୍ତି ।' ବୋଲି ଧୃତ ହେଲେ । ବଗୃରପଟୁ ଟିନଭାଇଲ୍ ଅଶେଷ ଶାସ୍ତ୍ରାଧ୍ୟାପକ ମୂଜମାୟୁ ବେଲୀଙ୍କୁ ଗିଲୋଟିନରେ ଚଢ଼ାଇ ଦେଲେ । ଦେଖୁଁ ଦେଖୁଁ ବିଦ୍ୱାନ୍, ନ୍ୟାୟପରାୟଣ ଓ ଧର୍ମଭୀରୁ ଗିରଣ୍ଡିଷ୍ଟଗଣ ମଧ୍ୟ ଜାତୀୟ ସଭାଗୃହର ପ୍ରତିଭାମଞ୍ଚ ଶୂନ୍ୟ କରି ମହାପଥର ପଥିକ ହେଲେ ।

'ଗିଲୋଟିନର ସେହି ନିଦାରୁଣ କୁଠାର ଏତେ ଦିନ ସୁଦୀର୍ଘ ରାଜସର୍ଗ ଉପଭୋଗ କରି, ଗିରଣ୍ଡିଷ୍ଟଗଣଙ୍କର ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ଏକ ପଦ ତଳକୁ ଖସି ଅଭିଜାତ ତନ୍ତ୍ରର ସ୍କନ୍ଧରେ ଆସି ସଂଲଗ୍ନ ହେଲା । ଏହି ତନ୍ତ୍ରର ଶେଷ ହେଲେ ଡ୍ୟାଲ୍‌ଟନିଷ୍ଟ ଦଳର ମନସ୍କାମନା ସିଦ୍ଧ ହେବାର କଥା, କାରଣ ସେମାନେ ତନ୍ନିମ୍ନସ୍ଥ ମଧ୍ୟବିତ୍ତ ସମ୍ପ୍ରଦାୟର ନେତା । କିନ୍ତୁ ସେଥିରେ ରୋବସ୍ପିୟାରଙ୍କର କୌଣସି ଲାଭ ନାହିଁ—ସେ ସେ ସର୍ବନିମ୍ନସ୍ତରର କର୍ତ୍ତା । ତଥାପି ରୋବସ୍ପିୟାର ଡ୍ୟାଲ୍‌ଟନିଷ୍ଟମାନଙ୍କୁ ପ୍ରାଣପଣେ ସାହାଯ୍ୟ କରିବାକୁ ଲାଗିଲେ । ଏହି ନିଃସ୍ୱାର୍ଥ ପରୋପକାର ଯେ ସର୍ପର ନିର୍ମୋକବର୍ଜ୍ଜନ ଭିନ୍ନ ଆଉ କିଛି ନୁହେଁ, ସେତେବେଳେ କେହି ବୁଝି ପାରିଲେ ନାହିଁ ।

'ଅଭିଜାତତନ୍ତ୍ର 'ଲା ଭେଣ୍ଡି' ପ୍ରଦେଶରେ ଶରଣ ନେଲେ । ସେଠାରେ ଏକ ଲକ୍ଷ କୃଷକ ବାସ କରୁଥିଲେ । ସେମାନେ ମୁକ୍ତାନୁରାଗ ନିବନ୍ଧନ ଭୂମ୍ୟାଧିକାରିମାନଙ୍କ ପାଇଁ ଅସାଧାରଣ

---

ଯେଉଁମାନେ ଫ୍ରାନ୍ସ ଅନ୍ତର୍ଗତ ଗିରଣ୍ଡ ପ୍ରଦେଶର ପ୍ରତିନିଧି ସ୍ୱରୂପ ଆସିଥିଲେ, 'ଗିରଣ୍ଡିଷ୍ଟ' ନାମରେ ପରିଚିତ ଥିଲେ । ମହାମତି ବେର୍ଲି ଥିଲେ ଏ ଦଳର ନେତା । ରାଜା ଷୋଡ଼ଶ ଲୁଇଙ୍କୁ ରକ୍ଷା କରିବାକୁ ଏମାନେ ପ୍ରାଣପଣେ ଚେଷ୍ଟା କରିଥିଲେ ।

କଲେ । ହାୟ ! ହତଭାଗ୍ୟ କୃଷକମାନେ ଜାଣିନଥିଲେ ଯେ, ଗଭର୍ଣମେଣ୍ଟ ସମ୍ପ୍ରତି ଅଦ୍ୱୈତବାଦୀ ହୋଇଅଛନ୍ତି ଏବଂ ସେମାନଙ୍କର ସର୍ବନାଶସାଧନାରେ ଆଉ ମତଭେଦ ହେବାର ଅଣୁମାତ୍ର ସମ୍ଭାବନା ନାହିଁ । କେବଳ ମନୁଷ୍ୟ ନୁହେ—ଲା ଭେଣ୍ଡି ନଗରର ଗୃହପାଳିତ ପଶୁ ପକ୍ଷୀ ମଧ୍ୟ ନିହତ ହେଲେ । ସୁରମ୍ୟ ଶସ୍ୟଶ୍ୟାମଳ ଲା ଭେଣ୍ଡି ଏକଠ ଶ୍ମଶାନରେ ପରିଣତ ହୋଇ ପଡ଼ିଲା । ବତ୍ତିଶ ସହସ୍ର ଭେଣ୍ଡିୟାନ୍ ଆବାଳ ବୃଦ୍ଧ ବନିତା 'ଲୟେର' ନଦୀଗର୍ଭରେ ସମାହିତ ହେଲେ ।

ଡ୍ୟାଲ୍‌ଟନ ଦଳର ଲୋକମାନେ ଏହି କାଣ୍ଡ ଘଟାଇ ଥିଲେ । ସୁତରାଂ ସରଳ ପ୍ରକୃତି ଡ୍ୟାଲ୍‌ଟନଙ୍କର ବିନାଶ ଅପରିହାର୍ଯ୍ୟ ହୋଇ ଉଠିଲା—ଗିଲୋଟିନରେ ତାଙ୍କର ଜୀବଲୀଳା ସାଙ୍ଗ ହେଲା । ଡ୍ୟାଲ୍‌ଟନିଷ୍ଟଗଣଙ୍କର ପତନ ସଙ୍ଗେ ସଙ୍ଗେ, ଗିଲୋଟିନର ଖଡ୍‌ଗ ମଧ୍ୟବର୍ତ୍ତୀ ଲୋକମାନଙ୍କ ସ୍କନ୍ଧ ଉପରେ ଆସି ବସିଲା । ପୁଣି ପାରିସର ପଞ୍ଚାଶତ କାରାଗୃହ ପୂର୍ଣ୍ଣ ହେଲା । କିଛି ଦିନ ତଳେ ଯେଉଁ ସ୍ଥାନ ରାଜପରିବାର ଓ ଅଭିଜାତ ତନ୍ତ୍ରର ସମାଗମରେ ଗମ୍ଭୀର ଭାବ ଧାରଣ କରିଥିଲା, ସେହି ସ୍ଥାନ ଆଜି ଶତ ସହସ୍ର ଗୁ-ପୋଷା (ମଧ୍ୟବର୍ତ୍ତୀ) ଲୋକଙ୍କର ହୃଦୟ ବିଦାରକ ଚୀତ୍କାରରେ ପ୍ରତିଧ୍ୱନିତ ହୋଇ ଉଠିଲା ।'

ମେରିୟସ୍—ଏମାନଙ୍କର ଅପରାଧ କଣ ?

ବୃଦ୍ଧ—ଏମାନଙ୍କ ମଧ୍ୟରେ କେହି ଭୂତପୂର୍ବ ନୃପତିଙ୍କର ପାଦୁକା ନିର୍ମାଣ କରୁଥିଲା । କେହି ରାଜମହିଷୀଙ୍କର କେଶବିନ୍ୟାସ କରୁଥିଲା । କେହି ବା ଅଭିଜାତତନ୍ତ୍ରର ପରିଚ୍ଛଦ ପ୍ରସ୍ତୁତ କରୁଥିଲା । କାହାର ପିତା ଉପପ୍ଳବର ନିନ୍ଦାରଚନା କରୁଥିଲା, କାହାର ବା ଭାଇ ପଳାୟମାନ ଲଇଁକୁ ଧରିବାକୁ ଅକ୍ଷମ ହୋଇଥିଲା । କାହାର ପୁତ୍ର ଯଥାସମୟରେ ଉପପ୍ଳବରେ ଯୋଗ ଦେଇ ନାହିଁ, କାହାର ବା ପତି ବୈଦେଶିକ ସମରରେ ଅକୃତକାର୍ଯ୍ୟ ହୋଇଅଛି । ଏ ସମସ୍ତ

କାର୍ଯ୍ୟ ଅପରାଧ ବୋଲି ଧରାଗଲା । ମାତା ପୁତ୍ର, ପିତା ପୁତ୍ରୀ, ଭ୍ରାତା ଭଗିନୀ, ସ୍ତ୍ରୀ ପୁରୁଷଙ୍କର ଚକ୍ଷୁଜଳାକ୍ରାନ୍ତ ବିରସ ବଦନରେ କାରାଗୃହ ତମୋମୟ ହୋଇ ଉଠିଲା । ପ୍ରତ୍ୟେକ ଲୋକ ଈଶ୍ୱରଙ୍କୁ ଗୁହାରି ଜଣାଇଲା, ସେ ଯେପରି ସର୍ବପ୍ରଥମେ ଇହଲୋକରୁ ଯାଇ ପାରେ । ଅପ୍ରତିହତଶକ୍ତି ରୋବସ୍ପାୟାର ଦଣ୍ଡରେ ଏକ ଶତ ହିସାବରେ ପ୍ରଜାରଞ୍ଜନ କରିବାକୁ ଲାଗିଲେ ।

'ଫ୍ରାନ୍ସ ପିବା ଉପରେ ବସିଲା । କିନ୍ତୁ ମାନବ ଦୁର୍ଗତିର ଗୋଟାଏ ଫେରେ ସୀମା ତ ଅଛି । ଜାତୀୟ ସମିତିର ଜନୈକ ସଭ୍ୟ ଦଣ ଜଣାର ଅଧ୍ୟବସାୟ ଫଳରେ ଏହି ଭୀଷଣ ରାକ୍ଷସର ବିନାଶ ସାଧନ କଲେ । (ପଞ୍ଚଦଶ ବର୍ଷୀୟା ଜଣେ ବାଳିକା ଫ୍ରାନ୍ସର ଭାଗ୍ୟ ଫେରାଇ ଆଣିଲା ।) ୧୭୯୪ ଖ୍ରୀଷ୍ଟାବ୍ଦ ଜୁଲାଇ ୨ ତାରିଖ ଦିନ ରୋବସ୍ପାୟାର ସ୍ୱପ୍ରତିଷ୍ଠିତ ଗିଲୋଟିନରେ ନିଜ ମସ୍ତକ ଉପହାର ଦେଲେ । ଦଳର ସଭ୍ୟମାନେ ବି ପରଦିନ ପ୍ରତ୍ୟୁଷରେ ନେତାଙ୍କର ଅନୁଗମନ କଲେ ।

'କାରାଗାର-ଦ୍ୱାର ମୁକ୍ତ ହେଲା । ଏକ ଲକ୍ଷ ଲୋକ ରାଜପଥରେ ଆନନ୍ଦରେ ଜୟଧ୍ୱନି କରି ବୁଲିଲେ, "ସ୍ୱର୍ଗ ରାଜ୍ୟ ପ୍ରତିଷ୍ଠିତ ହୋଇଅଛି ।" ସ୍ୱର୍ଗରାଜ୍ୟ ତ ଆସିଲା, ତାହାର କର୍ଣ୍ଣଧାର ହେଉଛି କିଏ ? ବ୍ୟାରା ପ୍ରଭୃତି ସଭ୍ୟଚତୁଷ୍ଟୟ ପରମ ପଣ୍ଡିତ, ନ୍ୟାୟବାନ୍ ଓ ଧର୍ମଭୀରୁ—ଏମାନେ ଶାସନ ଦଣ୍ଡ ପରିଚାଳନ କରିବାକୁ ସମର୍ଥ । କିନ୍ତୁ ଏମାନଙ୍କୁ ରକ୍ଷା କରିବ କିଏ ? ନେତୃ ମୃତ୍ୟୁରେ କ୍ରୋଧାନ୍ଧ ଏକ ଲକ୍ଷ ମବ୍ (Mob) ବ୍ୟାରାଙ୍କର ପ୍ରାଣ ସଂହାର କରିବାକୁ ପାଖରେ ଉପନୀତ ହୋଇଛନ୍ତି—ଏ ବିପଦରେ ରକ୍ଷା କରୁଛି କିଏ ? ଗଭର୍ଣ୍ଣମେଣ୍ଟ ସୈନ୍ୟ ଉପରେ ନିର୍ଭର କରାଯାଇ ନପାରେ—ସେମାନେ ଯେ ବିପ୍ଳବ ବେଳେ ଏକାଧିକ ଥର ବିଶ୍ୱାସଘାତକତାର ପରିଚୟ ଦେଇଛନ୍ତି । ମାତ୍ର ଦୁଇ ସହସ୍ର ଲୋକ ଗଭର୍ଣ୍ଣମେଣ୍ଟଙ୍କର ବିଶ୍ୱସ୍ତ ।

ତେବେ ସେମାନଙ୍କର ପରିଗୃଳନା କରୁଛନ୍ତି କିଏ, ସେମାନେ ଆଜ ଗୃରି ଗୃଳିଶି ହଜାର ଦସ୍ୟୁଙ୍କର ସମ୍ମୁଖୀନ ହେଉଛନ୍ତି ବା କିପରି ?

'ଏହି ସମୟରେ କର୍ସିକାଦ୍ୱୀପର ଜଣେ ଅଜାତଶ୍ମଶ୍ରୁ ବାଳକ ଟାଗ୍ୱର କୌଣସି ହୋଟେଲରେ ରହି ସାମରିକ କର୍ମର ଉମେଦାରୀ କରୁଥିଲା । ଅନନ୍ୟଗତି ବ୍ୟାରା ସେହି ବାଳକକୁହିଁ ସେହି ଗ୍ୱରି ସକାଶେ ସୈନ୍ୟାଧ୍ୟକ୍ଷ ନିଯୁକ୍ତ କଲେ । ଦୁର୍ଜୟ ବାଳକ ଦୁଇ ସହସ୍ର ଲୋକଙ୍କୁ ସଙ୍ଗେ ନେଇ, ସେଇ ଗୃଳିଶି ସହସ୍ରକୁ ଛିନ୍ନ ଭିନ୍ନ କରି, ପୁରବାସିଗଣଙ୍କର ବିଶେଷତଃ ବ୍ୟାରା ପ୍ରମୁଖ ସଭ୍ୟ-ମାନଙ୍କର କୃତଜ୍ଞତାଭାଜନ ହେଲା । ଏହି ବ୍ୟକ୍ତିହିଁ ନେପୋଲିୟନ ବୋନାପାର୍ଟ ।

'ବୋନାପାର୍ଟଙ୍କର ପଦବୃଦ୍ଧି ହେବାକୁ ଲାଗିଲା । ପଦୋନ୍ନତି ସଙ୍ଗେ ସଙ୍ଗେ ସେ ପ୍ରଗ୍ୱର କରି ବୁଲିଲେ ଯେ, ଗୁଣର ପଥ ପ୍ରଶସ୍ତ, ଯୋଗ୍ୟତାର ଦ୍ୱାର ଅବାରିତ । ଫ୍ରାନ୍ସ ଦେଶରେ ଜୋର ଜବରଦସ୍ତି କରି କେହି କାହାର ସ୍କନ୍ଧରେ ଚଢ଼ି ପାରିବ ନାହିଁ । ଯେଉଁ ବ୍ୟକ୍ତି ପ୍ରକୃତ ଗୁଣବାନ୍, ସେ ନ୍ୟାୟତଃ ଅନ୍ୟ ଉପରେ ରହିବ ।

'ଏହି ମନୋହର ସୂତ୍ରରେ, ମତବୈଷମ୍ୟପୀଡିତ ଫ୍ରାନ୍ସରେ ଶାନ୍ତି ସଂସ୍ଥାପିତ ହେଲା ସତ; କିନ୍ତୁ ସୂତ୍ର-ପ୍ରଣେତାଙ୍କ ପ୍ରତି ଇଉରୋପୀୟ ରାଜନ୍ୟବୃନ୍ଦଙ୍କର ତୀବ୍ର ଦୃଷ୍ଟି ସମାକୃଷ୍ଟ ହେଲା । ସେମାନେ ମନେ କରିଥିଲେ, ଫ୍ରାନ୍ସ ଆତ୍ମକଳହରେ ଉତ୍ସନ୍ନ ହୋଇ ପଡ଼ନ୍ତେ, ଶେଷରେ ଶରଣାଗତ ଅଷ୍ଟାଦଶ ଲୁଇ ଉପପ୍ଳବ -ଶବ ଉପରେ ଗ୍ୱଲି ଯାଇ ରାଜଧାନୀରେ ପ୍ରବେଶ କରିବେ । କିନ୍ତୁ ଯେତେବେଳେ ସେମାନେ ଦେଖିଲେ ଯେ, ସେହି ରୁଧିରସାର-ସିକ୍ତ ଉପପ୍ଳବ-କ୍ଷେତ୍ରରେ କେହି ଜଣେ ଆସି ପୁନରାୟ ସୁବ୍ୟବସ୍ଥାର ବୀଜ ବପନ କରୁଅଛି, ସେତେବେଳେ ସେମାନଙ୍କର ଈର୍ଷାନଳ ପ୍ରଜ୍ୱଳିତ ହୋଇ ଉଠିଲା । ସେମାନଙ୍କ ଭିତରୁ ଛଅଟି

କାରଣ ଥିଲା । ପ୍ରଥମତଃ ନେପୋଲିୟନଙ୍କର ପଦଚ୍ୟୁତି ଫଳରେ ବୋର୍ବନ୍ ବଂଶର ପୁନଃ ପ୍ରତିଷ୍ଠା ସୁଦୂରପରାହତ ହୋଇ ପଡ଼ିଲା । ଦ୍ୱିତୀୟତଃ ଫ୍ରାନ୍ସରେ ସାମ୍ୟ-ମୈତ୍ରୀ ସଂସ୍ଥାପିତ ହେବାରୁ ଇଉରୋପରେ ସର୍ବତ୍ର ଅଭିଜାତ-ତନ୍ତ୍ରର ପ୍ରାଧାନ୍ୟ ଲୋପର ଉପକ୍ରମ ହେଲା । ସକଳ ରାଜସିଂହାସନ ଟଳମଳ ହେଲା ।

'ସଂହାର-ସମର ଉପସ୍ଥିତ ହେଲା । ଅର୍ଦ୍ଧପୃଥିବୀ ଗୋଟିଏ ଦେଶ ବିରୁଦ୍ଧରେ, ସାତ ଗୋଟି ଜାତି ଏକ ଜାତି ବିରୁଦ୍ଧରେ, ତିରିଶି (ତିରିଶ) କୋଟି ଲୋକ ଜଣେ ମାତ୍ର ଲୋକ ବିରୁଦ୍ଧରେ । ଏପରି ସଂଗ୍ରାମ କେହି କେବେ ଦେଖି ନାହିଁ, କେହି କେବେ ଶୁଣି ନାହିଁ । ସର୍ବପ୍ରଥମରେ, ସୀମାନ୍ତ ପ୍ରଦେଶରେ ତିଂଶ ସହସ୍ର ନଗ୍ନପଦ ଫରାସୀଙ୍କୁ ନେଇ ଏକ ଲକ୍ଷ ଅଷ୍ଟ୍ରିୟାନଙ୍କର ମସ୍ତକ ନିପାତ କରାହେଲା । ଇଟାଲୀ ଜୟ କରାଗଲା । ଭିଏନାର ଦୁର୍ଭେଦ୍ୟ ଦୁର୍ଗ ତୋପରେ ଭସ୍ମ ହେଲା, ଗରଗର୍ବିତ ପ୍ରସିୟାର ଦର୍ପ ଚୂର୍ଣ୍ଣ ହେଲା । ଦୂରବର୍ତ୍ତୀ ଭାରତରେ ଇଂରେଜୀ-ଶକ୍ତି ଖର୍ବୀକୃତ କରିବା ଉଦ୍ଦେଶ୍ୟରେ ମିସର ପର୍ଯ୍ୟନ୍ତ ଅଭିଯାନ ଚାଲିଲା । ଗାଢ଼ାନ୍ଧକାରମୟ ରାଜନୈତିକ ଗଗନରେ ଉପପ୍ଳବର ଘନଘଟାରେ ନେପୋଲିୟନ ରୂପ ଭୟଙ୍କର ବିଦ୍ୟୁତ ଝଲସି ଗଲା ।

'ବୋନାପାର୍ଟିଷ୍ଟଗଣ ସ୍ୱଭାବତଃ ଶାନ୍ତିପ୍ରିୟ, ଧର୍ମପରାୟଣ ଓ ସ୍ୱଦେଶହିତୈଷୀ ଥିଲେ । ଜଗତରେ ସେମାନଙ୍କ ତୁଲ୍ୟ ବୀର କେହି ନଥିଲେ, ପ୍ରଜାରଞ୍ଜକ ବି କେହି ନଥିଲେ । ସେମାନଙ୍କ ସମୟରେ ରାଜା ଓ ପ୍ରଜାପୁଞ୍ଜ ମଧ୍ୟରେ ପିତାପୁତ୍ର ସମ୍ବନ୍ଧ ସ୍ଥାପିତ ହୋଇଥିଲା । ସେମାନଙ୍କ ରାଜତ୍ୱକାଳରେ ଯେ ସମଗ୍ର ଇଉରୋପ ସମରାନଳରେ ପ୍ରଦୀପ୍ତ ହେଲା, ସେ ଦୋଷ ସେମାନଙ୍କର ନୁହେ —ସେ ଦୋଷ ଈର୍ଷାନଳ-ଦଗ୍ଧ ରାଜନ୍ୟମଣ୍ଡଳୀର । ବୋନାପାର୍ଟିଷ୍ଟମାନେ ଯଦି ଏକ ମୁହୂର୍ତ୍ତ ପାଇଁ ଅସ୍ତ୍ର ପରିତ୍ୟାଗ କରିଥାନ୍ତେ, ତାହା ହେଲେ ଚତୁର୍ଦ୍ଦିଗସ୍ଥ ଗୃଧ୍ରମାନଙ୍କ ଫ୍ରାନ୍ସର ଶବ ଉପରେ

ଅଧିଷ୍ଠାନ କରି ବିଜୟୋଲ୍ଲାସରେ ସ୍ୱ ସ୍ୱ ତୃପ୍ତି ସାଧନ କରିଥାନ୍ତି । ସେମାନେ ପ୍ରତ୍ୟେକ ଯୁଦ୍ଧ ପୂର୍ବେ କାୟମନୋ-ବାକ୍ୟରେ ସନ୍ଧି ପ୍ରୟାସ କରୁଥିଲେ । ଶତ୍ରୁକୁ ନମ୍ରୀକୃତ ନକରି ଜଳଗ୍ରହଣ କରିବାର ଅଭ୍ୟାସ ସେମାନଙ୍କର ଆଦୌ ନଥିଲା । ଏହା ଥିଲା ସେମାନଙ୍କର ମହତ୍ତ୍ୱ ଗୁଣ ବା ଘୋର ଅପରାଧ । ଜଗତରେ ଏପରି କୌଣସି କାର୍ଯ୍ୟ ନଥିଲା, ଯାହାକୁ ବୋନା-ପାର୍ଟିଷ୍ଟ ଦଳ ଅସାଧ୍ୟ ବା ଅସମ୍ଭବ ମନେ କରିବେ । ପଶ୍ଚାଦ୍‌ପଦ ହେବା ସେମାନଙ୍କ ଜାତକରେ ନଥିଲା । ସାରା ଫ୍ରାନ୍‌ସର କଲ୍ୟାଣ ପାଇଁ, ତାହାର ଗୌରବ ପାଇଁ, ତାହାର ପ୍ରଗତି ପାଇଁ, ସେମାନେ ଯେତେବେଳେ ଯେଉଁ କାର୍ଯ୍ୟ କରଣୀୟ ବୋଲି ମନେ କରୁଥିଲେ, ସେତେବେଳେ ସେହି କାର୍ଯ୍ୟ ସହସ୍ର ବାଧା ବିଘ୍ନ ସତ୍ତ୍ୱେ ଅବଲମ୍ବେ ସମ୍ପାଦନ କରୁଥିଲେ । ଜଗତର ଇତିବୃତ୍ତରେ ବୋନାପାର୍ଟିଷ୍ଟମାନଙ୍କର କୀର୍ତ୍ତିକଳାପ ଯେ ବହୁ ସହସ୍ର ବର୍ଷ ସ୍ୱର୍ଣ୍ଣାକ୍ଷରରେ ଲିଖିତ ରହିବ, ଏଥିରେ ବିନ୍ଦୁ ମାତ୍ର ସଂଶୟ ନାହିଁ ।’

ବୃଦ୍ଧଙ୍କ ମୁଖରୁ ଏ ସବୁ କଥା ଶୁଣି ଅତିଶୟ ଆନନ୍ଦରେ ମେରିୟୁସଙ୍କର ମୁଖମଣ୍ଡଳ ପ୍ରସନ୍ନ, ଚକ୍ଷୁ ଯୁଗଳ ଉତ୍ଫୁଲ୍ଲ ହୋଇଗଲା । ସେ କହିଲେ, “ମହାଶୟ, ବର୍ତ୍ତମାନ ମୁଁ ବୋନାପାର୍ଟିଷ୍ଟଦଳର ପତନର କାରଣ ଜାଣିବାକୁ ଇଚ୍ଛା କରେଁ । ଅନୁଗ୍ରହ କରି ମୋର କୌତୂହଳ ନିବୃତ୍ତି କରନ୍ତୁ ।”

ବୃଦ୍ଧ:—ବତ୍ସ, ଆଜି ବେଳ ଅଧିକ ହୋଇଅଛି, ବର୍ତ୍ତମାନ ଗୃହକୁ ପ୍ରତ୍ୟାବୃତ୍ତ ହୁଅ । ଅନ୍ୟ କୌଣସି ଦିନ ଏ ସମ୍ବନ୍ଧରେ କହିବି । ଦୁଃଖ କର ନାହିଁ ।

ଏହା କହି ବୃଦ୍ଧ ମେରିୟୁସଙ୍କର କରମର୍ଦ୍ଦନପୂର୍ବକ ସେଠାରୁ ଚାଲିଗଲେ । ମେରିୟୁସ୍ ଘରକୁ ଫେରିଲେ ।

ଆଗେ କୁହାଯାଇଛି, ମେରିୟୁସଙ୍କର ଗତିବିଧି ଲକ୍ଷ୍ୟ କରିବା ନିମନ୍ତେ ତାଙ୍କର ମାତାମହ ଜଣେ ଗୁପ୍ତଚର ନିଯୁକ୍ତ କରିଥିଲେ। ଗିର୍ଜାରେ ମେରିୟୁସଙ୍କୁ ବୃଦ୍ଧ ସହିତ ବହୁ ସମୟ କଥୋପକଥନ ହେବାର ଦେଖି ଗୁପ୍ତଚର ସେହି ବିଷୟ ମାତାମହଙ୍କୁ ଜଣାଇଲା। ସେ ଦୁହିଙ୍କର କଥାବାର୍ତ୍ତା ଶୁଣି ପାରି ନଥିଲା। ଅପରାହ୍ଣରେ ପୁନର୍ବାର ମେରିୟୁସଙ୍କର ଅନୁସରଣ କରିବା କାରଣ ତାଙ୍କ ମାତାମହ ଉକ୍ତ ଗୁପ୍ତଚରକୁ ଆଦେଶ କଲେ।

*

# ପିତୃ-ସମାଧି-ପୂଜା

ଅପରାହ୍ଣରେ ମେରିୟୁସ୍ ଭ୍ରମଣ ପାଇଁ ବହିର୍ଗତ ହେଲେ। ଗୁପ୍ତଚର ତାଙ୍କ ପଛେ ପଛେ ଯିବାକୁ ଲାଗିଲା। ସହର ଉପକଣ୍ଠରେ ରେଲୱେ ଷ୍ଟେସନ। ମେରିୟୁସ୍ ସେହି ସ୍ଥାନରେ ଯାଇ ଦୁଇ ଗୋଟି ପୁଷ୍ପଗୁଚ୍ଛ କ୍ରୟ କଲେ। ରୟାଲିଷ୍ଟ ମହାଶୟଙ୍କର ଗୁପ୍ତଚର ସେତେବେଳେ ଆସନ୍ନ କୌତୁକ-ପ୍ରଦର୍ଶନ ଆଶାରେ ପୁଲକିତ ହେଲା। ବାଷ୍ପୀୟ ଶକଟାରୋହଣରେ ଉଭୟେ ଅଳ୍ପ ସମୟ ମଧ୍ୟରେ କୌଣସି ଦୂରବର୍ତ୍ତୀ ପଲ୍ଲୀରେ ଯାଇ ଉପନୀତ ହେଲେ।

ସନ୍ଧ୍ୟା ସମାଗତ। ନୀରବ ନିସ୍ତବ୍ଧ ପଲ୍ଲୀର ସଂକୀର୍ଣ୍ଣ ପଥରେ ମେରିୟୁସ୍ ଆଗେ ଆଗେ, ଚର ପଛେ ପଛେ ଚାଲିଛନ୍ତି। ଚତୁର୍ଦ୍ଦିଗ ବୃକ୍ଷବଲ୍ଲରୀରେ ସମାଚ୍ଛନ୍ନ। ସନ୍ଧ୍ୟା-ସମାଗମ ସଙ୍ଗେ ପଲ୍ଲୀ ମଧ୍ୟରେ ଯେପରି ରଜନୀର ଆଗମନ ହୋଇଅଛି। ପଥର ଦୁଇ ପାର୍ଶ୍ୱରେ ଖଦ୍ୟୋତକୁଳ ବିଶ୍ୱନିୟନ୍ତାଙ୍କର ଅବୈତନିକ ମିଉନିସିପାଲିଟି ରୂପେ ବିଦ୍ୟମାନ। ସ୍ଥାନେ ସ୍ଥାନେ କ୍ଷୁଦ୍ର ବାଟିକା, ମନୋରମ ପୁଷ୍ପୋଦ୍ୟାନ।

ସମ୍ମୁଖରେ ନିବଡ଼ ଶ୍ମଶାନ। ମେରିୟୁସ୍ ଶ୍ମଶାନର ଦ୍ୱାରଦେଶରେ ଯାଇ କିଛି କ୍ଷଣ ଠିଆ ହେଲେ, ଧୀରେ ଧୀରେ ଦ୍ୱାର ଖୋଲି ସେଇ

ସ୍ୱୟଂ ସମାଧି କ୍ଷେତ୍ରରେ ପ୍ରବେଶ କଲେ । ଏହା ଦେଖି ଚର ଏକାବେଳକେ
ବିସ୍ମିତ, ହତବୁଦ୍ଧି ହୋଇ ପଡ଼ିଲା । କଣ ଦେଖିବାକୁ ଆସିଥିଲା, କଣ
ଦେଖୁଛି ! ଦେଖିବାକୁ ଆସିଥିଲା ପ୍ରଫୁଲ୍ଲ-ପଙ୍କଜ ତୁଲ୍ୟ କୁଳ ବାଳକର
ବ୍ରୀଡ଼ାବନତ ମୁଖରେ ସରଳ ମଧୁର ହାସ୍ୟ—ଦେଖୁଛି କିନ୍ତୁ ଶତ
ଶବସମାକୀର୍ଣ୍ଣ ସମାଧି କ୍ଷେତ୍ରରେ ବିକଟ ବିଷାଦମୟ କାଳିମା ! ବିସ୍ମୟ ଓ
ଭୟରେ ବିଶ୍ୱସ୍ତ ଚରର ମୁଖ ବିବର୍ଣ୍ଣ ହୋଇଗଲା, ନୟନଯୁଗଳ
ନିରାଶାବ୍ୟଞ୍ଜକ ବାଷ୍ପରେ ପୂର୍ଣ୍ଣ ହୋଇଗଲା । ସେତେବେଳେ ଚରର ବୋଧ
ହେଲା, ମେରିୟସ୍ ଯେପରି ନିଜର ବନ୍ଧୁ ଯନ୍ନର କୋର୍ଟଶିପ୍-ରନ୍ନଟି
ସମାଧିସ୍ଥ କରିବାକୁ ଆସିଛନ୍ତି । ଧନ୍ୟ ରୟୁଲଷ୍ଟ ! ମାନବ-ହୃଦୟର କଥା
ବୁଝିବାରେ ତୁମେ ବେଶ୍ ପଟୁ ! ସଦ୍ୟ ପିତୃଶୋକାକୁଳ ଯୁବକର ପିତୃ-
ସମାଧି-ଦର୍ଶନ-ଯାହାକୁ ତୁମେ ପାର୍ଟୀ-ନିର୍ବାଚନ ବ୍ୟାପାର ବୋଲି ସନ୍ଦେହ
କରୁଅଛ ! ଏଥିରୁ ବୁଝାଯାଏ, ପିତୃ ମୃତ୍ୟୁର ତିନି ଦିନ ମଧ୍ୟରେ କେହି
ଯଦି କୋର୍ଟଶିପ୍-ବ୍ୟସନରେ ଲିପ୍ତ ହୋଇ ପାରେ, ତାହା ହେଲେ ସେ
ତୁମେ ସିନା ! ତୁମମାନଙ୍କର ଏଭଳି ହୃଦୟହୀନତା ହିଁ ବୋଧହୁଏ ଫରାସୀ-
ବିପ୍ଳବର କାରଣ ହୋଇଥିଲା !

ଧୀର ପଦକ୍ଷେପରେ ମେରିୟସ୍ ପିତାଙ୍କ ସମାଧି ସ୍ଥାନରେ ଉପସ୍ଥିତ
ହେଲେ । ସେଠାରେ ଆଣ୍ଠୁ ପକାଇ ବସି ତାହାଙ୍କ ପାଦଦେଶରେ ପୁଷ୍ପୋ-
ପହାର ଅର୍ପଣକରି ଗଭୀର ଭକ୍ତି ସହକାରେ ପୁନଃ ପୁନଃ ନମସ୍କାର କରିବାକୁ
ଲାଗିଲେ । ପରେ କୃତାଞ୍ଜଳି ହୋଇ ଅଶ୍ରୁଭରା ଚକ୍ଷୁରେ ନିବେଦନ କଲେ,
—'ପିତୃଦେବ, ଅଧମ ସନ୍ତାନର ଏହି ସାମାନ୍ୟ ଉପହାର ଗ୍ରହଣ କରନ୍ତୁ ।
ଏ ଜଗତରେ ମୋର ଆଉ କେହି ନାହିଁ, ଏପରି ଆଉ କିଛି ନାହିଁ ଯେ
ମୋର ଅନୁତପ୍ତ ପ୍ରାଣରେ ଶାନ୍ତି ଦାନ କରି ପାରେ । ମୁଁ ଆପଣଙ୍କ
ଚରଣରେ ଅଶେଷ ଅପରାଧ କରିଅଛି; କିନ୍ତୁ ଯେତେବେଳେ କାନ୍ଦି କାନ୍ଦି
ଆପଣଙ୍କର ପଦ ପ୍ରାନ୍ତରେ ଉପନୀତ ହୁଏ, ସେତେବେଳେ ଯେପରି
ବୋଧ ହୁଏ, ଆପଣ ମୋର ସକଳ ଅପରାଧ କ୍ଷମା କରିଛନ୍ତି । ଏହା
ଆପଣଙ୍କ ଅପତ୍ୟ-ସ୍ନେହର ମହିମା ଭିନ୍ନ ଆଉ କିଛି ନୁହେ । ମୁଁ ସାମାନ୍ୟ

ଅପରାଧ କରି ନାହିଁ—ମୁଁ ଯେ ଆପଣଙ୍କ ମୃତ୍ୟୁର ପ୍ରାକ୍‌କାଳରେ ଆସି ଦର୍ଶନ କରି ନାହିଁ, ତାହା ମୋର ଗୁରୁତର ଅପରାଧ, ଜ୍ଞାନକୃତ ଅପରାଧ । ତାହା କଦାପି ମାର୍ଜନୀୟ ନୁହେ । ବୋଧ ହେଉଛି, ଆପଣ ମୋର ସେହି ନୃଶଂସ ପୈଶାଚିକ ଆଚରଣ ବି କ୍ଷମା କରିଛନ୍ତି । ଏ ଅଧମ ପ୍ରତି ଆପଣଙ୍କର କି ଏତେ ସ୍ନେହ ! ଯେଉଁ ଅନନ୍ତ ଜଳଧି ଏହି ବିଶ୍ୱବ୍ରହ୍ମାଣ୍ଡ ବ୍ୟାପି ରହିଅଛି, ତାହାର ବି ଇୟତ୍ତା କରାଯାଇ ପାରେ; କିନ୍ତୁ ମୁଁ ଭବଦୀୟ ସ୍ନେହ-ସିନ୍ଧୁର ତ ଇୟତ୍ତା କରିପାରୁ ନାହିଁ ! ଆହା, ଜୀବନରେ ମୁଁ ଏପରି ସ୍ନେହମୟ ପିତୃଦର୍ଶନ-ସୁଖରୁ ବଞ୍ଚିତ ହୋଇ ଅଛି । ପିତଃ, ମୁଁ ଧନ, ଜନ, ପାର୍ଥିବ ଉନ୍ନତ ପଦ କିଛି କାମନା କରେ ନାହିଁ । ଅଧମ ସନ୍ତାନକୁ ଏତିକି ମାତ୍ର ଆଶୀର୍ବାଦ କରନ୍ତୁ, ମୁଁ ଯେପରି ଆପଣଙ୍କର ଅଲୌକିକ ଅକୃତ୍ରିମ ସ୍ନେହ ମମତା ମନେ କରି ଚିର ଦିନ ଏପରି ଲୋତକଜଳରେ ଭାସି ପାରେଁ ।”

ସମାଧି କ୍ଷେତ୍ରର କାର୍ଯ୍ୟ ସମାଧା କରି ମେରିୟୁସ୍ ଗୋଟିଏ ପୁଷ୍ପୋଦ୍ୟାନରେ ପ୍ରବିଷ୍ଟ ହେଲେ । ଏହି ପୁଷ୍ପୋଦ୍ୟାନଟି ଭୂତପୂର୍ବ କର୍ଣ୍ଣେଲ ମହାଶୟଙ୍କର ଅନପତ୍ୟବାସର ଏକମାତ୍ର ଅବଲମ୍ବନ ଥିଲା । ତାଙ୍କ ମରଣର୍ ପରଦିନ ପଲ୍ଲୀର ବାଳଦସ୍ୟୁଗଣ ଉଦ୍ୟାନଟିକୁ ହତଶ୍ରୀ କରି ପକାଇ ଥିଲେ । ମେରିୟୁସ୍ ଧରାଶାୟିତ ବୃକ୍ଷଗୁଡ଼ିକ ଅତି ଯତ୍ନରେ ଉଠାଇବା ବେଳେ ସଜଳ ନେତ୍ରରେ କହିଲେ, “ବୃକ୍ଷ-ଗୁଳ୍ମ ସକଳ ! ପିତା ତୁମ୍ଭମାନଙ୍କୁ ଅପତ୍ୟସ୍ନେହରେ ପ୍ରତିପାଳିତ କରୁଥାନ୍ତି । ସେହି ସ୍ନେହ ଅଭାବରୁ ତୁମେମାନେ ବର୍ତ୍ତମାନ ଶ୍ରୀହୀନ ଓ ଧରାଶାୟୀ । ଆଶ୍ୱସ୍ତ ହୁଅ— ତୁମେମାନେ ପିତାଙ୍କୁ ହରାଇଅଛ ସତ, ତୁମମାନଙ୍କର ଅଗ୍ରଜ କିନ୍ତୁ ଜୀବିତ । ମୁଁ ବି ସେପରି ସ୍ନେହ ଓ ଯତ୍ନରେ ତୁମମାନଙ୍କୁ ପ୍ରତିପାଳନ କରିବି ।”

ମେରିୟୁସ୍ ପିତାଙ୍କର ସ୍ୱହସ୍ତରୋପିତ ବୃକ୍ଷାଦିର ରକ୍ଷଣର ସୁବ୍ୟବସ୍ଥା କରି ଭର୍ଣ୍ଣନ୍ ପଲ୍ଲୀ ପରିତ୍ୟାଗ କଲେ ।

*

# ପିତୃ ପ୍ରଶଂସା

ପରଦିନ ପ୍ରତ୍ୟୁଷରେ ଗୁପ୍ତଚର ଶୁଷ୍କ ମୁଖରେ ଯାଇ ବୃଦ୍ଧ ରଘୁନାଥଙ୍କ ସମ୍ମୁଖରେ ଉପସ୍ଥିତ ହେଲା ଏବଂ କଂପିତ କଣ୍ଠରେ ଜଣାଇଲା ଯେ, ମେରିୟୁସ୍ ଭର୍ଣ୍ଣନ୍ ପଞ୍ଚୀକ ଯାଇଥିଲେ, ପାର୍ଟୀ-ନିର୍ବାଚନ ପାଇଁ ନୁହେ, ପିତୃ ସମାଧିପୂଜା ପାଇଁ । ଏ ସମ୍ବାଦ ଶୁଣିବା ମାତ୍ରକେ ଶ୍ୱେତକାୟ ବୃଦ୍ଧ ଏକାବେଳକେ ରକ୍ତଜବାର ଆକୃତି ଧାରଣ କରି କହିଲେ—'କଣ ! ସେଇ ଗୁଣ୍ଡାର ପୂଜା ! ମୋ ଅନ୍ନରେ ପ୍ରତିପାଳିତ ହୋଇ ମୋ'ରି ଶତ୍ରୁ ଚରଣରେ ପୁଷ୍ପାଞ୍ଜଳିଦାନ ! ଏ ଅପମାନ ଅସହ୍ୟ । ନେମକହାରାମର ପୁତ୍ର ଠିକ୍ ନେମକହାରାମ ହୋଇଅଛି । ଏତେ ଉପଦେଶ, ଏତେ ଚେଷ୍ଟା, ଏତେ ଯତ୍ନ ବିଫଳ ହେଲା । ମୁଁ କଣ ତେବେ ଆଜି ଯାଏ ମୃଗ ଭ୍ରମରେ ବ୍ୟାଘ୍ରଶାବକ ପୋଷିଥିଲି । ଶୈଶବାବଧି ଠିକ୍ ମାର୍ଗରେ ରହି, ବର୍ତ୍ତମାନ ସହସା ତାହାର ବୁଦ୍ଧି ବିପର୍ଯ୍ୟୟ ଘଟିଲା କାହିଁକି ?"

ମେରିୟୁସ୍ ତତ୍‌କ୍ଷଣାତ୍ ତାଙ୍କ ସମ୍ମୁଖକୁ ଆହୂତ ହେଲେ । ମାତୃଷ୍ୱସା କେତେ ଗୋଟି କାର୍ଡ଼ ଓ ଖଣ୍ଡିଏ ଚିଠି ନେଇ ପିତାଙ୍କ ହାତରେ ଦେଲେ । ରଘୁନାଥ ମହାଶୟ ଚିଠିଖଣ୍ଡିକ ପଢ଼ି ଘୃଣାସହିତ କ୍ରୋଧବ୍ୟଞ୍ଜକ ସ୍ୱରରେ କହିଲେ—'ଏହା ସେଇ ଶ୍ୱେତର ସ୍ୱହସ୍ତଲିପି ।' ଖଣ୍ଡିଏ କାର୍ଡ଼ ଉପରେ ଲେଖାଥିଲା 'ଲି ବ୍ୟାରନ୍ ମେରିୟୁସ୍ ପଣ୍ଟମାର୍ସି ।' ତାହା ଦେଖି, ବୃଦ୍ଧ ଦୌହିତ୍ରଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ, 'ବ୍ୟାରନ୍ ମହାଶୟ, ଅନୁଗ୍ରହ କରି ମୋତେ ଏ ଛତ୍ରର ଅର୍ଥ ବୁଝାଇ ଦେବେ କି ?'

ମେରିୟୁସ୍—ଏହାର ଅର୍ଥ, ମୁଁ ମୋ ପିତାଙ୍କର ପୁତ୍ର ।

ମାତାମହ—ତୁମେ ପାଜି, ଶ୍ୱେତର ଔରସରେ ଜନ୍ମ ଲଭ କରି ପାଜି ହୋଇଅଛ । ଯେ ଶ୍ୱେତର ପୂଜା କରେ, ସେ ଶ୍ୱେତ ଭିନ୍ନ ଆଉ କଣ ହୋଇ ପାରେ ?

ମେରସ୍ପୁସ୍—ମୋ ପିତା ଶ୍ବେର ନଥିଲେ, ଦସ୍ୟୁ ନଥିଲେ— ଜଣେ ସୈନିକ ମାତ୍ର । ସେ କୋଡ଼ିଏ ବର୍ଷ କାଳ ଜନ୍ମଭୂମିର ସେବା କରି, ପରିଶେଷରେ ନଗୃହୀତ, ପରିତ୍ୟକ୍ତ ଭାବରେ ଇହଲୋକରୁ ଚାଲିଯାଇଛନ୍ତି । ଏକାଧିକ କାରଣରୁ ସେ ମୋର ପରମାରାଧ୍ୟ । ପ୍ରଥମତଃ ସେ ମୋର ଜନକ, ଦ୍ୱିତୀୟତଃ ସେ ସ୍ୱଦେଶହିତୈଷୀ ।

ମାତାମହ—ଉଃ କି ଅଧଃପତନ ! ମେରିସ୍ପୁସ୍, ତୁମକୁ ହିତ କଥା କହୁଅଛି । ତୁମର ପିତା ବୋଲି ଯଦି କୌଣସି ଶ୍ରଦ୍ଧା ଥାଏ, ସେ ଶ୍ରଦ୍ଧାର ପାତ୍ର ମୁଁ— ଅନ୍ୟ କେହି ନୁହେ । କାରଣ ମୁଁ ତୁମକୁ ଏତେରୁ ଏତେ କରିଛି; ସ୍ୱଚ୍ଛମନ ଶିକ୍ଷା ଦେଇଅଛି । ଯଦି ସ୍ୱଦେଶହିତୈଷୀ ବୋଲି ତୁମ ଅନ୍ତଃକରଣରେ ଭକ୍ତି ଥାଏ, ରାଜା ଅଷ୍ଟାଦଶ ଲୁଇ ସେହି ଭକ୍ତିର ପ୍ରକୃତ ପାତ୍ର । କାରଣ, ସେ ହିଁ ଦସ୍ୟୁଦଳ ନିରସ୍ତ କରି ଫ୍ରାନ୍ସ ତମାମ ଶାନ୍ତି ସଂସ୍ଥାପନ କରିଛନ୍ତି । ତୁମେ ପ୍ରକୃତ ଭକ୍ତିଭାଜନ ଲୋକଙ୍କୁ ପରିତ୍ୟାଗ କରି ଦସ୍ୟୁର ପୂଜା କରୁଅଛ । ମୂର୍ଖତା, କୃତଘ୍ନତା ଓ ଧୃଷ୍ଟତା ଏହା ଅପେକ୍ଷା ଆଉ ଅଧିକ ଦୂର ଯାଇପାରେ ?

ମେରସ୍ପୁସ୍—ମହାଶୟ, ଆପଣ ମତେ ପ୍ରତିପାଳନ କରିଛନ୍ତି ସତ୍ୟ— ସେଥିପାଇଁ ଆମେ ପିତା ପୁତ୍ର ଆପଣଙ୍କ ନିକଟରେ ଋଣୀ । କିନ୍ତୁ ଆପଣ ଯେଉଁ ଶିକ୍ଷା ଦାନ କରିଛନ୍ତି, ସେଥିପାଇଁ ମୁଁ ସମଧିକ କୃତଜ୍ଞତା ସ୍ୱୀକାର କରି ନପାରେଁ । ଯେଉଁ ଶିକ୍ଷା ପିତୃଭକ୍ତି ବିଷୟରେ ଅନ୍ଧ, ସେ ଶିକ୍ଷା ଶିକ୍ଷା ନୁହେ । ଆପଣ ମୋତେ କେବଳ ରାଜପୂଜା ଶିଖାଇ ଅଛନ୍ତି, କିନ୍ତୁ ଯାହାଙ୍କ ଲାଗି ବିଶ୍ୱର ଆଲୋକ ଦେଖି ପାରିଛି, କାହିଁ ତାଙ୍କର ପୂଜା ତ ଦିନେ ହେଲେ ଆପଣ ଶିଖାଇ ନାହାନ୍ତି । ବରଂ ସଦାବ୍ର ତାଙ୍କ ପ୍ରତି ଘୋର ବିଦ୍ୱେଷ ଜନ୍ମେ ଏପରି ଉପଦେଶ ଦେଇଛନ୍ତି । ସେଥିରେ ମୋର ଯେଉଁ ଚରିତ୍ରଙ୍କର କ୍ଷତି ହୋଇଅଛି, ସମଗ୍ର ଫ୍ରାନ୍ସର ରାଜତ୍ୱ ବି ତାହା ପୂରଣ କରି ନପାରେ । ଆପଣଙ୍କ ଶିକ୍ଷା ଦୋଷରେ ମୁଁ ଅହରହ ହୃଦୟରେ ଯେଉଁ ନିଦାରୁଣ ଯନ୍ତ୍ରଣା ଅନୁଭବ କରୁଅଛି, ତାହା

ମୋର ଅନ୍ତରାତ୍ମାହିଁ ଜାଣେ । ମୁଁ ଚିର ମୂର୍ଖ ହୋଇ ସୁଦ୍ଧା ଯଦି ମୋ ପିତାଙ୍କ ଜୀବଦ୍ଦଶାରେ ଦିନେ ହେଲେ ତାଙ୍କ ନିକଟକୁ ଯାଇଥାନ୍ତି, ତାଙ୍କୁ ପିତା ବୋଲି ସମ୍ବୋଧନ କରିଥାନ୍ତି, ତାହା ହେଲେ ମୋର ଅଶେଷ ମଙ୍ଗଳ ହୋଇଥାନ୍ତା । ଆପଣ ମୋତେ ଯେଉଁ ଶିକ୍ଷା ଦେଇଛନ୍ତି, ତାହା ଯଦି ଫେରାଇ ଦେବାର କୌଣସି ଉପାୟ ଥା'ନ୍ତା, ତାହା ହେଲେ ମୁଁ ତାହା ଏହି ମୁହୂର୍ତ୍ତରେ ଫେରାଇ ଦିଅନ୍ତି । ଆପଣଙ୍କ ପ୍ରସାଦରୁ ମୁଁ ଗ୍ରାଜୁଏଟ୍ ହୋଇଅଛି—ସେଇ ପ୍ରଶଂସାପତ୍ର ଆପଣଙ୍କୁ ଫେରସ୍ତ ଦେଉଛି । ପିତୃଭକ୍ତିହୀନ ବିଦ୍ୟାରେ ଯେଉଁ ଉପାଧି ଲାଭ କରାଯାଏ ସେ ଉପାଧି ନୁହେ—ମନୁଷ୍ୟର କଳଙ୍କ ମାତ୍ର । ପକ୍ଷାନ୍ତରେ ଯଦି ପିତୃପରାୟଣତା ପାଇଁ ଜଗତରେ କୌଣସି ପୁରସ୍କାର ଥାଏ, ସେଥିପାଇଁ ମନୁଷ୍ୟର ପ୍ରାଣପଣେ ଚେଷ୍ଟା କରିବା ଉଚିତ । ଶିକ୍ଷା ପାଇଁ ଆଉ ମୋତେ ପରଦ୍ୱାରକୁ ଯିବାକୁ ହେବ ନାହିଁ । ମୋ ପିତା ଏକା ମୋତେ ଯଥେଷ୍ଟ ଶିକ୍ଷା ଦେଇଅଛନ୍ତି—ଆଉ ଯାହା ବାକି ଅଛି, ତାହା ପାଇବି ତାଙ୍କର ନିକଟରେ । ମୁମୂର୍ଷୁ ପିତାଙ୍କର ପ୍ରଶାନ୍ତ ଓ ଗମ୍ଭୀର ମୁଖମଣ୍ଡଳରେ ମୁଁ ଜ୍ଞାନର ପ୍ରଥମ ଆଲୋକ ଦେଖିଅଛି । ତତ୍ପୂର୍ବେ ଯେତେବେଳେ ମୋର କରୁଣ ଆହ୍ୱାନରେ ତାଙ୍କର ମୃତ୍ୟୁ-କାଳିମାମୟ ଅନ୍ଧକାରଜଡ଼ିତ ମୁଖମଣ୍ଡଳ କି ଅକସ୍ମାତ୍ ପ୍ରସନ୍ନୋଜ୍ଜ୍ୱଳ ଭାବ ଧାରଣ କଲା, ସେତେବେଳେ ପିତା ପୁତ୍ର ମଧ୍ୟରେ ଗୋଟିଏ ଅନିର୍ବଚନୀୟ ପବିତ୍ର ସମ୍ବନ୍ଧସୂତ୍ର ଉପଲବ୍ଧି କରି ସନ୍ଦର୍ଶନ କଲି ଜ୍ଞାନର ଦ୍ୱିତୀୟ ଆଲୋକ । ତାଙ୍କର ସ୍ୱରଚିତ କଲେବରରେ ନ୍ୟୂନାଧିକ କେତଏ ଗୋଟି ସୁଗଭୀର ଅସ୍ତ୍ର ଲେଖାରେ ମୁଁ ନିମେଷ ମଧ୍ୟରେ ଅର୍ଦ୍ଧ ପୃଥିବୀର ରାଜନୈତିକ ଇତିହାସ ପାଠ କରିଅଛି । ଭୂତପୂର୍ବ କର୍ଣ୍ଣେଲ ବ୍ୟାରନ ପଣ୍ଟମର୍ସି ମୋ ନିକଟରେ ଦ୍ୱିବିଧ ଭାବରେ ପୂଜା ପାଇବାର ଯୋଗ୍ୟ—ପିତା, ଗୁରୁ ଓ ସ୍ୱଜାତି-ସେବକ । ଯେ ଫ୍ରାନ୍ସର ଶତ୍ରୁ ରୁସ୍, ପ୍ରସିୟା ପ୍ରଭୃତି ଜାତି ସାହାଯ୍ୟରେ ଫରାସୀରକ୍ତପାତ କରିଅଛି, ଯେ ସର୍ବଜନପ୍ରିୟ ସମ୍ରାଟ୍ ନେପୋଲିୟନଙ୍କୁ ନିର୍ବାସିତ

କରିଅଛି, ଯେ ଫ୍ରାନ୍ସର ଗର୍ବ ଓ ଗୌରବ ବୋନାପାର୍ଟିଷ୍ଟମାନଙ୍କୁ ନାନା ପ୍ରକାରେ ନିଗୃହୀତ କରିଅଛି—ଏବଂ କହିବାକୁ ମୋର ଲଜ୍ଜା ହୁଏ—ଯେ ଦୁର୍ବୃତ୍ତ କୋସାକମାନଙ୍କଦ୍ୱାରା ଫରାସୀ କୁଳଲଳନାମାନଙ୍କର ଧର୍ମଲୋପ କରାଇବାକୁ କୁଣ୍ଠିତ ହୋଇ ନାହିଁ; ସେଇ ରାଜଶତ୍ରୁକର ଅଷ୍ଟାଦଶ ଲୁଇକୁ ମୁଁ ସ୍ୱଦେଶହିତୈଷୀ କହି ନପାରେଁ। ବରଂ ଯଦି ବୋନାପାର୍ଟିଷ୍ଟମାନଙ୍କ ପରି ବୀର ହୋଇଥାନ୍ତି, ତାହା ହେଲେ ଏଇ ମୁହୂର୍ତ୍ତରେ ସେଇ ଫରାସୀ-ଜନଙ୍କ ହୃଦୟସ୍ଥାନ ଲୁଇକ ଫ୍ରାନ୍ସ-ସିଂହାସନରୁ ଦୂର କରି ଦିଅନ୍ତି।

ଏହି କଥା ଶୁଣି ରୟଲିଷ୍ଟ ମହାଶୟ କ୍ରୋଧରେ କେତେ ଦୂର ଯେ ଅଧୀର ହୋଇ ଉଠିଲେ, ତାହା ସହଜରେ ଅନୁମାନ କରାଯାଇ ପାରେ। ସେ ମେରିୟସ୍‌ଙ୍କ ଉପରେ ତିନି ଥର ଅଗ୍ନିଦୃଷ୍ଟି ବର୍ଷଣ କରି, ସହସା ଆସନରୁ ଉଠି ଟେବ୍‌ଲ କର୍ଣ୍ଣସ୍ ଉପରୁ ଏକ ଗୁଚ୍ଛ ବେଣ୍ଟ ଆକର୍ଷଣ କଲେ। ପୁଣି କଣ ମନେ ହେଲା କେଜାଣି—ଟେବ୍‌ଲ ଉପରେ ବେଣ୍ଟ ଗୁଚ୍ଛଟି ରଖି ଗୃହକୋଣ ଆଡ଼କୁ ଅଗ୍ରସର ହେଲେ। ସେଠାରେ ଚିତ୍ରାର୍ପିତ ରାଜା ଅଷ୍ଟାଦଶ ଲୁଇଙ୍କୁ ପୁନଃ ପୁନଃ ନମସ୍କାର କରିବାକୁ ଲାଗିଲେ। ପରେ ପିତୃଭକ୍ତ ଯୁବକଙ୍କ ପ୍ରତି ତୀବ୍ର କଟାକ୍ଷପାତ କରି କହିଲେ—'ଦୂର ହୁଅ; ରାଜଦ୍ରୋହୀ, ରକ୍ତପାୟୀ, ଦୂର ହୁଅ। ନଚେତ୍, ଏଇକ୍ଷଣି ପିସ୍ତଲରେ—'

ମେରିୟସ୍ ସେହି ମୁହୂର୍ତ୍ତରେ ମାତାମହଙ୍କର ଗୃହ ପରିତ୍ୟାଗ କଲେ। କିୟତ୍‌କ୍ଷଣ ପରେ ରୟଲିଷ୍ଟ ମହାଶୟ ତାଙ୍କ କନ୍ୟାଙ୍କୁ ଡାକି କହିଲେ—'ଏ କୃତଘ୍ନ ନରାଧମ ଆଉ ଯେପରି ଘରେ ପାଦ ନ ପକାଏ। ପ୍ରତିମାସ ତା' ପାଖକୁ ଏକଶତ 'ଗୁନି' ପଠାଇବ ପଛକେ, ଏ ଘରେ କିନ୍ତୁ ଆଉ ସ୍ଥାନ ଦେବ ନାହିଁ।'

ତନୟା କ୍ରୋଧକମ୍ପିତ-କଳେବର ପିତାଙ୍କର କଥା ସ୍ପଷ୍ଟ କରି ବୁଝି ପାରିଲେ ନାହିଁ; ଅଥଚ ଅବସ୍ଥା ଦୃଷ୍ଟିରେ 'ଯେ ଆଜ୍ଞା' କହି ସେଠାରୁ ଚାଲିଗଲେ।

*

# ଗୃହତ୍ୟାଗ

ମେରସୁସ୍ ଖଣ୍ଡିଏ ଗାଡ଼ୀ ଭଡ଼ା କରି ଉକ୍ତ ଗିର୍ଜାରେ ଯାଇ ପହଞ୍ଚିଲେ । ସେଠାରେ ସ୍ତମ୍ଭଟିକୁ ସ୍ପର୍ଶ ଓ ପ୍ରଣାମ କରିବା ପରେ ପୁଣି ଗାଡ଼ୀରେ ବସିଲେ । କିଛି କ୍ଷଣ ପରେ ତାଙ୍କ ନିର୍ଦ୍ଦେଶାନୁଯାୟୀ କୋଚମ୍ୟାନ୍ ଶକଟଟି ତାଙ୍କ ପିତୃବନ୍ଧୁଙ୍କ ଗୃହ ନିକଟରେ ନେଇ ପହଞ୍ଚାଇ ଦେଲା । ମେରସୁସ୍ ଗାଡ଼ୀବାଲାକୁ ବିଦାୟ କରି ଦେଇ ଗୃହ ମଧ୍ୟରେ ପ୍ରବେଶ କଲେ ।

ଗୃହସ୍ୱାମୀ ସେତେବେଳେ ସମ୍ବାଦପତ୍ର ପାଠ କରୁଥିଲେ । ଦେଖିବାକ୍ଷଣି ସେ ମେରସୁସ୍ଙ୍କର କରମର୍ଦ୍ଦନ କରି ଉପଯୁକ୍ତ ଆସନରେ ବସାଇଲେ । ମେରସୁସ୍ କହିଲେ, 'ଆପଣଙ୍କ ସମ୍ବାଦପତ୍ର ପାଠରେ ବ୍ୟାଘାତ ଦେଉଛି କ୍ଷମା କରିବେ । ମୋ'ର ସେଦିନର ପ୍ରଶ୍ନଟି ବୋଧହୁଏ ମନେଥିବ । ଦୟାକରି ସଂଶୟ ଦୂର କରିବେ ? ପଚାରିଥିଲି, ବୋନାପାର୍ଟିଷ୍ଟ-ମାନେ ସର୍ବଥା ଯୋଗ୍ୟପାତ୍ର ହେଲେ ହେଁ ସେମାନଙ୍କର ପତନ ହେଲା କାହିଁକି ?

ବୃଦ୍ଧ:--ବନ୍ଧୁ, ଉନ୍ନତିର ପତନ ଅଛି—ପତନର ବି ଅଭ୍ୟୁତ୍ଥାନ ହୋଇଥାଏ । ବୋନାପାର୍ଟିଷ୍ଟଗଣଙ୍କର ପତନ ହୋଇନାହିଁ । ସୂର୍ଯ୍ୟ ଯେପରି ସାରାଦିନ ଆଲୋକ ଓ ଉତ୍ତାପ ଦାନ କରି ସାୟାହ୍ନରେ ଅସ୍ତାଚଳକୁ ଗମନ କରିଥାଏ, ସାନୁଚର ନେପୋଲିୟନଙ୍କର ବି ତାହା ଘଟିଅଛି । ଏ ଜଗତରେ ଏପରି କି ବସ୍ତୁ ଅଛି, ଯାହାର ଉଦୟ ଅଛି, ଅସ୍ତ ନାହିଁ ? ଆବିର୍ଭାବ ଓ ତିରୋଭାବ ବରାବର ରହିଅଛି । ଦିବସ ପରେ ରଜନୀର ପ୍ରୟୋଜନ । ପରିଶ୍ରମ ପରେ ବିଶ୍ରାମ ଆବଶ୍ୟକ । ଫରାସୀଜାତି ନେପୋଲିୟନରୂପ ଦିବା-ଭାଗରେ ସ୍ୱ ସ୍ୱ କର୍ତ୍ତବ୍ୟ ସମାଧା କରି ବର୍ତ୍ତମାନ ବୋର୍ବନରୂପ ରଜନୀରେ ନିଦ୍ରା ଯାଇଛନ୍ତି । ପୁଣି ଦିନେ ଏହି ତାମସୀ ନିଶାର ଅବସାନ ହେବଇ ହେବ । ଫରାସୀ ଜାତି ପୁଣି ଜାଗି ଉଠିବ । ଅନନ୍ତକାଳରୁ ଜଗତରେ ଏହି ନୀତି ଚଳି ଆସୁଛି । ଉତ୍ତେଜନା

ପରେ ଅବସାଦ, ଅବସାଦ ପରେ ପୁନରୁଦ୍‌ବୋଧନ, ଏହି ସନାତନ ମନ୍ତ୍ର ଅନ୍ୟଥା ହେବ କପରି ?

ଯେଉଁ ସମୟରେ ଫ୍ରାନ୍‌ସରେ ନିଦାରୁଣ ମତବୈଷମ୍ୟ ଫଳରେ ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣ ଯାଉଥିଲା, ନରରକ୍ତରେ ଫ୍ରାନ୍‌ସ ବୁଡ଼ି ରହିଥିଲା, ସେତେବେଳେ ସେଇ ଅଜ୍ଞାତ କୁଳଶୀଳ ଯୁବକ ନେପୋଲିୟନ ଫ୍ରାନ୍‌ସକୁ ରକ୍ଷା କରିଥିଲେ । ସେ ସ୍ୱତଃପ୍ରବୃତ୍ତ ହୋଇ କହିଥିଲେ, 'ଫ୍ରାନ୍‌ସ ଅଭିଜାତର ନୁହେ, ମଧ୍ୟବିତ୍ତର ନୁହେ, ଇତରର ବି ନୁହେ—ଫ୍ରାନ୍‌ସ ସମସ୍ତଙ୍କର, ସର୍ବସାଧାରଣର ।' ପାରିସର ମାନବ-ରୁଧିର-ପିଚ୍ଛିଳ ରାଜପଥରେ ଠିଆ ହୋଇ ସେ ମୁକ୍ତ କଣ୍ଠରେ ଏହି ସାମ୍ୟ ମନ୍ତ୍ର ପ୍ରଚାର କରିଥିଲେ । ତାଙ୍କୁ ମୁଁ ପ୍ରାକ୍‌ବର୍ଣ୍ଣିତ ପୁରୁଷ ଜ୍ଞାନରେ ଭକ୍ତି ସମ୍ମାନ କରେଁ । ଯୁଦ୍ଧ ବିକ୍ଷେତ୍ରରେ ଜୟ ପରାଜୟଦ୍ୱାରା ତାଙ୍କର ଉତ୍ଥାନ ପତନ ନିର୍ଣ୍ଣୟ କରିବା ଦୁଃସାଧ୍ୟ । ଦେଶର, ଜାତିର ଉଦ୍ଧାର ପାଇଁ ଅବଶ୍ୟ ଯଥାସମ୍ଭବ ପାଶବଶକ୍ତି ଦରକାର ହେଲା । ଯେଉଁମାନେ ସ୍ୱତଃପ୍ରବୃତ୍ତ ହୋଇ ନେପୋଲିୟନଙ୍କୁ ସେହି ଶକ୍ତି ଦାନ କଲେ, ସେମାନେ ବୋନାପାର୍ଟିଷ୍ଟ ନାମରେ ବିଖ୍ୟାତ । ନେପୋଲିୟନ ଓ ବୋନାପାର୍ଟିଷ୍ଟଗଣ ସ୍ୱ ସ୍ୱ କର୍ତ୍ତବ୍ୟ କାର୍ଯ୍ୟ ସୁସମ୍ପନ୍ନ କରିଅଛନ୍ତି । ବର୍ତ୍ତମାନ ଯଦ୍ୟପି ସେମାନେ କେହି ସେଣ୍ଟହେଲେନାର ପ୍ରଖର ରୌଦ୍ରରେ, କେହି ପାରିସର କାରାଭବନରେ, କେହି ବା ସମୁଦ୍ରନର ନିର୍ଜନ ଆବାସରେ ଭୌତିକ ପିଣ୍ଡର ଅବସାନ କରୁଛନ୍ତି, ତଥାପି ତାହା ନିନ୍ଦା ବା ଅବଜ୍ଞାର ବିଷୟ ନୁହେ । ଈଶ୍ୱର ଯେମାନଙ୍କୁ ଯେଉଁ ଅଭିପ୍ରାୟରେ ଧରାଧାମକୁ ପ୍ରେରଣ କରିଥିଲେ, ତାହା ସିଦ୍ଧ ହୋଇଅଛି— ଜଗତରେ ସାମ୍ୟମନ୍ତ୍ରର ପ୍ରଚାର ହୋଇଅଛି । ସାକୁଚର ନେପୋଲିୟନ କୋଡ଼ିଏ ବର୍ଷ କାଳ ଯେଉଁ ଭୟଙ୍କର ସମରରେ ବ୍ୟାପୃତ ଥିଲେ, ତାହା ଦେଶ ବିଶେଷ ସହିତ ଦେଶ ବିଶେଷର ନୁହେ । ସେ ସମର ଜାତି ସହିତ ଜାତିର କିମ୍ବା ବ୍ୟକ୍ତି ସହିତ

ବ୍ୟକ୍ତିର ବି ନୁହେ । ସେହି ଦୁଇବାର ସମର ଥିଲା ଆଭିଜାତ୍ୟାଦିଙ୍କ ସହିତ ସାଧାରଣଙ୍କର, ପାର୍ଥକ୍ୟ ସହିତ ସାମ୍ୟର, ଅସତ୍ୟ ସହିତ ସତ୍ୟର ଏବଂ ଅଧର୍ମ ସହିତ ଧର୍ମର । ତଥାପି ବୋନାପାର୍ଟିଷ୍ଟ ଦଳର ୱାଟର୍ଲୁ ଯୁଦ୍ଧରେ ପରାଜୟ ହୋଇଥିଲା । ଜଗତରେ ପାଶବ ବଳ ଉପରେ ନୈତିକ ବଳର ସର୍ବଦା ଜୟଲାଭ ନହିବାର କଥା । ତେବେ ଘଟନା-ବୈଚିତ୍ର୍ୟରେ କଦାଚିତ୍ ତାହାର ବ୍ୟତିକ୍ରମ ଘଟିପାରେ ।

'ପୁରୋହିତ-ପ୍ରଧାନ ଜଗତରେ ସତ୍ୟ ଓ ଧର୍ମର ପ୍ରଚାର କରିବାକୁ ଆସି ଯିଶୁଖ୍ରୀଷ୍ଟଙ୍କର କି ଦଶା ଘଟିଥିଲା ? ୱାଟର୍ଲୁ ଯୁଦ୍ଧରେ ନେପୋଲିୟନଙ୍କର ନିଗ୍ରହ ବି ସେ ଭଳି ମନେ କରିବାକୁ ହେବ । ମଦଗର୍ବିତ ଯିହୁଦୀ ପୁରୋହିତ ସମ୍ପ୍ରଦାୟ-କୃତ ଲାଞ୍ଛନାରେ ଖ୍ରୀଷ୍ଟଚରିତ୍ରର ଯେପରି ବିକାଶ ହୋଇଥିଲା, ଇଉରୋପର ସମ୍ମିଳିତ ଶକ୍ତିମାନଙ୍କ ହାତରେ ନେପୋଲିୟନଙ୍କର ଅବମାନନା ବି ତାଙ୍କ ଚରିତ୍ରକୁ ସେପରି ସମୁଜ୍ଜ୍ୱଳ ରଙ୍ଗରେ ଫୁଟାଇଅଛି । ସତ୍ୟ ଓ ଧର୍ମ ପଥରେ ଅଗଣିତ କଣ୍ଟକ—ଏହା ହେଉଛି ଜଗତର ନିୟମ । ବିନା ନିଗ୍ରହରେ, ବିନା ବାଧାବିଘ୍ନରେ କେହି କେବେ ମାନବ-ସମାଜରେ ନ୍ୟାୟ ଓ ଧର୍ମର ପ୍ରଚାର କରିପାରିନାହିଁ ।

''ଧର୍ମ ଜଗତରେ ଖ୍ରୀଷ୍ଟଙ୍କର ଏବଂ ରାଜନୀତିକ ଜଗତରେ ନେପୋଲିୟନଙ୍କର ଅବତାରଣା ପ୍ରାୟ ଏକ ପଦାର୍ଥ । ଉଭୟଙ୍କ ମଧ୍ୟରେ ପ୍ରଭେଦ ଏତିକି—ଖ୍ରୀଷ୍ଟ ଈଶ୍ୱରଙ୍କ ନିକଟରେ ମାନବର ସାମ୍ୟ ସ୍ଥାପନ କରିବାକୁ ଆସିଥିଲେ, ଆଉ ନେପୋଲିୟନ ଅବତୀର୍ଣ୍ଣ ହୋଇଥିଲେ ରାଜା ବା ଶାସନ-ଯନ୍ତ୍ର ଚକ୍ଷୁରେ ପ୍ରଜାର ସାମ୍ୟ ସଂସ୍ଥାପନ କରିବାକୁ । ଖ୍ରୀଷ୍ଟ କହି ଯାଇଛନ୍ତି, ପରମ ପିତା ପରମେଶ୍ୱରଙ୍କ ନିକଟରେ ସକଳ ମନୁଷ୍ୟ ସମାନ । ନେପୋଲିୟନ ପ୍ରଚାର କରିଛନ୍ତି, ବିଶୁଦ୍ଧ ଶାସନ-ଯନ୍ତ୍ର ଆଗରେ ସକଳ ପ୍ରଜା ସମାନ । ଜଗତରେ ରାଜାମାନେ ସେତେବେଳେ ସ୍ୱ ସ୍ୱ ପଦ ଈଶ୍ୱର

ଦତ୍ତ ମନେ କର, ପ୍ରଜାମାନଙ୍କର ଦୁଃଖ ଦାରିଦ୍ର୍ୟ ପ୍ରତି ଉଦାସୀନ ହୋଇ, ପ୍ରକୃତି-ପୁଞ୍ଜର କରୁଣ ରୋଦନ ପ୍ରତି ବଧିର ହୋଇ, ବିଳାସଭବନରେ ସୁଖନିଦ୍ରା କରୁଥିଲେ, ସେହି ସମୟରେ ଯେଉଁ ବ୍ୟକ୍ତି ଆସି କମାଣରେ ବଜ୍ରନିନାଦରେ ଜଗତ କମ୍ପିତ କରି କହିଯାଇଛନ୍ତି—'ରାଜପଦ ଈଶ୍ୱର-ପ୍ରଦତ୍ତ ନୁହେ । ପ୍ରଜାଙ୍କ ସଂରକ୍ଷଣ ନିମନ୍ତେ ଏଇ ପଦର ସୃଷ୍ଟି କରାଯାଇଅଛି । ତୁମେ ଯେତେବେଳେ ସମଗ୍ର ପ୍ରଜାଙ୍କ ରଣ କରି ରାଜା ହୋଇଅଛ; ଯଥାଶୀଘ୍ର ପ୍ରତ୍ୟେକ ପ୍ରଜାର ଅଭାବ ମୋଚନ କରି ସେଇ ଋଣ ପରିଶୋଧ କର, ନଚେତ୍ ତୁମକୁ ଦୂର ହେବାକୁ ପଡ଼ିବ,'—ସେହି ବ୍ୟକ୍ତିଙ୍କୁ ବିଧିପ୍ରେରିତ ମହାପୁରୁଷ ନକହି ରହି ହେବ ନାହିଁ ।"

ବୃଦ୍ଧ ଏପରି କହୁଁ କହୁଁ ଆହାର-ସମୟ ଉପସ୍ଥିତ ହେଲା । ସେ ମେରିଯୁସ୍‌ଙ୍କୁ ଆହାର ପାଇଁ ଅନୁରୋଧ କଲେ । ମେରିୟୁସ୍ କହିଲେ, "ଆପଣଙ୍କ ଘରେ ଆହାର କରିବାକୁ ମୋର କିଛି ଆପତ୍ତି ନାହିଁ । କିନ୍ତୁ ମୋର କିଛି ପ୍ରୟୋଜନ ଅଛି । ଏଣୁ ମୋତେ ଏଇକ୍ଷଣି ଚାଲିଯିବାକୁ ହେବ । କ୍ଷମା କରିବେ ।"

ଏହା କହି ମେରିୟୁସ୍ ବୃଦ୍ଧଙ୍କୁ ପ୍ରଣାମ କରି ପ୍ରସ୍ଥାନ କଲେ । ତେବେ କେଉଁ ଦିଗରେ ଅଗ୍ରସର ହେବେ କିଛି ସ୍ଥିର କରି ପାରିଲେ ନାହିଁ । ଭାବିଲେ, ଭର୍ଣ୍ଣନ ଯିବେ—ଏହା ବି ସଙ୍ଗତ ବୋଧ ହେଲା ନାହିଁ । କାରଣ ସେହି ବିଜନ ପଲ୍ଲୀରେ ଦେଖିବାର, ଶୁଣିବାର ବା ଶିଖିବାର କିଛି ନାହିଁ । ବିଶେଷତଃ ଯେଉଁ ଗୃହରେ ତାଙ୍କର ପିତା ବାସ କରୁଥିଲେ, ତାହା ଉତ୍ତମର୍ଣ୍ଣଗଣ ଶୀଘ୍ର ଆତ୍ମସାତ୍ କରିବାର ଆଶଙ୍କା ଥିଲା । ପାରିସରେହିଁ ରହିବା କର୍ତ୍ତବ୍ୟ; ତେବେ କେଉଁ ସ୍ଥାନରେ ଅବସ୍ଥାନ କରିବେ । ତାହା ଭାବି ଭାବି କିଛି ଦୂର ଅଗ୍ରସର ହେଲେ । ଭିନ୍ନ ଭିନ୍ନ ଦିଗରେ ଭିନ୍ନ ଭିନ୍ନ ରାସ୍ତା ଯାଇଛି—ପିତୃହୀନ ନିଃସ୍ୱ ଯୁବକ କେଉଁ ଦିଗରେ ଯିବେ ?

ଚିନ୍ତାର ଅବକାଶ ନାହିଁ, ଚରଣର ବି ଅବକାଶ ନାହିଁ । ଅଜ୍ଞାତସାରରେ ପାଞ୍ଚ ମାଇଲ ପଥ ଅତିକ୍ରାନ୍ତ ହୋଇଗଲା । ଦିବା ଅବସାନ ପ୍ରାୟ ।

ଦିନତମାମ ମେରିୟୁସ୍‌ଙ୍କର ଆହାର ହୋଇ ନାହିଁ । ତାଙ୍କ ପାଖରେ ଥିଲା ତେରଶିଟି ଫ୍ରାଙ୍କ୍ ମାତ୍ର (ଏକ ଫ୍ରାଙ୍କର ମୂଲ୍ୟ ପ୍ରାୟ ଆଠଅଣା) । ସେ ପାର୍ଶ୍ୱବର୍ତ୍ତୀ ଦୋକାନରୁ ଖଣ୍ଡିଏ ରୁଟି କିଣି ପକେଟରେ ପକାଇଲେ ଏବଂ କେହି ଯେପରି ଦେଖି ନପାରେ ସେହି ଭାବରେ ରୁଟିଟି ଖଣ୍ଡ ଖଣ୍ଡ କରି ଖାଇବାକୁ ଲାଗିଲେ ।

ଏହି ସମୟରେ ସୂର୍ଯ୍ୟଦେବ ଦୈବସିକ କାର୍ଯ୍ୟ ସମାଧା କରି, ବୋନାପାର୍ଟିଷ୍ଟଗଣଙ୍କ ଭଳି, ଅନ୍ଧକାରରେ ନିମଜ୍ଜିତ ହେବାକୁ ଚାଲିଲେ । ସେହି ସମୟର ଅଲୌକିକ ପ୍ରାକୃତିକ ଶୋଭା ଦେଖି ଦେଖି ମେରିୟୁସ୍ ଆଉ ଏକ ମାଇଲ ପଥ ଅଗ୍ରସର ହେଲେ । ବର୍ତ୍ତମାନ ବସା ଦରକାର । ଦାରୁଣ ଶୀତ—ରାତି କାଳରେ ଅନାବୃତ ଜାଗାରେ ରହିବା ଏକାବେଳକେ ଅସମ୍ଭବ । ତେଣୁ ପାର୍ଶ୍ୱ ପ୍ରତି ଘନ ଘନ ଦୃଷ୍ଟିପାତ କରିବାକୁ ଲାଗିଲେ, ଦେଖିଲେ କେଉଁଠି କୌଣସି ଘର ଖାଲି ନାହିଁ—ସମସ୍ତ ପରିପୂର୍ଣ୍ଣ । ଗୋଟିଏ ଗୃହରେ କେତେକ ଜଣ ଯୁବକଙ୍କୁ ବସି ଥିବାର ଦେଖି ମେରିୟୁସ୍ ସେମାନଙ୍କ ଆଗରେ ଯାଇ ଠିଆ ହେଲେ । ଯୁବକମାନେ ପଚାରିଲେ, "ଆପଣ କେଉଁଠାରୁ ଆସିଛନ୍ତି । କଣ ଦରକାର ଏଠି ?"

ମେରିୟୁସ୍:— ଭର୍ଣନ ପଲ୍ଲୀରୁ ଆସିଛି । ମୁଁ ଏ ମହଲରେ ସମ୍ପୂର୍ଣ୍ଣ ଅପରିଚିତ । ରାତିରେ ରହିବା ପାଇଁ ଜାଗାଟିଏ ଖୋଜୁଛି । ପାଇ ପାରିବି ତ ?

ଯୁବକଦଳ:—ଆପଣ କେଉଁ ସମ୍ପ୍ରଦାୟଭୁକ୍ତ ?

ମେରିୟୁସ୍:—ବୋନାପାର୍ଟିଷ୍ଟ ।

ଯୁବକଦଳ:—ତାହା ହେଲେ ଆପଣ ଏହି ଗୃହରେ ଅବସ୍ଥାନ କରି ପାରନ୍ତି । ଆମେମାନେ ଏଇକ୍ଷଣି ନିଜ ନିଜ ଘରକୁ ଫେରୁଛୁଁ, —ରାତିରେ କେବେ ଏଠାରେ ରହୁନାହୁଁ । ଦିବାଭାଗରେ ଏଠାରେ ଆସି ପଢ଼ା ଶୁଣା କରୁଆଉଁ । ଆପଣ ସ୍ୱଚ୍ଛନ୍ଦରେ ଏ ଘରେ ନିଦ୍ରା ଯା'ନ୍ତୁ, ଆମେମାନେ ପୁଣି ସକାଳେ ଆସିବୁଁ ।

ଏହା କହି ସେମାନେ ମେଜିନିଙ୍କ ହାତରେ ଘରର ଚାବି ଓ ଏକ ଗୁଚ୍ଛ ଚାବି ଦେଲେ । ମେଜିନି ଆଶ୍ଚର୍ଯ୍ୟ, ଆଶାନ୍ୱିତ !

ଯୁବକଗଣ ଚାଲିଯିବା ପରେ, ସେ ଗୃହ ମଧ୍ୟରେ ପ୍ରବେଶ କଲେ । ଦେଖିଲେ, ଗୃହଟି ଯେପରି ଗୋଟିଏ ଗିରି-ଗହ୍ୱର । ତହିଁ ମଧ୍ୟରେ କେତେ ଗୋଟି ବେଞ୍ଚ ଓ ଖଣ୍ଡିଏ ବଡ଼ ଟେବୁଲ ଭିନ୍ନ ଆଉ କିଛି ନାହିଁ । ଏହି ସ୍ଥାନରେ ପଢ଼ା ଶୁଣାର କୌଣସି ନିଦର୍ଶନ ନାହିଁ । ଖଣ୍ଡିଏ ହେଲେ ପୁସ୍ତକ ନାହିଁ, ଖଣ୍ଡିଏ ସମ୍ବାଦପତ୍ର ନାହିଁ, ଖଣ୍ଡିଏ ଛିଣ୍ଡା କାଗଜ ବି ଟେବୁଲ ଉପରେ ପଡ଼ି ନାହିଁ । ଯୁବକମାନଙ୍କ ପ୍ରଦତ୍ତ ଚାବିଗୁଚ୍ଛର ଅର୍ଥ ତେବେ କଣ ? ମେଜିନିଙ୍କର ଭାରି କୌତୂହଳ ଜନ୍ମିଲା । ଗୃହ ମଧ୍ୟରେ ତ ଆଲମାରି, ବାକ୍‌ସ, ଦେରାଜ କିଛି ନାହିଁ—ଏତେ ଗୁଡ଼ିଏ ଚାବିର ପ୍ରୟୋଜନ ବା କଣ ? ମେଜିନି ଭାବନାରେ ବୁଡ଼ି ରହିଲେ । ଯେ କୌଣସି ପ୍ରକାରେ ରାତିଟି କଟିଗଲା ।

ପରଦିନ ପ୍ରାତଃକାଳରେ ବନ୍ଧୁମାନେ ଆସିଲେ । ମେଜିନି ସେମାନଙ୍କୁ ପଚାରିଲେ, "ମୋ ପାଖରେ ଏଇ ଗୋଟିଏ ମାତ୍ର ଚାବି ରଖି ଗଲେ ଯଥେଷ୍ଟ ହୋଇଥାନ୍ତା । ଆପଣମାନେ ବୋଧହୁଏ ଭୁଲ କ୍ରମେ ଏ ସବୁ ଚାବି ଦେଇ ଯାଇଥିଲେ ।" ବନ୍ଧୁମାନେ କହିଲେ, "ଏ ଘରେ ଏ ସମସ୍ତ ଚାବି ବ୍ୟବହୃତ ହୋଇଥାଏ । ଆପଣଙ୍କର ଯଦି କୌତୂହଳ ହୋଇଥାଏ, ତେବେ ଆପଣଙ୍କୁ ଦେଖାଇ ଦେଉଛୁଁ ।" ସେମାନଙ୍କ ମଧ୍ୟରୁ ଜଣେ ଯୁବକ ପ୍ରାଚୀର ଦେହରେ କୌଣସି ଦୁର୍ନିରୀକ୍ଷ ରନ୍ଧ୍ରରେ ଚାବି ପ୍ରବେଶ କରାଇ ଗୋଟାଏ ତମୋମୟ ଗହ୍ୱରର ଦ୍ୱାର ଉଦ୍‌ଘାଟନ କଲେ ଏବଂ କହିଲେ, "ଆପଣ ବୋଧହୁଏ ଜାଣନ୍ତି, ରାଜା ଅଷ୍ଟାଦଶ ଲୁଇ ଉପପ୍ଲବ ଓ ସାମ୍ରାଜ୍ୟର ଗ୍ରନ୍ଥ ସକଳ ଓ କାଗଜପତ୍ର ସବୁ ଭସ୍ମୀଭୂତ କରିବାର ଆଦେଶ ଜାରି କରିଅଛନ୍ତି । ଅତଏବ ଆମେମାନେ ଅନନ୍ୟକର୍ମା ହୋଇ ତତ୍‌ସମ୍ବନ୍ଧୀୟ ଯେଉଁଠାରେ ଯାହା ପାଇଲୁ ସଂଗ୍ରହ କରି ଆଣି ଏହି ସ୍ଥାନରେ ସଂଗୋପନରେ ରକ୍ଷା କରିଅଛୁଁ । ଆଜଯାଏଁ ପୁଲିସ ଏହାର ସନ୍ଧାନ ପାଇ ନାହିଁ । ଏ ଗହ୍ୱରରେ ପ୍ରବେଶ କରି ଜମାନ୍ୱୟରେ ଆଉ

ସାତଗୋଟି ଗହ୍ୱରରେ ପ୍ରବେଶ କରାଯାଏ । ସେ ଗୁଡ଼କ ମଧ୍ୟରୁ କେତୋଟି ଭୂଗର୍ଭରେ ନହିତ । ସମସ୍ତ ଗହ୍ୱର ନାନାପ୍ର ମହାକୀର୍ତ୍ତିର ବିବରଣରେ ପରିପୂର୍ଣ୍ଣ । ଏହି ସମସ୍ତ ଗହ୍ୱରରେ ସ୍ଥାନେ ସ୍ଥାନେ ପ୍ରଚୁର ପରିମାଣରେ ଡିନାମାଇଟ ପ୍ରୋତ୍ଥିତ ଅଛି । ଯଦି କଦାଚିତ୍ ଶତ୍ରୁପକ୍ଷ ଏହା ମଧ୍ୟରେ ପ୍ରବେଶ କରେ, ତାହା ହେଲେ ତାହାର ଆଉ ଫେରିବାର ସମ୍ଭାବନା ନାହିଁ । ପରନ୍ତୁ ଆମେମାନେ ମଧ୍ୟ ଟିଲ୍ଷେଟିନରେ ଏକ ପଦ ଅର୍ପଣ କରି ରହିଛୁଁ ।

ମେରିପ୍ୟୁସ୍ :—ଆପଣମାନଙ୍କର ସାହସ ଓ ଅଧ୍ୟବସାୟକୁ ସହସ୍ର ଧନ୍ୟବାଦ ନଦେଇ ରହିପାରୁ ନାହିଁ । କିନ୍ତୁ ଏ ଭଳି ସାଂଘାତିକ ସ୍ଥାନର ସୂଚୀଗୁଡ଼ିକ ଜଣେ ଅପରିଚିତ ଲୋକ ହାତରେ ଅର୍ପଣ କରି ଆପଣମାନେ କି ଅଦୂରଦର୍ଶିତାର ପରିଚୟ ଦେଇଛନ୍ତି ?

ଜନୈକ ବନ୍ଧୁ :—ମହାଶୟ, ଉଦ୍‌ବେଗ ପରିତ୍ୟାଗ କରନ୍ତୁ । ଆପଣ ନିଜକୁ ବୋନାପାର୍ଟିଷ୍ଟ ବୋଲି ଯେତେବେଳେ ପରିଚୟ ଦେଇଛନ୍ତି, ଆପଣଙ୍କୁ ଅବିଶ୍ୱାସ କରି ପାରୁଁ ? ତାହା ହେଲେ ଏହି ସମ୍ପ୍ରଦାୟ-ପ୍ରତିଷ୍ଠାତାଙ୍କର ଗୌରବ ରହିଲା କେଉଁଠି ?

ଏହି ସ୍ଥାନରେ ସ୍ୱଜାତିସେବକ କୃତବିଦ୍ୟ ବନ୍ଧୁବର୍ଗଙ୍କ ସଂସର୍ଗରେ ମେରିପ୍ୟୁସ୍‌ଙ୍କର ବିଶେଷ ଉନ୍ନତି ହେବାକୁ ଲାଗିଲା । ଇଚ୍ଛାମତ ଗ୍ରନ୍ଥପାଠ, ସ୍ୱାଧୀନ ଚିନ୍ତା, ସ୍ୱାଧୀନ ବାଦାନୁବାଦ, ଗୁରୁଭକ୍ତି ଓ ସତ୍‌ସଙ୍ଗବ୍ୟତୀତ ଜଗତରେ ଶିକ୍ଷାର ଆଉ କି ଉପାଦାନ ରହିପାରେ ? ଏ ସବୁ ମେରିପ୍ୟୁସ୍‌ଙ୍କର ନଥିଲା—ଥିଲା ମାତ୍ର ମାତାମହଙ୍କ ପ୍ରାସାଦରେ ଆର୍ଥିକ ସ୍ୱଚ୍ଛଳତା । ବର୍ତ୍ତମାନ ମେରିପ୍ୟୁସ୍ ଶିକ୍ଷାର ଏ ସମସ୍ତ ଉପାଦାନରେ ଭୂଷିତ ହେଲେ ସତ, କିନ୍ତୁ ଏଣେ ଦାରିଦ୍ର୍ୟ-ଶାର୍ଦ୍ଦୁଳ ଆସି ଗୃହଦ୍ୱାରରେ ମୁଖବ୍ୟାଦାନ କରି ଠିଆ ହେଲା । ପାଖରେ ଯେଉଁ ତିରିଶି ଗୋଟି ଫ୍ରାଙ୍କ

ଥିଲା, ତଦ୍ୱାରା ମାସାବଧି ଚଳିଲା । ଆଜ ତାଙ୍କର ଶେଷ କପର୍ଦ୍ଦକଟି ପର୍ଯ୍ୟନ୍ତ ବ୍ୟୟିତ ହୋଇଅଛି ।

*

## ଦରିଦ୍ରର ଉଦାରତା

ମେରସୁସ୍‌ଙ୍କ ପାଖରେ ଗୋଟିଏ ସୁନାଘଡ଼ି ଥିଲା । ସେ ତାହା ବିକ୍ରି କରିବା ପାଇଁ ସାମ୍ୟାର୍ଣ୍ଣରେ ଜନୈକ ଘଡ଼ି ଦୋକାନରେ ଉପସ୍ଥିତ ହେଲେ । ସେ ଘଡ଼ିଟି ଏକଶତ ଫ୍ରାଙ୍କ ଦେଇ କିଣିଥିଲେ । କିନ୍ତୁ ଦୋକାନଦାର କହିଲା ଯେ, ସେ ଉକ୍ତ ମୂଲ୍ୟର ଏକ-ଚତୁର୍ଥାଂଶ ମାତ୍ର ଦେଇ ଘଡ଼ିଟି କ୍ରୟ କରିବ । ଅବସ୍ଥା ଅନୁସାରେ ମେରସୁସ୍ ପଚିଶିଟି ମାତ୍ର ଫ୍ରାଙ୍କ ପାଇ ଘଡ଼ିଟି ବିକ୍ରୟ କରି ଦେଲେ ।

ସେ ବସାକୁ ଫେରିବାବେଳେ ମାର୍ଗରେ ଦେଖିଲେ, ଗୋଟିଏ ଗୃହଦ୍ୱାରରେ ଜଣେ ସ୍ତ୍ରୀ ଜଣେ ପୁରୁଷକୁ କାନ୍ଦି କାନ୍ଦି କଣ କହୁଅଛି । ବାଷ୍ପରୁଦ୍ଧ କଣ୍ଠର କାତରଧ୍ୱନି ଶୁଣି ମେରସୁସ୍‌ଙ୍କ ହୃଦୟରେ ଯୁଗପତ୍ କରୁଣା ଓ କୌତୂହଳର ଉଦ୍ରେକ ହେଲା । ସେ ସ୍ତ୍ରୀ ନିକଟକୁ ଯାଇ ପଚାରିଲେ, 'ଭଦ୍ରେ, ମୁଁ ଆପଣଙ୍କ କଷ୍ଟର କାରଣ ଜାଣି ପାରିବି କି ?'

ସ୍ତ୍ରୀ କହିଲା, "ମହାଶୟ, ଗତ କାଲି ମୋ ପିତାଙ୍କର ମୃତ୍ୟୁ ହୋଇଅଛି । ଅର୍ଥାଭାବରୁ ମୁଁ ତାଙ୍କର ଶବ ସତ୍କାର କରି ପାରି ନାହିଁ । ଏଣୁ ଏ ଭଦ୍ରଲୋକଙ୍କୁ କିଛି ଧାର ଦେବାକୁ ଅନୁରୋଧ କରୁଅଛି ।"

ସ୍ତ୍ରୀଟି ଏପରି କହିବା ସମୟରେ ସେହି ଭଦ୍ରବ୍ୟକ୍ତିଟି ସେଠାରୁ ଚାଲିଗଲେ । ମେରସୁସ୍ ସେହି ବିପନ୍ନା ସ୍ତ୍ରୀର ମୃତ ପିତାଙ୍କୁ ଦେଖିବାର ଇଚ୍ଛା ପ୍ରକାଶ କଲେ । ସ୍ତ୍ରୀଟି ମେରସୁସ୍‌ଙ୍କୁ ସଙ୍ଗେ ନେଇ ନିଜ ଗୃହ ମଧ୍ୟରେ ପ୍ରବିଷ୍ଟ ହେଲା । ମେରସୁସ୍ ଦେଖିଲେ, ବାସ୍ତବରେ ତାହାର ପିତା ମୃତ,

ଶବ ସମ୍ମୁଖରେ ତିନି ଜଣ ଲୋକ ବସିଛନ୍ତି । ସେହି ଗମ୍ଭୀର ବିଷାଦମୟ ଦୃଶ୍ୟ ଦେଖିବା ମାତ୍ରକେ, ମେରିୟସ୍‌ଙ୍କ ହୃଦୟରେ ସମବେଦନାର ଉଦୟ ହେଲା । ସେ ସ୍ତ୍ରୀକୁ ପଚାରି ବୁଝିଲେ, ଅନ୍ତ୍ୟେଷ୍ଟି କ୍ରିୟା ପାଇଁ ପ୍ରାୟ ଚାଳିଶି ଫ୍ରାଙ୍କ ଆବଶ୍ୟକ । ମେରିୟସ୍ ଅକୁଣ୍ଠିତ ଚିତ୍ତରେ ନିଃସହାୟା ସ୍ତ୍ରୀଟିକୁ ଚାଳିଶି ଫ୍ରାଙ୍କ ଦାନ କଲେ ।

ସ୍ତ୍ରୀଟିର ବିଷାଦମଳିନ ମୁଖମଣ୍ଡଳରେ ଗମ୍ଭୀର ଆଶ୍ୱାସନାର ଗୋଟାଏ ରେଖା ଖେଳିଗଲା । ସେ ଦାତାଙ୍କୁ କହିଲେ, 'ମହାଶୟ, ଆପଣ ସମୟୋଚିତ ସାହାଯ୍ୟ ଦାନରେ ମୋତେ ଗଭୀର କୃତଜ୍ଞତାପାଶରେ ଆବଦ୍ଧ କରି-ଅଛନ୍ତି । ଏ ଧନ ଆପଣଙ୍କୁ ତିନିମାସ ମଧ୍ୟରେ ଫେରସ୍ତ ଦେବି ।'

ମେରିୟସ୍: ଏହା ମୋତେ ଫେରାଇ ଦେବାର ପ୍ରୟୋଜନ ନାହିଁ । ଧନ ମୋର ନୁହେ, ଆପଣଙ୍କର ବି ନୁହେ—ଧନ ପ୍ରୟୋଜନର, ଅଭାବର । ଜଳର ସ୍ୱାଭାବିକ ଗତି ଯେପରି ଖାତ ଆଡ଼କୁ, ଧନର ନ୍ୟାୟାନୁମୋଦିତ ସହଜଗତି ସେହିପରି ଅଭାବ ଆଡ଼କୁ । ବର୍ତ୍ତମାନ ଆପଣଙ୍କର ଅଭାବ ଅଛି, ଧନ ପ୍ରୟୋଜନ – ଆପଣ ଏହା ସ୍ୱଚ୍ଛନ୍ଦ ଭାବରେ ନିଜର ମନେ କରି ପିତାଙ୍କ ସତ୍କାରରେ ଲଗାନ୍ତୁ ।

ପିତୃହୀନା କନ୍ୟା ହସ୍ତରେ ମୁଦ୍ରାତକ ଅର୍ପଣ କରି ଉଦାରହୃଦୟ ମେରିୟସ୍ ବସାକୁ ବାହୁଡ଼ିଲେ—ରିକ୍ତ ହସ୍ତରେ । ରାତିରେ ଆଉ କିଛି ଆହାର ହେଲା ନାହିଁ । ପରଦିନ ଦେହର ଓଭର୍‌କୋଟଟି ବିକ୍ରୟ କରିବାକୁ ହେଲା—ତଦ୍ୱାରା ଦୁଇ ଦିନ ଚଳିଲା । ପରେ ସେ ଟୋପିଟି ବିକି କରି ଆଉ ଦିନକର ଖର୍ଚ୍ଚ ଚଳାଇଲେ । ଆଜି ପାଦୁକା ହଳଟି ବିକ୍ରୟ ନକଲେ ଆଉ ଉପାୟ ନାହିଁ । ତେବେ ବରଫାବୃତ ପଥରେ ନଗ୍ନ ପଦରେ ଭ୍ରମଣ ଯାଉଛନ୍ତି କିମିତି ? ଏହା ବିଷମ ଚିନ୍ତାର ବିଷୟ ହୋଇ ଉଠିଲା । ଆହାର ନକଲେ ବି ଚଳିପାରେ, ପିତୃସମାଧି ନିକଟକୁ ନଗଲେ ତ ଚଳିବ ନାହିଁ ! ଅଶେଷ ଭାବନା ପରେ, ମେରିୟସ୍ ପାଦୁକା-ବିକ୍ରୟ ରହିତ କରି ଅନାହାରରେ ଭ୍ରମଣ ଯାତ୍ରା କଲେ ।

ଗୃର୍ଣନ ଏହି ସ୍ଥାନରୁ ସାତ ମାଇଲ ! ଓଭରକୋଟ୍ ଓ ଟୋପି ଅଭାବରେ ମେରିସ୍ପସଙ୍କର ଉପୁଙ୍କର କଷ୍ଟ ହେବାକୁ ଲାଗିଲା । କିନ୍ତୁ ସେ ତତ୍ପ୍ରତି ଲେଶ ମାତ୍ର ଲକ୍ଷ୍ୟ ନକରି ମଧ୍ୟାହ୍ନ ସମୟରେ ପିତାଙ୍କ ସମାଧି ନିକଟରେ ଯାଇ ଉପସ୍ଥିତ ହେଲେ । ସେଇ ସ୍ଥାନରେ ଯଥାବିଧି ନମସ୍କାର କରି, ଅଧୋମୁଖରେ ଉପବିଷ୍ଟ ହୋଇ ରହିଲେ ।

କିୟତ୍କ୍ଷଣ ପରେ ମେରିସ୍ପସ୍ ମୃଦୁମନ୍ଦ ସ୍ୱରରେ ପିତାଙ୍କୁ ଲକ୍ଷ୍ୟ କରି କହିଲେ, "ପିତୃଦେବ ! ଭବଦୀୟ ଚରଣ ଦର୍ଶନ ଆଶାରେ ଆସିଅଛି ଦାରୁଣ ଶୀତ ଓ ଅନାହାରରେ । ରାଗ କରିବେ ନାହିଁ—ଏଥିରେ ମୋର କୌଣସି କଷ୍ଟ ହୋଇନାହିଁ । ଏପରି କି ମୁଁ ଦୁଃଖ ବି ଅନୁଭବ କରି ନାହିଁ । ଜଗତରେ ଆରାଧ୍ୟ ବସ୍ତୁ ପାଇଁ କାୟିକ କ୍ଲେଶ ସ୍ୱୀକାର-ପ୍ରଥା ଚିରଦିନ ବିଦ୍ୟମାନ ରହିଅଛି । ସ୍ୱଦେଶ ଓ ସ୍ୱଜାତି ଯେତେବେଳେ ଆପଣଙ୍କର ଆରାଧ୍ୟ ବସ୍ତୁ ହୋଇଥିଲା, ସେହି ସମୟରେ ଆପଣ କଣ ଅଶେଷ କାୟିକ କ୍ଲେଶ ସହ୍ୟ କରି ନଥିଲେ ? ପିତଃ ! ଲୋକେ ଶାରୀରିକ କ୍ଲେଶ ସ୍ୱୀକାର କରନ୍ତି ମାନସିକ ସୁଖ ପାଇଁ । ଶାରୀରିକ ସୁଖ ଅତି ତୁଚ୍ଛ ପଦାର୍ଥ । ମାନସିକ ସୁଖ ଆଗରେ ଏହା କଣ୍ଟା ନୁହେ । ମୁଁ ଆପଣଙ୍କୁ ଛାଡି ମାତାମହ-ଗୃହରେ ଅଶେଷ ସୁଖ ଭୋଗ ଓ ବିଳାସ ମଧ୍ୟରେ ବାସ କରୁଥିଲି; କିନ୍ତୁ ଆପଣଙ୍କର ଚରଣ-ଦର୍ଶନ-ସୁଖର ତୁଳନାରେ, ସେ ରାଜଭୋଗ ଯେ ବର୍ତ୍ତମାନ ମୋ ବିବେଚନାରେ ନରକ ଭୋଗ । ମୋର ମନେ ହୁଏ, ଆପଣ ଜୀବିତ ଅଛନ୍ତି । ଆପଣଙ୍କର ମୃତ୍ୟୁ ହୋଇଥିଲେ, ମୋର ଜୀବିତ ରହିବା ସମ୍ଭବ ହୁଅନ୍ତା ନାହିଁ । ବୃକ୍ଷ ମଲେ ଫଳ ଫୁଲ ଜୀବିତ ରହେ ନାହିଁ । ଆପଣ ଯେପରି ଗୃର୍ଣନର ଆବାସ ପରିତ୍ୟାଗ କରିଅଛନ୍ତି, ସେପରି ନଶ୍ୱର ଭୌତିକ ଶରୀର ବି ପରିତ୍ୟାଗ କରିଅଛନ୍ତି ମାତ୍ର । ଈଶ୍ୱର ଯେପରି ଅଲକ୍ଷ୍ୟଭାବରେ ରହି ନିଜ ସୃଷ୍ଟି ପାଳନ କରନ୍ତି, ଆପଣ ବି ସେହିପରି ଅନ୍ତରାଳରେ ରହି ମୋତେ ପ୍ରତିପାଳନ କରୁଛନ୍ତି, ମୋ ପ୍ରତି ସ୍ନେହ ମମତା ଦେଖାଉଛନ୍ତି ।"

ଅନନ୍ତର ପିତୃ ଚରଣୋଦ୍ଦେଶ୍ୟରେ ପ୍ରଣାମ କରି ମେରିସ୍ପସ୍ ଫେରି ଯାତ୍ରା କଲେ । ସାରାଦିନ ଅନଶନ ଓ ପଥଶ୍ରମରେ ଅତିବାହିତ କରି ସନ୍ଧ୍ୟା

ବେଳେ ଆବାସରେ ଉତ୍ତୀର୍ଣ୍ଣ ହୋଇ ଦେଖିଲେ, ଗୃହଦ୍ୱାରରେ ଜଣେ ଲୋକ ବସିଅଛନ୍ତି । ମେରସୁସ୍ ନିକଟବର୍ତ୍ତୀ ହେବାରୁ, ସେ ଯଥାବିଧି ନମସ୍କାର କରି ତାଙ୍କ ହସ୍ତରେ ଖଣ୍ଡିଏ ପତ୍ର ଦେଲା ।

ପାଠକ ପାଠିକାମାନଙ୍କର ସ୍ମରଣ ଥିବ, ମେରସୁସ୍ ମାତାମହଙ୍କ ଗୃହ ତ୍ୟାଗ କରିବାର କିଛି ସମୟ ପରେ, ମାତାମହ ନିଜ ତନୟାଙ୍କୁ ଠିକ ପ୍ରତି ମାସ ମେରସୁସ୍‌ଙ୍କଠାକୁ ଏକଶତ 'ଗୁଲ' ପଠାଇବାକୁ କହି-ଥିଲେ । ତାହା ବାସ୍ତବିକ ଗୁଲ ନୁହେ—ଅତଏବ କ୍ରୋଧର ବଶବର୍ତ୍ତୀ ହୋଇ ସେ 'ଫ୍ରାଙ୍କ' ନକହି 'ଗୁଲ' ବୋଲି କହି ପକାଇଥିଲେ । ସେ ଶାନ୍ତ ହେବା ପରେ, ତଦୀୟ କନ୍ୟା କଥାଟା ତାଙ୍କଠାରୁ ଭଲ କରି ବୁଝି ପାରିଥିଲେ ଯେ, ମେରସୁସଙ୍କ ନିକଟକୁ ଗୁଲ ନୁହେ ଫ୍ରାଙ୍କ ପଠାଇବାକୁ ହେବ । ସେ ବର୍ତ୍ତମାନ ଉଲ୍ଲିଖିତ ପତ୍ର ସହିତ ଏକଶତ ଫ୍ରାଙ୍କ ପଠାଇଛନ୍ତି ।

ମେରସୁସ୍ ପତ୍ରଖଣ୍ଡିକ ପାଠ କରି, ତାହାର ପୃଷ୍ଠଭାଗରେହିଁ ଉତ୍ତର ଲେଖି ଦେଲେ, 'ମା, ଆପଣଙ୍କର ପତ୍ର ପାଠ କରି ଅବଗତ ହେଲି । ଏହି ସ୍ଥାନରେ ମୋର କୌଣସି ଅଭାବ ନାହିଁ । ଏଣୁ ପ୍ରେରିତ ଧନ ଫେରସ୍ତ ଦେଲି ।' ସେ ଉକ୍ତ ବ୍ୟକ୍ତି ଦ୍ୱାରା ପତ୍ର ଓ ଏକଶତ ଫ୍ରାଙ୍କ୍ ଫେରାଇ ଦେଲେ ।

ଧନ୍ୟ ଫରାସି ଯୁବକ, ଧନ୍ୟ ତୁମର ପ୍ରତିଜ୍ଞା ! ଧନାଭାବରୁ ସମସ୍ତ ଦିବସ ଉପବାସରେ ରହିଅଛ, ତଥାପି ଯଥାସମୟରେ ପ୍ରେରିତ ଏପରି ଉପାଦେୟ ସାହାଯ୍ୟ ବି ଗ୍ରହଣ କଲ ନାହିଁ ! କାରଣ ଯେଉଁ ବ୍ୟକ୍ତି ତୁମ ପିତାଙ୍କର ଅବମାନନା କରିଅଛି, ତୁମେ ତାହାର ଅନୁଗ୍ରହ-ପ୍ରାର୍ଥୀ ନୁହ ।

*

## ପୁରସ୍କାର ପ୍ରସ୍ତାବ

ଦିନେ ରାତି କାଳରେ ମେରସୁସ୍ ଆବାସକୁ ଫେରିବା ବେଳେ, ମାର୍ଗ ମଧ୍ୟରେ ଏକ ସ୍ଥାନରେ ପୃଷ୍ଠଭାଗରୁ ହଠାତ୍ ଗୋଟିଏ ଗମ୍ଭୀର ସ୍ୱର ଶୁଣି

ପଚାରିଲେ, 'ଗୁଡ୍ ଇଭ୍ନିଂ ।' ସେ ମୁଖ ବୁଲାଇ ଠିଆହୋଇ ପ୍ରତି-ନମସ୍କାର କରି ପଚାରିଲେ, 'ମହାଶୟ, ଆପଣ କେଉଁଠାରୁ ଆସିଛନ୍ତି ?'

ଲୋକଟି ବୃଦ୍ଧ, ଦୀର୍ଘକାୟ । ଗୋଟିଏ ସୁଦୀର୍ଘ କୋଟରେ ତାଙ୍କର ସର୍ବାଙ୍ଗ ଆଚ୍ଛାଦିତ, ମୁଖମଣ୍ଡଳ ତାମ୍ରବର୍ଣ୍ଣ ଓ ବଳୁଚିତ, ବୟଃକ୍ରମ ଷାଠିଏ ବର୍ଷରୁ ଅଧିକ ।

ସେହି ଦୀର୍ଘ ଶ୍ମଶ୍ରୁଧାରୀ ପ୍ରବୀଣ ପୁରୁଷ ଉତ୍ତର କଲେ, 'ମୋର କୌଣସି ନିର୍ଦ୍ଦିଷ୍ଟ ବାସ ସ୍ଥାନ ନାହିଁ । ପ୍ରାୟ କୋଡ଼ିଏ ବର୍ଷ ହେଲା ପଥରେହିଁ ବୁଲୁଅଛି । ଏଇକ୍ଷଣି କେଉଁଠାକୁ ଯିବ, ତାହାର ସ୍ଥିରତା ନାହିଁ । ବତ୍ସ, ଏହି ଦାରୁଣ ଶୀତରେ ତୁମ ଦେହରେ କୋଟ ନାହିଁ, ମୁଣ୍ଡରେ ଟୋପି ନାହିଁ । ମୋର ଇଚ୍ଛା, ଏକ ଶତ ଫ୍ରାଙ୍କ ଦେଇ ତୁମର ଏ ସମସ୍ତ ଅଭାବ ପୂରଣ କରିବ ।'

ମେରସୂସ୍—ମହାଶୟ, ମୋର ବର୍ତ୍ତମାନ ଅର୍ଥର କିଛି ପ୍ରୟୋଜନ ନାହିଁ —ଶିକ୍ଷା ଓ ଶାନ୍ତି ଆବଶ୍ୟକ । ଆପଣ ଯଦି ମୋତେ ପିତୃଭକ୍ତି ସମ୍ବନ୍ଧରେ ଉପଦେଶ ଦେଇ ପାରନ୍ତି, ହଅନ୍ତୁ—ମୁଁ ଧନ ନେଇ କରିବି କଣ ?

ବୃଦ୍ଧ—ମୁଁ ପିତୃଭକ୍ତି ବିଷୟରେ କିଛି ଜାଣେ ନାହିଁ । କିନ୍ତୁ ତୁମେ ଯେ ତୁମର ପରଲୋକଗତ ପିତାଙ୍କ ଲାଗି ନୟୁତାତ୍ମା ସନ୍ନ୍ୟାସୀ ହୋଇଅଛ, ସେଥିପାଇଁ ତୁମକୁ କିଞ୍ଚିତ୍ ପୁରସ୍କାର ଦେବାକୁ ଇଚ୍ଛା କରେ । ଯଦି ଇଚ୍ଛା କର, ତାହାହେଲେ ତୁମକୁ ଦୁଇ ହଜାର ଫ୍ରାଙ୍କ ଦେଇ ବୁଲିଯିବ ।

ମେରସୁସ୍—ମହାଶୟ, କ୍ଷମା କରନ୍ତୁ । ଆପଣ ମୋତେ ସନ୍ନ୍ୟାସୀ ବୋଲି ସ୍ୱୀକାର କରି ନେଇଛନ୍ତି । ଆପଣ ପ୍ରବୀଣ ଲୋକ, ଜାଣନ୍ତି ଯେ, ଅର୍ଥ ସନ୍ନ୍ୟାସ-ଧର୍ମର ଘୋର ଅନ୍ତରାୟ । ସେଇ ଅର୍ଥ ଆପଣଙ୍କ ପାଖରେହିଁ ରହୁ । ଆପଣ କହୁଛନ୍ତି ଆପଣଙ୍କର କୌଣସି ନିର୍ଦ୍ଦିଷ୍ଟ

ବାସସ୍ଥାନ ନାହିଁ । ମୁଁ ଏ ଶୀତ ରାତ୍ରରେ ଆପଣଙ୍କର କି ଉପକାର କରିବି, ଅନୁମତି କରନ୍ତୁ ।

ବୃଦ୍ଧ—ଏହି ପ୍ରିୟ ବାକ୍ୟ ପାଇଁ ମୁଁ ତୁମକୁ ଧନ୍ୟବାଦ ଦେଉଅଛି । କିନ୍ତୁ ବତ୍ସ, ତୁମେ ଯେପରି ସୁପୁତ୍ର ହେବାକୁ ଯତ୍ନବାନ ହେଉଅଛ, ମୁଁ ବି ସେପରି ସୁପିତା ହେବାକୁ ବରାବର ଚେଷ୍ଟା କରୁଅଛି । ଏ ସଂସାରରେ ମୋର ହୋଇ କେହି ନାହିଁ । ମୁଁ ସମଗ୍ର ଫ୍ରାନ୍ସ ପରିଭ୍ରମଣ କରିଅଛି, କିନ୍ତୁ କୌଣସି ସ୍ଥାନରେ ମନମୁତାବକ ଲୋକକୁ ଖୋଜି ପାଇଲି ନାହିଁ । ବର୍ତ୍ତମାନ ଦୈବଯୋଗରେ ତୁମର ଦେଖା ପାଇଅଛି । ପ୍ରସନ୍ନ ହୋଇ କହ—ତୁମକୁ ଦୁଇ ଏକ ଲକ୍ଷ ଫ୍ରାଙ୍କ ଦାନ କରିଯିବି ।

ମେରିଯୁସ୍—ଆପଣ ମୋ ପିତାଙ୍କର ସମବୟସ୍କ—ଆପଣଙ୍କ ସହିତ ଅଧିକ ବାଦାନୁବାଦ କରିବା ମୋର ଉଚିତ ନୁହେ । ସମଗ୍ର ଫ୍ରାନ୍ସ ମଧ୍ୟରେ ଆପଣ ମୋ ପରି ଲୋକ ପାଇ ନଥିବା କଣ ନିତାନ୍ତ ଆଶ୍ଚର୍ଯ୍ୟର ବିଷୟ ନୁହେଁ ? ଦେଶରେ କେତେ ଗୁଣବାନ୍ ଲୋକ ଅଛନ୍ତି, କେତେ ବାରିଷ୍ଟର୍, କେତେ କବି, କେତେ ସମ୍ବାଦପତ୍ର-ସଂପାଦକ, କେତେ ଗଣିତ ବିଜ୍ଞାନବିତ୍, କେତେ ବା ଜ୍ୟୋତିର୍ବେତ୍ତା ଅଛନ୍ତି ! ସେମାନେ ସ୍ୱଜାତିର ପ୍ରିୟଚିକୀର୍ଷୁ ହେଲେହେଁ ଅର୍ଥାଭାବରୁ କିଛି କରିପାରୁ ନାହାନ୍ତି । ଆପଣଙ୍କର ପ୍ରଚୁର ଅର୍ଥର କିୟଦଂଶ ସେହି ସମସ୍ତ ଲୋକଙ୍କୁ ଦାନ କଲେ ତ ଦେଶର ଢେର ମଙ୍ଗଳ ସାଧିତ ହୋଇ ପାରନ୍ତା ।

ବୃଦ୍ଧ—ସେମାନଙ୍କୁ ମୋର ଏଇ ଛ' ଲକ୍ଷ ଫ୍ରାଙ୍କର ଏକ କପର୍ଦ୍ଦକ ସୁଦ୍ଧା ଦେବି ନାହିଁ । ସେମାନେ ଦେଶର, ଜାତିର କି ଉପକାର କରି-ଅଛନ୍ତି ? ଚାରି ପାଞ୍ଚ ଲକ୍ଷ ପ୍ରଜାଙ୍କୁ ଗିଲୋଟିନରେ ଚଢ଼ାଇ ଦେଲେ କଣ ଦେଶର କଲ୍ୟାଣ ସାଧିତ ହୋଇ ପାରେ ? ମୁଁ ସେଭଳି ଲୋକଙ୍କୁ ବିଶ୍ୱାସ କରେ ନାହିଁ ।

ମେରିୟସ୍—ମହାଶୟ, ମୁଁ ଆପଣଙ୍କ କଥାର ସଂପୂର୍ଣ୍ଣ ଅନୁମୋଦନ କରି ପାରୁ ନାହିଁ । ପ୍ରତିଭାଶାଳୀ ଲୋକେହିଁ ସ୍ୱଦେଶ ଓ ସ୍ୱଜାତିର

ଉଦ୍ଧାର ସାଧନ କରିଥା'ନ୍ତି—ଜଗତର ଇତିହାସରେ ଏହାର ଶତ ଶତ ପ୍ରମାଣ ଦେଖାଯାଏ ।

ବୃଦ୍ଧ—ମୁଁ ବେଶୀ ଇତିବୃତ୍ତ ପାଠ କରି ନାହିଁ । ତେବେ ଯେଉଁମାନେ, ଫରାସୀ ଉପପ୍ଲବକାରୀଗଣଙ୍କ ପରି ରାଜାର ଶିରଚ୍ଛେଦ କରି ଦେଶର ମଙ୍ଗଳ ସମ୍ପାଦନରେ ଅଗ୍ରସର ହୁଅନ୍ତି, ସେମାନେ କେବେ ସୁଫଳ ଉତ୍ପାଦନ କରି ପାରନ୍ତି ନାହିଁ—ଏହା ମୋର ଦୃଢ଼ ଧାରଣା । ରାଜରକ୍ତର ଏପରି ଏକ ମହିମା ଅଛି, ତାହା ଧରଣୀରେ ପଡ଼ିବା ମାତ୍ରକେ ଏକ ସମୟରେ ଏକ ସହସ୍ର ରାଜାଙ୍କର ଉଦ୍ଭବ ହୋଇଥାଏ । ମୋର ଏହି ବହୁ କଷ୍ଟାର୍ଜିତ ଧନ ଏ ଧରଣର ଲୋକଙ୍କ ହାତରେ ସମର୍ପଣ କରି ଦ୍ୱିତୀୟ ଫରାସୀ-ବିପ୍ଳବର ସୂତ୍ରପାତ କରିବି ମନେ କରିଛ ଯୁବକ ? କଦାପି ନୁହେ । ମୁଁ ଅବଶ୍ୟ ମୋ ଅର୍ଥର ସଦ୍‌ବ୍ୟବହାର କରିବି ।

ମେରିୟସ୍—ମହାଶୟ, ପାରିରେ ଭୂତପୂର୍ବ ସାମ୍ରାଜ୍ୟର ବିବରଣାଦି ରକ୍ଷା କରିବା ସକାଶେ କେତେକ ଗୋଟି ଗୁପ୍ତ ସମିତି ପ୍ରତିଷ୍ଠିତ ହୋଇଅଛି । ଆପଣ ଯଦି ସେ ସବୁ ସମିତିର ସହାୟ ହୁଅନ୍ତି, ତାହାହେଲେ ଆପଣଙ୍କ ଧନର ସଦ୍‌ବ୍ୟବହାର ହୋଇ ପାରିବ ।

ବୃଦ୍ଧ—ବତ୍ସ, ଅସ୍ୱୀକାର କରୁନାହିଁ । କିନ୍ତୁ ମୋର କର୍ତ୍ତବ୍ୟ ଅବଧାରିତ ହୋଇ ସାରିଛି । ସଂକଳ୍ପ କରିଛି, ମୁଁ ମୋର ଧନ ଜଣେ ପିତୃ-ଭକ୍ତ ବ୍ୟକ୍ତି ହାତରେ ସମର୍ପଣ କରିବି । ମନୁଷ୍ୟ କୁପୁତ୍ର ଲାଗି ଯେପରି କଷ୍ଟ ପାଏ, ଅନ୍ୟ କୌଣସି କାରଣରୁ ସେପରି କଷ୍ଟପାଏ ନାହିଁ । ରାଜା, ଦସ୍ୟୁ ବା ତସ୍କର କେହି ହେଲେ କୁପୁତ୍ର ଭଳି ପୀଡ଼ାଦାୟକ ନୁହେ । ଅଗ୍ନି, ଜଳ, ସର୍ପ, ବ୍ୟାଘ୍ର, ରୋଗ, ଶୋକ ଇତ୍ୟାଦି ହସ୍ତରୁ ପରିତ୍ରାଣ ପାଇବାର ଉପାୟ ଅଛି; କିନ୍ତୁ କୁପୁତ୍ର ହସ୍ତରୁ ଅବ୍ୟାହତି ପାଇବାର ଆଦୌ ଉପାୟ ନାହିଁ । ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ, ଏହି

ନିଷ୍ପାପ ମଧ୍ୟରେ କୁପୁତ୍ର-ପାପହିଁ ସର୍ବାପେକ୍ଷା ଅସହନୀୟ । ଅତଏବ ପ୍ରତିଜ୍ଞା କରିଛି, ମୋର ଏହି ବହୁ କଷ୍ଟୋପାର୍ଜିତ ଧନ କୌଣସି ସୁପୁତ୍ର ହାତରେ ଅର୍ପଣ କରିବି । କୌଣସି ରାଜନୈତିକ ବ୍ୟାପାରରେ ଧନ ବିନିଯୋଗ କରିବି ନାହିଁ । ତୁମେ ଫ୍ରାନ୍‌ସର ଆଦର୍ଶ ପୁତ୍ର; ସୁତରାଂ ଆଶା କରେଁ, ମୋ ନିକଟରୁ ତୁମେ ପିତୃଭକ୍ତିର ଏହି ପୁରସ୍କାର ଗ୍ରହଣ କରିବ ।

ଏହା କହି ବୃଦ୍ଧ ପକେଟରୁ କେତୋଟି ବ୍ୟାଙ୍କନୋଟ୍ ବଡ଼ା ବାହାର କରି ମେରିୟସ୍‌ଙ୍କ ହାତରେ ଦେବାକୁ ଉଦ୍ୟତ ହେଲେ । ମେରିୟସ୍ 'ନା ନା' କହି, କିଛି ଦୂରକୁ ଘୁଞ୍ଚିଗଲେ । ବୃଦ୍ଧ କହିଲେ,-- 'ବତ୍ସ, କୌଣସି ସନ୍ଦେହ କରିବାର କାରଣ ନାହିଁ । ମୁଁ ପ୍ରକୃତରେ ଏହା ତୁମକୁ ଦାନ କରୁଛି—ତୁମେ ଏକା ଏ ଧନର ଯୋଗ୍ୟ ପାତ୍ର, ଏ ଧନରାଶି ତୁମର । ବତ୍ସ, ଏହି ବୃଦ୍ଧକୁ ପରଧନ-ବହନ କଷ୍ଟରୁ ମୁକ୍ତି ଦାନ କର ।

ମେରିୟସ୍ ବିନୀତ ଭାବରେ କହିଲେ, "ମହାଶୟ, ମୋର ଅପରାଧ ମାର୍ଜନା କରନ୍ତୁ, ମୁଁ କୌଣସିମତେ ଆପଣଙ୍କର ଧନ ଗ୍ରହଣ କରିବି ନାହିଁ । ଧନ ମୋ ପିତୃଧର୍ମର ଅନ୍ତରାୟ ହେବ । ମୁଁ ପାର୍ଥିବ ଧନାଶା ଫଳରେହିଁ ପିତୃଦର୍ଶନରୂପ ଅପାର୍ଥିବ ଚରମ ଧନରୁ ବଞ୍ଚିତ ହୋଇଥିଲି । ବର୍ତ୍ତମାନ ମୁଁ ସ୍ୱର୍ଗତ ପିତାଙ୍କର ଆଶୀର୍ବାଦହିଁ ଅତୁଳ ଐଶ୍ୱର୍ଯ୍ୟ ବୋଲି ମନେ କରେଁ । ମୋତେ ଆପଣ ଏହି ନଶ୍ୱର ଧନ-ଦାନରେ ସେହି ଚିରନ୍ତନ ଐଶ୍ୱର୍ଯ୍ୟରୁ ବଞ୍ଚିତ କରିବେ କାହିଁକି ? ଲୋକେ ପାର୍ଥିବ ଧନ କାମନା କରନ୍ତି ଭବିଷ୍ୟତ ନିମନ୍ତେ; କିନ୍ତୁ ମୋର ଭୂତ, ଭବିଷ୍ୟତ୍, ବର୍ତ୍ତମାନ ସମସ୍ତ ମୋ ପିତାଙ୍କର ସମାଧିରେ ସମାଧି ପ୍ରାପ୍ତ ହୋଇଅଛି । ମୁଁ ପିତୃ ଆଶୀର୍ବାଦ ବଳରେ ଯାବଜ୍ଜୀବ ପାର୍ଥିବ ବନ୍ଧନରୁ ମୁକ୍ତି ଲାଭ କରିଅଛି । ମୋର ମୃତ୍ୟୁ ଭୟ ନାହିଁ—ରୋଗ, ଶୋକ ବା ଅନାହାରରେ ଯେପରି ଭାବରେ ହେଉ, ମୁଁ ସର୍ବଦା ମୃତ୍ୟୁ ପାଇଁ ପ୍ରସ୍ତୁତ । ଏହା କଣ ସ୍ୱାଧୀନତା ନୁହେ ? ଜଣେ ନିଃସ୍ୱ ଫରାସୀ ଯୁବକକୁ ବ୍ୟକ୍ତିଗତ ସ୍ୱାଧୀନତାରୁ, ମୁକ୍ତାବସ୍ଥାରୁ ବଞ୍ଚିତ କରି ଆପଣଙ୍କର ବା ଲାଭ କଣ ?

ବୃଦ୍ଧ ନୋଟ ବଣ୍ଡାଗୁଡିକ ପୁନର୍ବାର ପକେଟସ୍ଥ କରି କହିଲେ, 'ବତ୍ସ, ମୁଁ ହାର ମାନିଲି । ତଥାପି ମୋର ସଙ୍କଳ୍ପ ବୃଥା ହେବ ନାହିଁ । ମୋର ଏହି ଧନ ତୁମେହିଁ ଭୋଗ କରିବ । ପାଞ୍ଚ ବର୍ଷ ପରେ ମୁଁ ତୁମ ସହିତ ପୁଣି ଦେଖା କରିବି । ଏହି ଜାନୁଆରି ମାସରେ, ଏହି ଦିନ ମୁଁ ତୁମକୁ ପୁନର୍ବାର ପିତୃଭକ୍ତିର ପୁରସ୍କାର ଦେବାକୁ ଆସିବି । ମୋର ଏହି ଅର୍ଥରାଶି ତୁମେ ପ୍ରତ୍ୟାଖ୍ୟାନ କରିଛ ସତ; କିନ୍ତୁ ସେତେବେଳେ ମୁଁ ତୁମ ପାଇଁ ଯାହା ଆଣିବି, ତାହା ତୁମେ କୌଣସି ପ୍ରକାରେ ପ୍ରତ୍ୟାଖ୍ୟାନ କରି ପାରିବ ନାହିଁ । ତୁମେ ପିତୃଭକ୍ତି ଓ ଆତ୍ମସଂଯମର ପରାକାଷ୍ଠା ପ୍ରଦର୍ଶନ କରିଅଛ । ତୁମେ ମୋର ଦାନ ଗ୍ରହଣ କଲ ନାହିଁ ବୋଲି ମୁଁ ତୁମ ପ୍ରତି ବିରକ୍ତ ହେବା ତେଣିକି ଥାଉ, ବରଂ ତୁମ ଗୁଣରେ ଅଧିକତର ମୁଗ୍ଧ ହେଉଅଛି । ଜୀବନର ଅବଶିଷ୍ଟ ସମୟ ଯେ ତୁମଭଳି ପିତୃଭକ୍ତ ଯୁବକର ହିତ ଚିନ୍ତାରେ ଅତିବାହିତ କରିବି, ଏଥିରେ ଆଉ ସନ୍ଦେହ ନାହିଁ ।

'ବତ୍ସ, ତୁମେ କହିଲ, ଯେଉଁ ଅବସ୍ଥାରେ ମନୁଷ୍ୟ ଅନୁକ୍ଷଣ ମୃତ୍ୟୁ ପାଇଁ ପ୍ରସ୍ତୁତ ରହିପାରେ, ତାହାହିଁ ପ୍ରକୃତ ସ୍ୱାଧୀନ ଅବସ୍ଥା । ମୁଁ ଏହାର ସମ୍ପୂର୍ଣ୍ଣ ଅନୁମୋଦନ କରେଁ । ମନୁଷ୍ୟ ପକ୍ଷରେ ଏହା ଅପେକ୍ଷା କୌଣସି ମହତ୍ତର ଅବସ୍ଥାର କଥା ମୁଁ ଜାଣେ ନା । ଫ୍ରାନ୍‌ସର ଆଦର୍ଶ ପୁରୁଷ ନେପୋଲିୟନ ସେଣ୍ଟ୍ ହେଲେନା ଦ୍ୱୀପରେ ଜଣେ ବନ୍ଧୁଙ୍କୁ ଥରେ ଠିକ୍ ଏପରି କହିଥିଲେ । ଆଜି ତୁମ ପରି ଅଜାତଶ୍ମଶ୍ରୁ ବାଳକ ମୁଖରୁ ସେହି ଉଦାର କଥାର ପୁନରୁକ୍ତି ଶ୍ରବଣ କରି ମୁଁ କିପରି ଆନନ୍ଦ ଲାଭ କରିଅଛି ତାହା ବର୍ଣ୍ଣନାତୀତ । ଈଶ୍ୱରଙ୍କ ସୃଷ୍ଟି ମଧ୍ୟରେ ଫ୍ରାନ୍‌ସ କଣ ଏପରି ଭାବରେ ସୃଷ୍ଟି ତ ଯେ, ଏ ଦେଶରେ ହୀନଚେତା ପୁରୁଷର ଉଦ୍ଭବ ସମ୍ଭବ ନୁହେ ! ଏ ଦେଶର କି ଇତର, କି ଭଦ୍ର, କି ରାଜା, କି ପ୍ରଜା ସମସ୍ତଙ୍କ ମଧ୍ୟରେ ଯେ କୌଣସି ପ୍ରକାର ଚରିତ୍ରଗତ ଉତ୍କର୍ଷ ଦେଖିବାକୁ ମିଳେ । ହାୟ, କେବଳ ମୁଁ ନରାଧମ । ମୋର ବୟସ ଷାଠିଏ ବର୍ଷ ଉତ୍ତୀର୍ଣ୍ଣ ହୋଇଗଲା । ଜୀବନ ଶେଷ ହେବା ଉପରେ, ଅଦ୍ୟାପି ହୃଦୟର କୌଣସି ପ୍ରକାର ଉଚ୍ଚତା ଦେଖାଇ ପାରିଲି ନାହିଁ, ଫ୍ରାନ୍‌ସର ସୁସନ୍ତାନ ହୋଇ ପାରିଲି ନାହିଁ ।''

ଏହା କହି ବୃଦ୍ଧ ବଦାୟୋନ୍ମୁଖ ହେବାରୁ ମେରିୟସ୍ ବିମୀତ ଭାବରେ କହିଲେ, 'ମହାଶୟ, ଆପଣ କହିଲେ ଯେ, ଫ୍ରାନ୍ସର ରାଜଗଣଙ୍କ ମଧ୍ୟରେ ବି ଚରିତ୍ରଗତ ଉତ୍କର୍ଷ ଦେଖି ଅଛନ୍ତି । କାହିଁ, ବୋର୍ବନବଂଶ ତ ଚିରଦିନ ସ୍ୱାର୍ଥପର ଓ ଅତ୍ୟାଚାରୀ । ଫ୍ରାନ୍ସର ଇତିହାସ ଏହାର ସାକ୍ଷୀ ।'

ବୃଦ୍ଧ—ବତ୍ସ, ବୋର୍ବନଗଣ ଯେ ନାନା କାରଣରୁ ଦୋଷୀ, ତାହା ମୁଁ ଅସ୍ୱୀକାର କରୁନାହିଁ । ସ୍ୱାର୍ଥପରତା ଓ ଅତ୍ୟାଚାର ସମ୍ବନ୍ଧରେ ଏମାନେ ଜଗତର ଅନ୍ୟାନ୍ୟ ରାଜାଙ୍କ ଅପେକ୍ଷା ନ୍ୟୂନ ନହେଲେହେଁ, ଏମାନଙ୍କର କେତେ ଗୋଟି ଗୁଣ ଅଛି, ଯାହା ଅନ୍ୟତ୍ର ଦେଖାଯାଏ ନାହିଁ । ଏମାନେ ରକ୍ତପାତକୁ ଖୁବ୍ ଡରନ୍ତି । ଷୋଡ଼ଶ ଲୁଇ ଏପରି ରକ୍ତଭୀରୁ ରାଜା ଥିଲେ ଯେ, ବରଂ ନିଜ ରକ୍ତ ଦେଇ ବିପ୍ଳବର ତୃଷ୍ଣା ମିଟାଇଲେ, ତଥାପି ବିପ୍ଳବ ଦେହରେ ହସ୍ତାର୍ପଣ କଲେ ନାହିଁ । ଉଇଲ ପତ୍ରରେ ଲେଖିଗଲେ—'ମୋର ମୃତ୍ୟୁ ପାଇଁ କେହି ଯେପରି ପ୍ରତିହିଂସା ନେବାକୁ ଚେଷ୍ଟା ନକରନ୍ତି ।' ସେଣ୍ଟ୍ ଲୁଇ-ବଂଶୋଦ୍ଭବ ସେହି ମହାତ୍ମା ଗିଲୋଟିନର ପ୍ଲାଟଫରମରେ ଠିଆ ହୋଇ ସୁଦ୍ଧା ଉଚ୍ଚ କଣ୍ଠରେ କହିଥିଲେ—'ମୋର ରକ୍ତ ଯେପରି ଫ୍ରାନ୍ସ ଉପରେ ପତିତ ନହୁଏ ।'

ବର୍ତ୍ତମାନ ରାଜା ଅଷ୍ଟାଦଶ ଲୁଇଙ୍କୁ ତ ସମସ୍ତେ ନିନ୍ଦା କରନ୍ତି; କିନ୍ତୁ ଏହାଙ୍କ ଚରିତ୍ରରେ ବି ଉତ୍କର୍ଷର ନିଦର୍ଶନ ଅଛି । ଯେତେବେଳେ ଏହାଙ୍କର ପୃଷ୍ଠପୋଷକ ରାଜନ୍ୟବର୍ଗ ନେପୋଲିୟନଙ୍କଦ୍ୱାରା ସକଳ ଯୁଦ୍ଧରେ ପରାସ୍ତ ହୋଇ, ତାଙ୍କୁ ଗୁପ୍ତଭାବରେ ହତ୍ୟା କରିବା ନିମନ୍ତେ ପରାମର୍ଶ କରନ୍ତି, ସେତେ-ବେଳେ ଅଷ୍ଟାଦଶ ଲୁଇ ସେଥିରେ ବାଧା ଦେଇ କହିଥିଲେ, 'ଆମମାନଙ୍କର ପରିବାର ମଧ୍ୟରେ ଆମମାନଙ୍କୁହିଁ ଲୋକେ ହତ୍ୟା କରନ୍ତି, ଆମେମାନେ କାହାକୁ ହତ୍ୟା କରି ନଥାଉଁ ।'

ବୋର୍ବନମାନଙ୍କର ଆଉ ଗୋଟିଏ ମହତ୍ ଗୁଣ ଅଛି । ଏମାନଙ୍କର ଧ୍ରୁବ ବିଶ୍ୱାସ, ଫରାସୀ ଜାତି ଏମାନଙ୍କୁ ଭଲ

ପାନ୍ତି । ଏତେ ବଡ଼ ବିପ୍ଳବ ଏମାନଙ୍କର ମୁଣ୍ଡ ଉପରେ ଚାଲିଗଲା; ତଥାପି ଏମାନଙ୍କର ଏହି ବିଶ୍ୱାସ ଦୃଞ୍ଜଲ ନାହିଁ । ଏମାନେ ପ୍ରାଣାନ୍ତରେ ବି ଫରାସୀମାନଙ୍କୁ ରାଜଭକ୍ତିଶୂନ୍ୟ କରନ୍ତି ନାହିଁ । ବୋର୍ବନଗଣ ସେହି ସାଧୁ ଓ ସରଳ ବିଶ୍ୱାସର ବଶବର୍ତ୍ତୀ ହୋଇ ଫ୍ରାନ୍ସ ଛାଡି ଯାନ୍ତି ନାହିଁ—ପ୍ରତ୍ୟାଖ୍ୟାତ ହେଲେହେଁ ପୁନଃ ପୁନଃ ଆସନ୍ତି । କିନ୍ତୁ ଏମାନେ ଯେଉଁ ଦିନ ଜାଣିବେ ଯେ, ଫ୍ରାନ୍ସ ଏମାନଙ୍କୁ ଆଉ ସେହି ଆଦର କରେ ନାହିଁ, ସେ ଦିନ ଏମାନେ ଅମ୍ଳାନବଦନରେ ଗିଲୋଟିନ୍ ଆରୋହଣ କରିବେ । ଅଥବା ସୀନ୍ ନଦୀରେ ପୋତାରୋହଣ କରିବେ । ସେ ତ୍ୟାଗ, ସେ ଉଦାସୀନତା, ସେ ଅଭିମାନ ବୋର୍ବନବଂଶର ସ୍ୱତଃସିଦ୍ଧ ଧର୍ମ ।

ମେରିପୁସ୍—ମହାଶୟ, ଆଜି ଗୋଟିଏ ବିଷୟରେ ବି ମୋର କୌତୂହଳ ହୋଇଅଛି । ଆପଣ କହିଲେ ମୁଁ ପିତୃଭକ୍ତିର ପରାକାଷ୍ଠା ଦେଖାଇଅଛି । ଏହା କଣ ସମ୍ଭବ ? ମୁଁ ଶୁଣିଛି, ଭାରତବର୍ଷରେ ପ୍ରକୃତ ପିତୃଭକ୍ତ ଲୋକ ସକଳ ବାସ କରନ୍ତି । ସେମାନେ ଜୀବଦ୍ଦଶାରେ ମାତାପିତାଙ୍କୁ ଦେବତା ଜ୍ଞାନରେ ପୂଜା କରନ୍ତି ଏବଂ ପ୍ରତି ପକ୍ଷ ବା ମାସ ପରଲୋକଗତ ଗୁରୁଙ୍କର ସ୍ୱର୍ଗ ପ୍ରାପ୍ତି କାମନାରେ ଶ୍ରାଦ୍ଧାଦି ଅନୁଷ୍ଠାନ କରି ମରଜଗତର ବହୁ ଉଚ୍ଚରେ ଅବସ୍ଥାନ କରନ୍ତି । ସେହି ସମସ୍ତ ଋଷିସନ୍ତାନଙ୍କ ତୁଳନାରେ ମୁଁ ତ କିଛି କରି ପାରି ନାହିଁ ।

ବୃଦ୍ଧ ଟିକିଏ ହସି କହିଲେ,—'ବତ୍ସ, ଭାରତରେ ଆଉ ସେ ଦିନ ନାହିଁ । ଭାରତବାସୀମାନେ ଆଜି କାଲି ସେହି ସନାତନ ଧର୍ମ ଭୁଲି ଯାଇଛନ୍ତି । ସେମାନଙ୍କର ପିତୃଭକ୍ତି ଆଜି ରାଜଭକ୍ତିରେ ପର୍ଯ୍ୟବସିତ ହୋଇଅଛି । ତେତିଶି କୋଟି ଲୋକ ବର୍ତ୍ତମାନ କୁତ୍ସିତ ଶିକ୍ଷା, ଆଦର୍ଶ ଓ ଅନୁକରଣ ପ୍ରଭାବରେ ପିତୃଭକ୍ତିହୀନ ହୋଇ ନରକରେ ବୁଡିଛନ୍ତି ।

ପରେ ଦୁହେଁ ସ୍ୱ ସ୍ୱ ସ୍ଥାନକୁ ଗମନ କଲେ । ପ୍ରଭାତ ହେଲା । ଆହାର ଅନ୍ୱେଷଣ ପାଇଁ ମେରୟୁସ୍ ଅନିର୍ଦ୍ଦିଷ୍ଟ ଭାବରେ ବୁଲି ବାହାରିଲେ । ଫୁଟପାଥର (footpath) ଦକ୍ଷିଣ ଧାରରେ ବୁଲୁଥିଲେ, ଏପରି ସମୟରେ ଦେଖି ପାରିଲେ ଯେ, ଗୋଟିଏ ଗୃହରେ କେତେକ ଜଣ ବାଳକ ପରସ୍ପର କଳହ, ମରାମରି କରୁଛନ୍ତି । ଜଣେ ଆକ୍ରାନ୍ତ ଶିଶୁର ବିପଦ ଦେଖି ମେରୟୁସ୍ ଦ୍ରୁତ ପଦରେ ଯାଇ ତାହାକୁ ରକ୍ଷା କଲେ । ଏହି ସମୟରେ ଗୃହସ୍ୱାମୀ ବି ସେଠାରେ ଉପସ୍ଥିତ ହେଲେ । ସେ ମେରୟୁସ୍‌ଙ୍କ ମୁଖରୁ ବାଳକମାନଙ୍କର ଝଗଡ଼ା କଥା ଶୁଣି କହିଲେ—'ମହାଶୟ, ଏହି ବାଳକ-ମାନେ ତ ସହଜରେ ଦୁର୍ଦ୍ଦାନ୍ତ, ତହିଁରେ ପୁଣି ବର୍ତ୍ତମାନ ଏମାନଙ୍କର ଶିକ୍ଷକ ନାହିଁ । ଆପଣ ଏମାନଙ୍କର ଅଧ୍ୟାପନା ଭାର ନେଇ ପାରିବେ ।"

ମେରୟୁସ୍ କହିଲେ, 'ମହାଶୟ ! ଆପଣଙ୍କ ପ୍ରସ୍ତାବରେ ମୁଁ ଅସମ୍ମତ ନୁହେଁ । ତେବେ ମୋ ଦ୍ୱାରା ଏ ପିଲାମାନଙ୍କର କପରି ଶିକ୍ଷା ହେବ କହି ପାରୁ ନାହିଁ । ମୁଁ ପାଠ୍ୟ-ବିଶ୍ୱବିଦ୍ୟାଳୟରେ ଅବଶ୍ୟ ଶିକ୍ଷିତ ହୋଇଅଛି । କିନ୍ତୁ ସେଠାରେ ସକଳ ଶିକ୍ଷାର ମୂଳ ପିତୃଭକ୍ତି ସମ୍ବନ୍ଧରେ ମୁଁ କୌଣସି ଶିକ୍ଷା ପାଇ ନାହିଁ । ମୋ ଭଳି ମାତୃଶିକ୍ଷାବିବର୍ଜ୍ଜିତ ପିତୃଦ୍ରୋହୀ କଦାପି ଶିକ୍ଷକ ପଦର ଯୋଗ୍ୟ ନୁହେ ।'

ଗୃହସ୍ୱାମୀ ବିସ୍ମିତ ଭାବରେ ମେରୟୁସ୍‌ଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ –'ସେ ଯାହା ହେଉ, ଆପଣ ଏହି ବାଳକମାନଙ୍କୁ ପଢ଼ାଇବା ପାଇଁ କେତେ ଫି ନେବେ ?'

ମେରୟୁସ୍—ବେତନ ଗ୍ରହଣ ହାସ୍ୟାସ୍ପଦ । ବର୍ତ୍ତମାନ ମୋ ଆହାରର ସଂସ୍ଥାନ ନାହିଁ । ଆପଣଙ୍କର ଯଦି ଅସୁବିଧା ନହୁଏ, ତାହାହେଲେ ମୁଁ ଏହି ସ୍ଥାନରେ ରହି ଆହାର କରିବାକୁ ଇଚ୍ଛା କରେ ମାତ୍ର ।

ଗୃହସ୍ୱାମୀ ସମ୍ମତ ହେଲେ । ମେରୟୁସ୍ ବାଳକମାନଙ୍କ ଅଧ୍ୟାପନାରେ ପ୍ରବୃତ୍ତ ହେଲେ । ଭଗବାନହିଁ ଅନ୍ନଦାତା ।

*

# ଆଲୋକ ଓ ଅନ୍ଧକାର

ନେପୋଲିୟନ ଓ ତଦୀୟ ପରିବାରବର୍ଗଙ୍କୁ ବୃତ୍ତି ସ୍ୱରୂପ ବାର୍ଷିକ କେତେକ ଲକ୍ଷ ମୁଦ୍ରା ଦେବାକୁ ଅଷ୍ଟାଦଶ ଲୁଇ ପ୍ରତିଶ୍ରୁତ ହୋଇଥିଲେ; କିନ୍ତୁ ତାହାର ଏକ କପର୍ଦ୍ଦକ ସୁଦ୍ଧା ଦେଲେ ନାହିଁ। ଦ୍ୱିତୀୟତଃ ସମ୍ରାଟ୍ ଶୁଣି ପାରିଲେ ଯେ, ବୋର୍ବନଗଣ ପୁନର୍ବାର ପ୍ରଜା-ପୀଡ଼ାରେ ପ୍ରବୃତ୍ତ ହୋଇ ଅଛନ୍ତି। ଏ ଦୁଇ କାରଣରୁ ନେପୋଲିୟନ ସଙ୍କଳ୍ପ କଲେ, ଏଲ୍‌ବାଦ୍ୱୀପରୁ ଫେରି ଦ୍ୱିତୀୟ ଥର ଫ୍ରାନ୍‌ସର ରାଜଦଣ୍ଡ ଧାରଣ କରିବେ।

୧୮୧୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ, ସେ ଛ'ଶତ ମାତ୍ର ଅନୁଯାୟିଙ୍କୁ ସଙ୍ଗେ ନେଇ ଏଲ୍‌ବା ତ୍ୟାଗ କଲେ ଏବଂ ପାଞ୍ଚ ଦିନ ପରେ ନିର୍ବିଘ୍ନରେ ଫ୍ରାନ୍‌ସ-ଉପକୂଳରେ ଅବତରଣ କଲେ। ଏଲ୍‌ବାରୁ ଅଶ୍ୱ ଆଣିବାର ସୁବିଧା ନଥିଲା। ସମସ୍ତେ ପଦବ୍ରଜରେ ଯାତ୍ରାକଲେ। ସେମାନେ ନିକଟବର୍ତ୍ତୀ ପଲ୍ଲୀରେ ଉପନୀତ ହେବା ମାତ୍ରକେ, ସେଠାର କୃଷକଗଣ ସେମାନଙ୍କର ଚତୁଃପାର୍ଶ୍ୱରେ ସମବେତ ହୋଇ ଉଚ୍ଚ କଣ୍ଠରେ "ଭାଇଭ୍ ଏଲ୍ ଏମ୍ପରର" ('ସମ୍ରାଟ୍ ଦୀର୍ଘଜୀବୀ ହୁଅନ୍ତୁ') ବୋଲି ଅଭିନନ୍ଦନ କଲେ।

ସମ୍ରାଟ୍ କହିଲେ, "ମୁଁ ପୁଣି ତୁମମାନଙ୍କ ମଧ୍ୟକୁ ଆସିଲି। ତୁମ-ମାନଙ୍କର ଭକ୍ତି ଓ ପ୍ରେମ ମୋତେ ପୁନର୍ବାର ଏଠାକୁ ଟାଣି ଆଣିଛି। ମୁଁ ବର୍ତ୍ତମାନ ପ୍ୟାରିସ ଯାଉଛି। ତୁମେମାନେ କିଣ ସେହି ବିପଦସଙ୍କୁଳ ପଥରେ ମୋର ଅନୁଗମନ କରିବାକୁ ପ୍ରସ୍ତୁତ ?"

ସମସ୍ତେ ଏକ ବାକ୍ୟରେ ସମ୍ମତ ହେଲେ। ସେମାନେ ଯଥାସମ୍ଭବ ଉତ୍କୃଷ୍ଟ ଅଶ୍ୱ, ଅସ୍ତ୍ରଶସ୍ତ୍ରାଦି ସଂଗ୍ରହ କରି ଆଣିଲେ। ଚତୁଃପାର୍ଶ୍ୱସ୍ଥ ଭଦ୍ରାଭଦ୍ର ସମସ୍ତେ ଆହ୍ଲାଦସହକାରେ ଏହି ଅଦ୍ଭୁତ ଅଭିଯାନର ବ୍ୟୟ-ଭାର ବହନ କଲେ।

ଏହି ଅଚିନ୍ତ୍ୟପୂର୍ବ ବ୍ୟାପାର ଶୁଣି ବୋର୍ବନରାଜ ସାତିଶୟ ଚମକିତ, ବିବ୍ରତ ହୋଇ ପଡ଼ିଲେ। ସେ ସ୍ୱୟଂ ଦୁଇ ଲକ୍ଷ ସୁଶିକ୍ଷିତ ସେନାର

ଅଧିପତି । ତାଙ୍କର ବନ୍ଧୁକ ଓ କମାଣରେ ଫ୍ରାନ୍ସ ଆଚ୍ଛାଦିତ । ବ୍ରହ୍ମାଣ୍ଡ-ବିଜୟୀ ମାର୍ଶାଲ ନେ ଓ ମ୍ୟାକ୍‌ଡ଼ୋନାଲ୍ଡ ତାଙ୍କର ପ୍ରଧାନ ସେନାନୀ । ସମ୍ମିଳିତ ଶକ୍ତିସମୂହର ବିଂଶଲକ୍ଷ ସଙ୍ଗୀନ ତାଙ୍କ ପାଇଁ ପ୍ରସ୍ତୁତ ଅଛି । ଅଥଚ ନେପୋଲିୟନଙ୍କ ପାର୍ଶ୍ୱରେ ସାମାନ୍ୟ ଜନତା ଦେଖି ତାଙ୍କର ଏତେ ଚିନ୍ତା କାହିଁକି ? ନେପୋଲିୟନଙ୍କର ବର୍ତ୍ତମାନ ତ ଅସ୍ତ୍ରଶସ୍ତ୍ର ନାହିଁ, ରସଦ ବା ପରିଚ୍ଛଦ ନାହିଁ । ରାଜାଙ୍କର ଏ ଭାବନା କାହିଁକି ?

ଲୁଇଂକର ଚିନ୍ତା ସେଥିପାଇଁ ନୁହେଁ । ସେ ଭାବୁଛନ୍ତି, ଫ୍ରାନ୍ସର ଯେ ଅନିଷ୍ଟ କରିଅଛି ତାହାର ବୋଧହୁଏ ବର୍ତ୍ତମାନ ପ୍ରାୟଶ୍ଚିତ୍ତ କାଳ ଉପସ୍ଥିତ । ପାପାତ୍ମାନ୍ତ ବିବେକର ତାଡ଼ନା ହେବାର କଥା । ମ ପଦୁଷ୍ଟ ହୃଦୟରେ ଯେ ଶାନ୍ତିର ସ୍ଥାନ ନାହିଁ ।

ଲୁଇ ରାଷ୍ଟ୍ର ମଧ୍ୟରେ ଘୋଷଣା କଲେ, 'ନେପୋଲିୟନ ରାଜ-ଦ୍ରୋହୀ—ପୁନର୍ବାର ଫ୍ରାନ୍ସର ଶାନ୍ତିଭଙ୍ଗ କରିବାକୁ ଆସିଛନ୍ତି । ତାଙ୍କୁ ବଧ କରିବାର ଅଧିକାର ଫ୍ରାନ୍ସର ପ୍ରତ୍ୟେକ ଲୋକକୁ ଦିଆ ଯାଉଅଛି । ଯେଉଁମାନେ ତାଙ୍କ ପକ୍ଷ ଅବଲମ୍ବନ କରିଛନ୍ତି, ସେମାନେ ବି ରାଜଦ୍ରୋହ ଅପରାଧରେ ପ୍ରାଣଦଣ୍ଡ ପାଇବେ ।'

ନେପୋଲିୟନଙ୍କ ମସ୍ତକର ମୂଲ୍ୟ ଦୁଇ କୋଟି ଫ୍ରାଙ୍କ ନିର୍ଦ୍ଧାରିତ ହେଲା । ସାଗରଉପକୂଳରୁ ପାରୀ ପର୍ଯ୍ୟନ୍ତ ସାତ ଶତ ମାଇଲ ମାର୍ଗରେ ମାନମାସ୍ତ ରୟୁଲିଷ୍ଟଗଣ ଉଲ୍ଲିଖିତ ପୁରସ୍କାର ଲାଭଆଶାରେ ବିକ୍ଷିପ୍ତ ହୋଇ-ଗଲେ । ଦେଶର ପ୍ରଧାନ ପ୍ରଧାନ ସହରରେ ନେପୋଲିୟନଙ୍କର ଗତି-ରୋଧ କରିବା ସକାଶେ ସେନାପତିମାନେ କଠୋର ରାଜାଦେଶ ପ୍ରାପ୍ତ ହେଲେ ।

ନେପୋଲିୟନ ଗ୍ରୋନୋବଲ ନାମକ ସ୍ଥାନରେ ଉପନୀତ ହୋଇ ଦେଖିଲେ, ଜେନେରଲ ମାର୍କାଣ୍ଡ ଛ' ହଜାର ସୈନ୍ୟ ନେଇ ତାଙ୍କର ଗତିରୋଧରେ ପ୍ରୟାସୀ ହୋଇଅଛନ୍ତି । ସେ ଅନୁଯାତ୍ରିକଗଣଙ୍କୁ ବିଶ୍ରାମ କରିବାକୁ ଆଦେଶ ଦେଇ, ଏକାକୀ ଅଶ୍ୱପୃଷ୍ଠରେ ମାର୍କାଣ୍ଡଙ୍କର ସୈନ୍ୟ-

ବ୍ୟୂହ ନିକଟବର୍ତ୍ତୀ ହେଲେ । ମାର୍କାଣ୍ଡଙ୍କର ଆଦେଶରେ ତାଙ୍କର ସୈନିକମାନେ ନେପୋଲିୟନଙ୍କର ବକ୍ଷକୁ ଲକ୍ଷ୍ୟ କରି ଛ' ସହସ୍ର ବନ୍ଧୁକ ଧରି ଠିଆ ହୋଇଗଲେ । ନେପୋଲିୟନ ଅଶ୍ୱପୃଷ୍ଠରୁ ଅବତରଣ କରି ପଦବ୍ରଜରେ ଅଗ୍ରସର ହେବାକୁ ଲାଗିଲେ । ତାଙ୍କର ଦକ୍ଷିଣ ଓ ବାମ ପାର୍ଶ୍ୱରେ ଏକ ଲକ୍ଷ ଦର୍ଶକ ରୁଣ୍ଡ ହୋଇ, ତାଙ୍କର ସାହସ ଦେଖି ଚମତ୍କୃତ ପ୍ରାୟ ଠିଆ ହେଲେ । ବୋବନ୍ ସେନାପତି 'ଫାୟାର୍ ଫାୟାର୍' ବୋଲି ଉଚ୍ଚସ୍ୱରରେ ଚୀତ୍କାର କରିବାକୁ ଲାଗିଲେ । ନେପୋଲିୟନ ଅଚଳ ଅଟଳ ଭାବରେ ଠିଆ ହୋଇ ବାମ ହସ୍ତରେ ଟୋପି ଧରି, ଦକ୍ଷିଣ ହସ୍ତରେ କୋଟର ବୋତାମ ଖୋଲି ଖୋଲି କହିଲେ, "ଯୋଦ୍ଧୃଗଣ, ଯଦି ତୁମମାନଙ୍କ ମଧ୍ୟରେ ଏପରି କେହି ଥାଏ ଯେ, ତାହାର ପିତୃ ବକ୍ଷରେ ଗୁଳି କରି ପାରେ, ତାହାକୁ ମୁଁ ବି ଆଦେଶ କରୁଛି 'ଫାୟାର୍' । ହେଇଟି ମୁଁ ବକ୍ଷ ଉନ୍ମୁକ୍ତ କରି ଦେଉଛି, ଚଳାଅ ଗୁଳି ।"

ନୈତିକ ବଳର କି ଅନିର୍ବଚନୀୟ ମହିମା ! ନେପୋଲିୟନଙ୍କର ସେହି ଗମ୍ଭୀର ବଚନ ଶୁଣିବାକ୍ଷଣି, ସୈନିକମାନଙ୍କର ହସ୍ତସ୍ଥିତ ବନ୍ଧୁକ ସକଳ ଯେପରି ଲଜ୍ଜାରେ ମସ୍ତକ ଅବନତ କରି ପକାଇଲେ । ଦେଖୁଁ ଦେଖୁଁ ଛ' ସହସ୍ର ସଙ୍ଗୀନ ମୃତ୍ତିକା ସ୍ପର୍ଶ କଲା । ପୁନର୍ବାର ବନ୍ଧୁକ ଉଠାଇବା କାରଣ ମାର୍କାଣ୍ଡ ସୈନିକମାନଙ୍କୁ ପୁନଃ ପୁନଃ ଉତ୍ସାହିତ କରିବାକୁ ଲାଗିଲେ । ଆଶ୍ଚର୍ଯ୍ୟର ବିଷୟ, ତାଙ୍କ ଆଦେଶର ପ୍ରତ୍ୟୁତ୍ତରରେ, ଛ' ସହସ୍ର କଣ୍ଠରୁ ଉତ୍ଥିତ ହେଲା 'ଭାଇଭ୍ ଏଲ ଏମ୍ପେରର୍' ରୂପ ମହାନ୍ ଗମ୍ଭୀର ନିନାଦ । ଅପାପ-ବିଦ୍ଧ ବିବେକର ସତେ କି ଅସାଧାରଣ ଶକ୍ତି ! ସେହି ଗମ୍ଭୀର ଧ୍ୱନି ସମବେତ ଲକ୍ଷାଧିକ ମୁଖରେ ପ୍ରତିଧ୍ୱନିତ ହୋଇ ବୋବନର ଅନ୍ତ୍ୟେଷ୍ଟିକାଳ ଜ୍ଞାପନ କରିବାକୁ ଲାଗିଲା । ବୀର-କୁଳ-ଚୂଡ଼ାମଣି ମାର୍କାଣ୍ଡ ପ୍ରାଣ ଭୟରେ ସେଠାରୁ ପଳାୟନ କଲେ ।

ମାର୍ଚ୍ଚ ତା ୧୦ ରିଖ ଅପରାହ୍ଣରେ ନେପୋଲିୟନ୍ ରୋନ୍ ନଦୀର ସେତୁ ନିକଟରେ ଯାଇ ପହଞ୍ଚିଲେ । ଏହି ସେତୁ ଅତିକ୍ରମ କରି ଲିୟନ୍ସ ନଗରରେ ପ୍ରବେଶ କରିବାକୁ ହେବ । ସେହି ସଙ୍କୀର୍ଣ୍ଣ ସେତୁ-ପଥରେ

ଭୁବନବିଜୟୀ ମ୍ୟାକ୍‌ଡୋନାଲ୍‌ଡ଼ ଦଶ ସହସ୍ର ଗୋଲନ୍ଦାଜ ସଙ୍ଗେ ଅବସ୍ଥିତ କରିଅଛନ୍ତି । ନେପୋଲିୟନଙ୍କୁ ସମୀପବର୍ତ୍ତୀ ହେବାର ଦେଖି, ତାଙ୍କର ସୈନ୍ୟମାନେ 'ସମ୍ରାଟ ଦୀର୍ଘଜୀବୀ ହୁଅନ୍ତୁ' ବୋଲି ଚିତ୍କାର କରି ଉଠିଲେ । ମ୍ୟାକ୍‌ଡୋନାଲ୍‌ଡ଼ ବିଷମ ସମସ୍ୟାରେ ପଡ଼ିଲେ । ଶେଷରେ ସେ ଅସ୍ତ୍ରକୁ କୋଷାବୃତ କରିବାଇ ଶ୍ରେୟସ୍କର ମନେ କଲେ ।

ସମ୍ରାଟ ନିର୍ବିଘ୍ନରେ ଲିୟନ୍‌ସ ନଗରରେ ପ୍ରବେଷ୍ଟ ହେଲେ । ନଗରଟି ସେତେବେଳେ ଅପରୂପ ଶୋଭା ଧାରଣ କଲା । ସୁଦୀର୍ଘ ରାଜପଥର ଉଭୟ ପାର୍ଶ୍ୱରେ ଅସଂଖ୍ୟ ଦ୍ୱିତଳ, ତ୍ରିତଳ ଭବନର ପ୍ରତ୍ୟେକ ବାତାୟନରେ, ଫରାସୀ ରମଣୀଗଣ ସ୍ମିତହାସ୍ୟ–ରଞ୍ଜିତ ବଦନରେ ତାଙ୍କର ଅଭିନନ୍ଦନ କରିବାକୁ ଲାଗିଲେ । କେହି କେହି ଗବାକ୍ଷପଥରେ ମୃଣାଳ-ଧବଳ ହସ୍ତ ପ୍ରସାରିତ କରି ସାମ୍ରାଜ୍ୟ ପତାକା ସ୍ୱରୂପ ବିବିଧ ବର୍ଣ୍ଣର ରୁମାଲ ଝୁଲାଇଲେ । ଚତୁର୍ଦ୍ଦିଗରୁ ପୁଷ୍ପବୃଷ୍ଟି ହେଲା । ଜାତୀୟ ଅଭ୍ୟର୍ଥନା ସଙ୍ଗୀତ ଧ୍ୱନି ମୁହୂର୍ମୁହୁ 'ଭାଇଭ୍ ଏଲ ଏମ୍ପାୟାର୍' ନିନାଦ ସହିତ ମିଳିତ ହୋଇ ଉଠିଲା । ଦେଖୁଁ ଦେଖୁଁ ସନ୍ଧ୍ୟା ସମାଗତ ହେଲା । ମନୋରମ ଲିୟନ୍‌ସ ନଗରୀ ଅମନ୍ଦ ଆଲୋକମାଳାରେ ସୁସଜ୍ଜିତ ହୋଇ ଅଧିକ ମନୋହର ହୋଇ ଉଠିଲା । ନେପୋଲିୟନ ମହା ସମାରୋହରେ ସେଠାର ଆର୍କ-ବିଶପ୍‌ଙ୍କ ପ୍ରାସାଦକୁ ନୀତ ହେଲେ ।

ଅର୍ଦ୍ଧପଥ ଅତିକ୍ରାନ୍ତ ହୋଇଅଛି । ବର୍ତ୍ତମାନ ଶଙ୍କାର କାରଣ ରହିଲେ ଏକମାତ୍ର ମାର୍ଶାଲ୍ ନେ । ନେ ସେନା ପରିଦର୍ଶନ କଲେ, ଶୁଣିଲେ ସର୍ବତ୍ର 'ଭାଇଭ୍ ଏଲ୍ ଏମ୍ପାୟାର' ଧ୍ୱନି ଉଠୁଅଛି । ସେ ନୀରବରେ ଶିବିରକୁ ପ୍ରତ୍ୟାଗମନ କଲେ । ଗ୍ରୋନୋବଲ ଓ ଲିୟନ୍‌ସ୍ ଇତ୍ୟାଦି ସ୍ଥଳରେ ସମ୍ରାଟଙ୍କର କିପରି ଅଭ୍ୟର୍ଥନା ହୋଇ ଯାଇଛି, ସେ କଥା ବି ତାଙ୍କର କର୍ଣ୍ଣ ଗୋଚର ହେଲା । ନେପୋଲିୟନଙ୍କ ପ୍ରତି ଫରାସୀ ଜାତିର କିପରି ଅନୁରାଗ ଓ ଭକ୍ତି ତାହା ବି ସେ ଭାବି ଦେଖିଲେ । ଅଧୀନସ୍ଥ କର୍ମଚାରୀଙ୍କୁ ଡାକି ମତାମତ ଜିଜ୍ଞାସା କଲେ । ସମସ୍ତେ ଏକ ବାକ୍ୟରେ କହିଲେ, 'ସମ୍ରାଟଙ୍କ ଗତିରୋଧ କରିବା ଅସମ୍ଭବ ।'

ନେ ଆହୁରି ଗମ୍ଭୀର ଭାବ ଧାରଣ କଲେ । ଷଷ୍ଟି ସହସ୍ର ସୈନ୍ୟର ପ୍ରୀତିଭଙ୍ଗ କରିବାକୁ ତାଙ୍କର ପ୍ରବୃତ୍ତି ହେଲା ନାହିଁ । ସମଗ୍ର ଫରାସୀ ଜାତିର ବିପକ୍ଷତା କରିବାକୁ ତାଙ୍କର ପ୍ରାଣ କାନ୍ଦିଉଠିଲା । ବୋର୍ବନ ପକ୍ଷ ପରିତ୍ୟାଗ କରିବା ଶ୍ରେୟସ୍କର ମନେ କରି, ସେ ଅତି ଶୀଘ୍ର ସୈନିକ-ମାନଙ୍କୁ ସମ୍ରାଟଙ୍କର ପ୍ରତ୍ୟୁଦ୍‌ଗମନ କରିବା ନିମନ୍ତେ ଆଦେଶ ଦେଲେ । ସେହି ଆଦେଶ ସୈନ୍ୟଗଣକର୍ତ୍ତୃକ ମହୋଲ୍ଲାସରେ ଗୃହୀତ, ପାଳିତ ହେଲା । ତେବେ ମାର୍ଶାଲଙ୍କ ଚରିତ୍ରରେ ବିଶ୍ୱାସଭଙ୍ଗର ଦାରୁଣ କଳଙ୍କ ଅଙ୍କିତ ହୋଇଗଲା ।

ନେ ଅକ୍‌ସିୟର ନାମକ ସ୍ଥାନରେ ନେପୋଲିୟନଙ୍କ ସହିତ ସାକ୍ଷାତ୍ କଲେ । ସେ ଛଳଛଳ ନେତ୍ରରେ ସମ୍ରାଟଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ, "ମୁଁ କେବେ ଆପଣଙ୍କୁ ଛାଡି ଯାଇ ନାହିଁ । ମୁଁ ଚିରଦିନ ଜାତି ପାଇଁ ଲଢ଼ିଛି—ଆଜି ମଧ୍ୟ ଜାତିପ୍ରତି ସ୍ୱାର୍ଥ ତ୍ୟାଗ କରି ପାରିଲି ନାହିଁ ।"

ନେପୋଲିୟନ ନେଙ୍କର ମୁଖ ଦେଖି ଭଲ କରି ବୁଝି ପାରିଲେ ଯେ, ତାଙ୍କ ହୃଦୟରେ ଶାନ୍ତି ନାହିଁ, ହୃଦୟର ଅନ୍ତସ୍ଥଳରେ ଯେପରି ଭୀଷଣ-ସଂଗ୍ରାମ ଚାଲିଅଛି । ପ୍ରସନ୍ନ ବଦନରେ କହିଲେ, 'ନେ, ମୁଁ ତୁମର ମନ ଓ ହୃଦୟ ବେଶ୍ ଜାଣେ—ତୁମ ନିକଟରୁ କୌଣସି କୈଫିୟତ୍ ଚାହୁଁ ନାହିଁ । ତୁମେ ମୋର ବନ୍ଧୁ, ବହୁ ଦିନ ପରେ ତୁମ ସହିତ ଦେଖା ହେଲା—ମୋତେ ଥରେ ଆଲିଙ୍ଗନ କର ।'

ନିମେ ନେପୋଲିୟନ ଫଣ୍ଟେନବ୍ଲୁର ପ୍ରାସାଦ ଅଧିକାର କରି ନେଲେ । ଏହି ସ୍ଥାନରୁ ପ୍ୟାରି ତିନି ଘଣ୍ଟାରୁ ହୋଇରୁ ଅଧିକ ନୁହେ । ନେପୋଲିୟନ ପଥରେ କଣ୍ଟକ ଆଶଙ୍କା କରିଥିଲେ—ପ୍ୟାରିରେ କିନ୍ତୁ ତାଙ୍କର କୌଣସି ଆଶଙ୍କା ନଥିଲା । ସେ ପ୍ୟାରିର ସୈନ୍ୟମାନଙ୍କୁ ଭଲ କରି ଚିହ୍ନି ଥିଲେ । ସେମାନେ ବି ତାଙ୍କୁ ଭଲ କରି ଚିହ୍ନି ଥିଲେ ।

ଲୁଇଙ୍କ ଆଦେଶରେ ପ୍ୟାରି ନିକଟରେ ଏକ ଲକ୍ଷ ସେନା ରୁଣ୍ଡ ହେଲେ । ଶାଣିତ କୃପାଣହସ୍ତରେ ଦଶ ସହସ୍ର ଅଶ୍ୱାରୋହୀ ଓ କାଳାନ୍ତକ

ଯମୋପମ ଏକ ସହସ୍ର କମାଣ ଯଥାସ୍ଥାନରେ ସନ୍ନିବେଶିତ ହେଲ। ପାରି ଅନଧିଗମ୍ୟ ଭାବ ଧାରଣ କଲା। ତିନି ଚାରି ମାଇଲ ମାର୍ଗ ମଧ୍ୟରେ ବୋର୍ବନର ବିପୁଳ ବାହିନୀ ଓ ଅସଂଖ୍ୟ ଦର୍ଶକ ସମବେତ ହେଲେ।

ସନ୍ଧ୍ୟାଆଗରୁ ସମ୍ରାଟଙ୍କର ଶକଟ, ଫଣ୍ଟେନବ୍ଲୁର ବନମଧ୍ୟ ପାର୍ବତ୍ୟ ପଥ ଅତିକ୍ରମ କରି, ପ୍ରାନ୍ତରରେ ଉପନୀତ ହେଲା। ନେପୋଲିୟନ, ଜନତାଧିକ୍ୟ ଯୋଗେ ଦୁର୍ଘଟଣା ଆଶଙ୍କା କରି ମାର୍ଶାଲଙ୍କ ତତ୍ତ୍ୱାବଧାନରେ ଲକ୍ଷାଧିକ ସୈନ୍ୟ ଓ ଅସଂଖ୍ୟ ଅନୁଯାୟିକଙ୍କୁ ଦଶ ମାଇଲ ପଛରେ ରଖି ଆସିଥିଲେ। ତାଙ୍କର ଏହି ବିଶ୍ୱ-ବିମୋହନ ଅଭିଯାନରେ ଏ ପର୍ଯ୍ୟନ୍ତ ଶତ୍ରୁ ମିତ୍ର ମଧ୍ୟରେ କାହାରି ହେଲେ ଏକ ବିନ୍ଦୁ ରକ୍ତପାତ ବି ହୋଇ-ନାହିଁ। ତାଙ୍କ ଶକଟର ଉଭୟ ପାର୍ଶ୍ୱରେ କେତେକ ଜଣ ପୋଲାଣ୍ଡବାସୀ ବାଡ଼ିଗାର୍ଡ଼ (ଶରୀରରକ୍ଷୀ ସେନା) ଓ ପଶ୍ଚାଦ୍‌ଭାଗରେ ତିରିଶ ଜଣ ଅଶ୍ୱା-ରୋହୀ ବ୍ୟତୀତ ଅନ୍ୟ କୌଣସି ସମ୍ବଳ ନଥିଲା। ଏହି ମୁଷ୍ଟିମେୟ ଲୋକଙ୍କୁ ସଙ୍ଗେ ନେଇ ସେ ଇଉରୋପର ସର୍ବାପେକ୍ଷା ଗର୍ବିତ ରାଜଧାନୀ ଓ ଦୁର୍ଭେଦ୍ୟ ଦୁର୍ଗ ଦଖଲ କରିବାକୁ ଆସିଥିଲେ।

ସମ୍ରାଟଙ୍କର ଶକଟ ଯେତିକି ନିକଟବର୍ତ୍ତୀ ହେବାକୁ ଲାଗିଲା ପ୍ରାନ୍ତରର ଲୋକାରଣ୍ୟ ସେତିକି ନୀରବ, ନିସ୍ତବ୍ଧ ଭାବ ଧାରଣ କରିବାକୁ ଲାଗିଲା। ବୋର୍ବନ ସେନାପତିମାନଙ୍କର କମ୍ପିତ କଣ୍ଠରେ ଉଚ୍ଚାରିତ ଦୁଇ ଚାରୋଟି ଉତ୍ସାହବାକ୍ୟ ଭିନ୍ନ ସେହି ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଅନ୍ୟ କୌଣସି ଶବ୍ଦ ଶୁଣା ଯାଉ ନଥିଲା। ବିଶ୍ୱସ୍ତ ବୋର୍ବନ ସେନାନୀଗଣ 'ଗୁଳି ଚଳାଅ, ଗୁଳି ଚଳାଅ' ବୋଲି ଚୀତ୍କାର କରି ଉଠିଲେ। ନେପୋଲିୟନ ନିଜ ଶକଟ ଉପରେ ଠିଆ ହେଲେ। ତାଙ୍କର ଅପୂର୍ବ ଶିରସ୍ତ୍ରାଣ ଓ ଧୂସରବର୍ଣ୍ଣ ପରିଚ୍ଛଦ ଦେଖି, ସମବେତ ଲୋକମାନେ ତାଙ୍କୁ ଚିହ୍ନି ପାରିଲେ। ବୋର୍ବନ ସେନାଗଣ କ୍ଷଣକାଳ ହତବୁଦ୍ଧି ହୋଇ ଠିଆ ହେଲେ, ପରେ ଆତ୍ମବିସ୍ମୃତ ଭାବରେ ସମସ୍ୱରରେ 'ଭାଇଭ୍ ଏଲ୍ ଏମ୍ପାରର୍' ବୋଲି ଚୀତ୍କାର କରି ଉଠିଲେ। ସେହି ଦାରୁଣ ନିନାଦ ମୁହୂର୍ତ୍ତକ ମଧ୍ୟରେ ସମଗ୍ର ପ୍ରାନ୍ତରରେ ବ୍ୟାପ୍ତ ହୋଇ, ପାରି-ରାଜଭବନରେ ବୋର୍ବନ ରାଜାଙ୍କର କର୍ଣ୍ଣକୁହରରେ ପ୍ରବେଶ କଲା। କିଛିକ୍ଷଣ ପରେ

ଟୁଇଲରିସରୁ ସୀନ ପର୍ଯ୍ୟନ୍ତ ସୁଦୀର୍ଘ ପଥରେ ଶତ ଶତ ଶକଟର ଧୀର ଗମ୍ଭୀର ଗତିରେ ରାଜପରିବାରର ବିଶାଳ ଅନ୍ତ୍ୟେଷ୍ଟି ଯାତ୍ରା ପ୍ରଣ୍ଠାପ୍ରୁମାନ ହେଲା ।

ପାରିସର କି ଅପୂର୍ବ ଅବସ୍ଥା ! ପାରିସର ଏକ ଦିଗରେ ବୋନାପାର୍ଟିଷ୍ଟ ରୂପ ସୂର୍ଯ୍ୟର ଉଦୟ, ଅନ୍ୟ ଦିଗରେ ବୋର୍ବନ ରୂପ ତାମସୀ ନିଶାର ଅବସାନ । ଏକ ଦିଗରେ ଆଲୋକ, ଅନ୍ୟ ଦିଗରେ ଅନ୍ଧକାର—ଏକ ଦିଗରେ ଜୟଧ୍ୱନି, ଅନ୍ୟ ଦିଗରେ ରୋଦନ— ଏକ ଦିଗରେ ତୁମୁଳହର୍ଷ-ନିନାଦିତ ଆବାହନ, ଅପର ଦିଗରେ ନୀରବ ବିଷାଦମୟ ବିସର୍ଜନ । ପାରି ଦ୍ୱାରରେ ଉପନୀତ ହୋଇ ନେପୋଲିୟନ ଗମ୍ଭୀର ସ୍ୱରରେ କହିଲେ, "ଫରାସୀଗଣ, ମୁଁ ତୁମମାନଙ୍କର ଭକ୍ତି ଓ ଶ୍ରଦ୍ଧାରେ ଆକୃଷ୍ଟ ହୋଇ ଏଲ୍ବାରୁ ଆସିଅଛି । ସାଗର ତୀରରୁ ପାରି ପର୍ଯ୍ୟନ୍ତ, ସାତ ମାଇଲ ପଥରେ, ତୁମମାନଙ୍କର ସାଦର ସମ୍ଭାଷଣ ଓ ସୌଜନ୍ୟରେ ମୁଁ ପରମ ପରିତୋଷ ଲାଭ କରୁଅଛି । ତୁମେମାନେ ତୁମମାନଙ୍କର ସ୍ୱହସ୍ତ-ଗଠିତ ସାମ୍ରାଜ୍ୟର ପୁନଃ ପ୍ରତିଷ୍ଠା ସଙ୍କଳ୍ପ କରି ସ୍ଥିରପ୍ରତିଜ୍ଞ ଫରାସୀ ଜାତିର ଗୌରବ ରକ୍ଷା କରିଅଛ । ମୁଁ ବହୁ କାଳ ତୁମମାନଙ୍କ ମଧ୍ୟରେ ରାଜତ୍ୱ କରିଛି । ତୁମେମାନେ ମୋତେ ପୁନର୍ବାର ଫ୍ରାନ୍ସର ରାଜଦଣ୍ଡ ଅର୍ପଣ କରିଥିବାରୁ ମୋ ମନରେ ଯେତେ ଆନନ୍ଦ ଜନ୍ମିଅଛି, ଏହି ସୁଦୀର୍ଘ ଓ ବିପଦସଙ୍କୁଳ ଅଭିଯାନରେ ଶତ୍ରୁ ମିତ୍ର ମଧ୍ୟରେ ଏକ ବିନ୍ଦୁ ବି ରୁଧିରପାତ ହୋଇ ନଥିବାରୁ ମୁଁ ତତୋଧିକ ଆନନ୍ଦ ଅନୁଭବ କରିଅଛି । ବର୍ତ୍ତମାନ ତୁମମାନଙ୍କ ନିକଟରେ ମୋର ଅନୁରୋଧ—ଯେଉଁ ସକଳ ବୋର୍ବନ ସନ୍ତତି ନିରର୍ଥକ ଉପଦ୍ରୁତ ହୋଇ ପଳାୟନ କରୁଛନ୍ତି, ସେମାନଙ୍କ ପ୍ରତି କୌଣସି ପ୍ରକାର ଅତ୍ୟାଚାର ଯେପରି ନହୁଏ, ସେଥିପ୍ରତି ଦୃଷ୍ଟି ରଖିବ । ପରନ୍ତୁ ଯେଉଁ ରୟୁଲିଷ୍ଟମାନେ ଆମମାନଙ୍କ ପ୍ରତି ବିଦ୍ୱେଷ ନଦେଖାଇ ଶାନ୍ତ ଭାବରେ ରହିବେ, ସେମାନେ ଆମ ନିକଟରୁ ଉପଯୁକ୍ତ ସମ୍ମାନ ଓ ସଦ୍ବ୍ୟବହାର ଆଶା କରି ପାରିବେ ।'

ଏଲ୍ବାରୁ ନେପୋଲିୟନଙ୍କର ଆଗମନ ଏବଂ ଦ୍ୱିତୀୟ ଥର ଫ୍ରାନ୍ସର ରାଜଦଣ୍ଡ-ଧାରଣ ଜଗତର ଇତିହାସରେ ଅଦ୍ୱିତୀୟ ଘଟଣା ।

ଗୋଟିଏ ମାତ୍ର ମନ ସମଗ୍ର ଜାତିର ମନକୁ ବାନ୍ଧି ପାରେ କିମ୍ବା ଗୋଟିଏ ମାତ୍ର ହୃଦୟତନ୍ତ୍ରୀ ତିନି କୋଟି ହୃଦୟ ସମସ୍ୱରରେ ବଜାଇ ପାରେ—ଜଗତରେ ଏପରି ଦୃଷ୍ଟାନ୍ତ ଆଉ ନାହିଁ । ଯେଉଁ ଶକ୍ତିରେ ନେପୋଲିୟନ ଏହି ଦୁରୂହ କାର୍ଯ୍ୟ ଅନାୟାସରେ ସମ୍ପନ୍ନ କଲେ, ସେହି ଶକ୍ତି କଳ୍ପନାର ଅତୀତ । ଅଥବା ସେହି ଶକ୍ତି—ସେହି ଅଚିନ୍ତ୍ୟଶକ୍ତି ଭଗବାନଙ୍କର ଉଦ୍ଦେଶ୍ୟ ବିଶେଷ ଭାବରେ ସମ୍ପାଦିତ କରିବା ପାଇଁ ନରଦେହରେ ପ୍ରଦତ୍ତ ହୋଇ-ଥିଲା । ଈଶ୍ୱରଙ୍କ ସୃଷ୍ଟିରେ ଏତେ ବଡ଼ ଲୋକ ଆଉ କେବେ ଜନ୍ମ ଗ୍ରହଣ କରି ନାହିଁ ।

ବୋର୍ବନମାନେ ଫ୍ରାନ୍‌ସ ନିକଟରୁ ବିଦାୟ ନେଲେ । ସେମାନଙ୍କୁ ବିଦାୟ ଦେବାବେଳେ କେହି କିଛି ହେଲେ କଷ୍ଟ ଅନୁଭବ କଲେ ନାହିଁ—କେହି ସେମାନଙ୍କର ଅସମ୍ମାନ ବି କଲେ ନାହିଁ । ଫରାସୀ ପ୍ରଜାମାନେ ବୋର୍ବନଗଣଙ୍କୁ ବିଦାୟକାଳୀନ ପ୍ରଣାମ କଲେ, କିନ୍ତୁ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲେ ନାହିଁ । ସେହି ନୀରବ ଗମ୍ଭୀର ବିଦାୟ-ଯାତ୍ରା କୌଣସି ଫରାସୀ ହୃଦୟରେ ପ୍ରୀତି ବା ଆନନ୍ଦର ଉଦ୍ରେକ କରି ପାରିଲା ନାହିଁ—ଘୃଣା ବା ବିଦ୍ୱେଷର ବି ସଞ୍ଚାର କଲା ନାହିଁ । 'ଈଶ୍ୱର ସବୁ କରି ପାରନ୍ତି,' ଏହି ଗଭୀର ତତ୍ତ୍ୱ କିନ୍ତୁ ସର୍ବତ୍ର ଉଦ୍‌ବୋଧିତ ହେବାକୁ ଲାଗିଲା ।

*

## ସ୍ୱର୍ଗର ଅତିଥି

ଏହି ଅଭିଯାନ ସଙ୍ଗେ ସେ ଦିନ ଜଣେ ଦୁଃଖୀ ଦରିଦ୍ର ଫରାସୀ ସନ୍ତାନ ଆସିଥିଲା । ତାହାର ଆକାର ପ୍ରକାର ଦେଖି ବୋଧ ହେଉଥିଲା, ଯେପରି ତାହା ପରି ଦୁଃଖୀ ଏ ଜଗତରେ ଆଉ କେହି ନାହିଁ । ତାହାର ସୁଦୀର୍ଘ ବଳିଷ୍ଠ ଦେହରେ ଛିନ୍ନ ମଳିନ ବସ୍ତ୍ର, ପାଦରେ ଛିନ୍ନ ପାଦୁକା, ମୁଣ୍ଡରେ ଶତ ଛିନ୍ନ ଟୋପୀ, ପୃଷ୍ଠରେ ଗୋଟିଏ କ୍ଷୁଦ୍ର ଥଳି ଲମ୍ବିତ, ଦକ୍ଷିଣ ହସ୍ତରେ ଖଣ୍ଡିଏ ବୃହତ୍ ଯଷ୍ଟି । ତାହାର ବୟସ ପ୍ରାୟ ପଚିଶ ବର୍ଷ । ତାହାର ନାମ ଜନ୍-ଭଲ-ଜନ୍ ।

ଜନ୍‌ର ମୁଖର ଭାବ ଦେଖି ଭିତର ସଞ୍ଚାର ହେଉଥିଲା—ହଠାତ୍ ଦେଖିଲେ ବୋଧ ହେଉଥିଲା, ସେ ଯେପରି ହୋଉଟର ସୁରାପାନ କରିଅଛି, ତାହାର ମସ୍ତକ ସେହି କାରଣରୁ ଘୂର୍ଣ୍ଣିତ ଏବଂ ଚକ୍ଷୁରୁ ଅଗ୍ନିସ୍ଫୁଲିଙ୍ଗ ନିର୍ଗତ ହେଉଅଛି । ପ୍ରକୃତ ପକ୍ଷରେ କିନ୍ତୁ ସେ ସୁରାପାନ କରି ନାହିଁ— ସେ ଗୃହହୀନ ହେଲା କିଛି ଆହାର କରି ନାହିଁ, ପଥଶ୍ରମରେ କ୍ଳାନ୍ତ ଶ୍ରାନ୍ତ । ତାହାର ପକେଟରେ ଯଥାସର୍ବସ୍ୱ ଷୋଳଣିଟି ପଇସା ଥିଲା । ଜନ୍ ଲିପ୍‌ସନ୍‌ସ୍-ଠାରୁ ଅଭିଯାନରେ ଯୋଗ ଦେଇଥିଲା, ଅନ୍ୟ କୌଣସି ଉଦ୍ଦେଶ୍ୟରେ ନୁହେଁ, ଦିବସ ଶେଷରେ ଖଣ୍ଡିଏ ରୁଟି ଓ ଏକ ଗ୍ଲାସ ମଦିରା ପାଇବା ଉଦ୍ଦେଶ୍ୟରେ ।

ରାତ୍ରି ଆଗତ ହେଲା, ବରଫପାତ ଆରମ୍ଭ ହେଲା । ସେ କୌଣସି ସ୍ଥାନରେ ବିଶ୍ରାମ ନେବା ଦରକାର, ନଚେତ୍ ଜୀବନ ରକ୍ଷା ଅସମ୍ଭବ । ଜନ୍ ବସା ଖୋଜିବାକୁ ଲାଗିଲା । ଆଶା କରିଥିଲା, ଆଜି ଏହି ଉତ୍ସବ ଦିବସରେ କେହି ତାହାକୁ ଯତ୍ନ ଆଦରରେ ଖୁଆଇବ । ସମ୍ରାଟଙ୍କର ସମ୍ମାନାର୍ଥ ଅନେକ ସ୍ଥାନରେ ଭୋଜି ଦିଆ ହେଉଥିଲା । କିନ୍ତୁ କେହି ହେଲେ ଜନ୍‌କୁ ଡାକି ଆଶ୍ରୟ ବା ଆହାରାଦି ଦେବାକୁ ପ୍ରସ୍ତୁତ ନୁହେଁ । ତାହାକୁ ଦେଖିବାକ୍ଷଣି ସମସ୍ତେ ଭୟରେ ଦୂରକୁ ପଳାଉନ୍ତି, କାହାର ଗୃହରେ ପ୍ରବେଶ କରିବାକୁ ଇଚ୍ଛା କଲେ ଗୃହସ୍ୱାମୀ ଦ୍ୱାରରୁଦ୍ଧ କରିଦିଏ, କୌଣସି ଦୋକାନକୁ ଗଲେ ଦୋକାନଦାର ଦୋକାନ ଛାଡ଼ି ଚାଲିଯାଏ ।

ଜନ୍ ଗୋଟିଏ ସରାଇରେ ଉପସ୍ଥିତ ହେଲା । ତାହାର ବେଶଭୂଷା ଓ ଭାବଭଙ୍ଗୀ ଦେଖି ସରାଇ ଲୋକମାନେ ଭୀତ ହୋଇ ପଡ଼ିଲେ । କେହି କିଛି କହିଲେ ନାହିଁ । ଜନ୍ ସମ୍ମୁଖସ୍ଥ ଗୋଟିଏ ଚଉକିରେ ବସିଲା, ପୃଷ୍ଠର ଥଳୀ ଓ ହସ୍ତସ୍ଥିତ ଯଷ୍ଟିଟି ତଳେ ରଖିଲା । ବେଶି ଭାବି ଚିନ୍ତି ସରାଇ-ସ୍ୱାମୀକୁ ପଚାରିଲା, 'ମହାଶୟ, ଷୋଳଣି ପଇସା ଦେବି, କିଛି ଖାଇବାର ଜିନିଷ ଦେବେ ?' ସରାଇ ସ୍ୱାମୀ ଅନିଚ୍ଛା ସତ୍ତ୍ୱେ କହିଲା— 'ହଁ ପାଇବ, କିନ୍ତୁ ଡେରି କର ।'

ଜନ୍—ଏଠାରେ ଆଜି ରାତ୍ରି ରହିବାର ସୁବିଧା ହୋଇ ପାରିବ ?

ସବଇନ୍ସ୍ପେକ୍ଟର— ହଁ ହୋଇ ପାରେ, ବ୍ୟସ୍ତ ହୁଅ ନାହିଁ ।

ସବଇନ୍ସ୍ପେକ୍ଟର ସେଠାରୁ ଚାଲି ଯାଇ ଜଣେ ବାଳକଦ୍ୱାରା ପୁଲିସକୁ ଖବର ପଠାଇଲା । କିଛିକ୍ଷଣ ପରେ ବାଳକ ପୁଲିସ ଷ୍ଟେସନରୁ ଫେରି ସବଇନ୍ସ୍ପେକ୍ଟର ହାତରେ ଖଣ୍ଡିଏ ପତ୍ର ଦେଲା ।

ଜନ୍ ଅତଏବ କ୍ଷୁଧା ଓ ପିପାସାରେ କାତର ହୋଇଥିଲା । ତାହା ନିକଟରେ କେତେକ ଜଣ ବସିଥିଲେ । ଜନ୍ ସେମାନଙ୍କୁ ଆହାର୍ଯ୍ୟ ଦେବାରେ ବିଳମ୍ବ ହେବାର କାରଣ ପଚାରୁ ଅଛି, ଏହି ସମୟରେ ସବଇନ୍ସ୍ପେକ୍ଟର ଆସି ତାହାକୁ ଦୃଢ଼ ସ୍ୱରରେ କହିଲା, 'ତୁମେ ଏଠାରୁ ଚାଲିଯାଅ ।'

ଜନ୍— ଏହିକ୍ଷଣି ଚାଲି ଯାଉଛି । ଦୟାକରି ଏକ ଗ୍ଲାସ ଜଳ ଦିଅନ୍ତୁ— ବଡ ତୃଷା ହେଉଛି ।

ସବଇନ୍ସ୍ପେକ୍ଟର— ଦୂର ହୁଅ ଚଞ୍ଚଳ, ଶୂୟାର୍ । ନଚେତ୍ ପଦାଘାତ କରିବି ।

ଜନର ସୁଗମ୍ଭୀର ବିଷଣ୍ଣ ମୁଖମଣ୍ଡଳ ଆହୁରି ମଳିନ ହୋଇ ଉଠିଲା । ସେ ସେହି ମୁହୂର୍ତ୍ତରେ ସରାଇ ତ୍ୟାଗ କଲା । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ । ଜନ୍ ଦ୍ରୁତ ପଦରେ ଚାଲିବାକୁ ଲାଗିଲା । ସହସା ସମ୍ମୁଖରେ ଗୋଟିଏ ଆଲୋକ ଦେଖି ସେହି ଦିଗରେ ଅଗ୍ରସର ହେଲା । କ୍ରମେ ଗୋଟିଏ କ୍ଷୁଦ୍ର ଅଟ୍ଟାଳିକା ଆଗରେ ଯାଇ ଠିଆ ହେଲା । ଅଟ୍ଟାଳିକାଟିର ଦ୍ୱାର ରୁଦ୍ଧ । ଜନ୍ ଦ୍ୱାରରେ କରାଘାତ କରିବାକ୍ଷଣି, ଜଣେ ଲୋକ ଦ୍ୱାର ଖୋଲି ପଚାରିଲା— 'କିଏ ତୁମେ ?'

ଜନ୍— ପଥିକ । ଚାରିଦିନ ହେଲା କିଛି ଖାଇ ନାହିଁ । ରାତିରେ ଏଇଠି ରହି ପାରିବି ?

ବ୍ୟକ୍ତି— ଅନ୍ୟତ୍ର ଯାଅ— ଏଇଠି ସ୍ଥାନ ହେବ ନାହିଁ ।

ଜନ୍ ହତାଶ ହୋଇ ପୁଣି ଚାଲିବାକୁ ଲାଗିଲା । ଏଣେ ରାତି କ୍ରମେ ଅଧିକ ହେଉଅଛି; ବରଫ-ମୂର୍ତ୍ତି ଶୀତଳ ସମୀରଣ କ୍ରମଶଃ ପ୍ରବଳ

ହୋଇ ଉଠୁଛି, କ୍ଷୁଧା ତୃଷାରେ ଜନ୍‌ର ମସ୍ତକ ବିଘୂର୍ଣ୍ଣିତ ହେଉଅଛି। ହାୟ, ଏହି ବିଶାଳ ଜଗତରେ ଏହି ଦୁଃଖୀ ପଥିକର ଅବସ୍ଥାନ ପାଇଁ କଣ ତିଳାର୍ଦ୍ଧ ବି ଜାଗା ନାହିଁ ? ସେହି ରାତି ଜନ୍ ଆଉ ଦୁଇ ପାଞ୍ଚ ସ୍ଥାନରେ ବସା ପାଇବା ପାଇଁ ଚେଷ୍ଟା କଲା; କିନ୍ତୁ କୌଣସି ସ୍ଥାନରେ ପାଇଲା ନାହିଁ—ଖାଦ୍ୟଦ୍ରବ୍ୟ ବଦଳରେ ପାଇଲା ନିଦାରୁଣ ପଦାଘାତ ଓ ଧିକ୍‌କାର।

ରାତି ପ୍ରାୟ ଏଗାରଟା, ରାସ୍ତାରେ ଜନପ୍ରାଣୀ କେହି ନାହିଁ। ସେହି ଭୟଙ୍କର ଶୀତରେ କୁକ୍‌କୁରଗୁଡ଼ାକ ବି ଅବରୁଦ୍ଧ ଗୃହ ମଧ୍ୟରେ ସୁଖନିଦ୍ରା କରିଛନ୍ତି। ସମଗ୍ର ପାରି ସହରରେ ଏକମାତ୍ର ଜନ୍ ଉତ୍ତର-ବାୟୁ ସଞ୍ଚାଳିତ ଦାରୁଣ ବରଫ-ସାଗରରେ ଭାସି ଭାସି ବୁଲୁଅଛି।

ସମ୍ମୁଖରେ ସରକାରୀ ଛାପାଖାନା। ଜନ୍ ଛାପାଖାନାର ଦ୍ୱାରବାନ୍ ନିକଟରେ ଯାଇ ପଚାରିଲା—'ମହାଶୟ, ମୁଁ ଶୀତରେ ମରୁଛି, କେଉଁଠି ଟିକିଏ ମୁଣ୍ଡ ଗୁଞ୍ଜିବାର ଜାଗା ଦେଇ ପାରିବେ ?'

ଦ୍ୱାରବାନ୍—ଏହା ସରକାରୀ ଛାପାଖାନା, ଏଠି ଅନ୍ୟ କେହି ରହି ପାରିବେ ନାହିଁ। ହେଇଟି, ଗିର୍ଜା ଦେଖୁଛ। ସେଠାକୁ ଯାଇ ଚିତ୍କାର କର, ସ୍ଥାନ ପାଇବ।

ଜନ୍ ଊର୍ଦ୍ଧ୍ୱଶ୍ୱାସରେ ଯାଇ ଗିର୍ଜାଦ୍ୱାରରେ 'ଦ୍ୱାର ଖୋଲ, ଦ୍ୱାର ଖୋଲ' ବୋଲି ଚିତ୍କାର କରିବାକୁ ଲାଗିଲା। ସେହିକ୍ଷଣି ଗିର୍ଜା-ଦ୍ୱାର ଉଦ୍‌ଘାଟିତ ହେଲା। ଭିତରୁ କୌଣସି ବ୍ୟକ୍ତି ଗମ୍ଭୀର କଣ୍ଠରେ କହିଲା, "ଭାଇ, ଭିତରକୁ ଆସ" ଜନ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଭାବିଲା,—'ଏ କଣ, ମତେ କିଛି ନପଚାରି ଏକାବେଳକେ ଭିତରକୁ ଯିବାକୁ କହିଲେ ଏ ଭଳି ଲୋକ ତ କେବେ କେଉଁଠି ଦେଖିନାହିଁ !' ସେ ଗୃହ ମଧ୍ୟରେ ପ୍ରବିଷ୍ଟ ହେଲା।

ସେଠାରେ ଜଣେ ବୃଦ୍ଧ ଜନ୍‌କୁ ଖଣ୍ଡିଏ ଚଉକି ଦେଖାଇ କହିଲେ, 'ମହାଶୟ, ବସନ୍ତୁ।' ଜନ୍‌କୁ ବହୁକାଳ ହେଲା କେହି ହେଲେ 'ମହାଶୟ' ବୋଲି ସମ୍ବୋଧନ କରିନାହିଁ, କେହି ତାହାକୁ ଆଦର କରି ଚଉକିରେ

ବସାଇ ନାହିଁ । ବୃଦ୍ଧଙ୍କର ମିଷ୍ଟ ସମ୍ଭାଷଣରେ ଜନ୍‌ର ହୃଦୟରେ ଗୋଟିଏ ଅଭୂତପୂର୍ବ ଆଲୋଡ଼ନ ଉପସ୍ଥିତ ହେଲା । ସେ ଚେୟାରରେ ବସିଲା ।

ବୃଦ୍ଧ ବ୍ୟକ୍ତିଟି ସ୍ୱୟଂ ବିଶପ୍‌ । ସେ ନିଜେ ଅଗ୍ନି ଆଣି ଜନର ଚୁଲିକ ତଳେ ରଖିଲେ । ତାଙ୍କର ଭଗିନୀ ସମ୍ମୁଖସ୍ଥିତ ଗ୍ରେଟ ଟେବୁଲ ଉପରେ ବିବିଧ ଖାଦ୍ୟଦ୍ରବ୍ୟ ଓ ପାନୀୟ ଆଣି ରଖିଲେ । ବିଶପ୍‌ଙ୍କ ଅନୁରୋଧରେ ଅତିଥି ଆହାର କରି ବସିଲା ।

ଭୋଜନ ପରେ ବିଶପ୍ ମହାଶୟ ଜନ୍‌କୁ ସଙ୍ଗେ ନେଇ ତାଙ୍କର ଶୟନ କକ୍ଷ-ପାର୍ଶ୍ୱବର୍ତ୍ତୀ ଗୋଟିଏ ସୁସଜ୍ଜିତ ପ୍ରକୋଷ୍ଠକୁ ଗଲେ । ତାହାକୁ ପଲଙ୍କ ଉପରିସ୍ଥ ଶଯ୍ୟା ଦେଖାଇ କହିଲେ, "ମହାଶୟ, ଏଇଠି ଶୁଅନ୍ତୁ, କାଲି ସକାଳେ କଥାବାର୍ତ୍ତା ।" ଜନ୍ ବହୁକ୍ଷଣ ବିସ୍ଫାରିତ ନେତ୍ରରେ ଶଯ୍ୟାକୁ ଅନାଇଁ ରହି ମନେ ମନେ କହିଲା, "ଊନବିଂଶ ବର୍ଷ ପରେ ଆଜ ଶୟନ କରିବାକୁ ଏ ଭଲ ବିଛଣା ପାଇଛି । ଏ ଧରଣର ଶଯ୍ୟା ଏ ସମୟ ମଧ୍ୟରେ କେବେ ଦେଖି ନାହିଁ—ଭୂମିତଳହିଁ ମୋର ଶଯ୍ୟା ଥିଲା ।" ପରେ ବୃଦ୍ଧଙ୍କୁ କହିଲା, "ମହାଶୟ, ଆପଣ ମନୁଷ୍ୟ ନା ଦେବତା ?"

ବୃଦ୍ଧ ଉତ୍ତର କଲେ, "ମୁଁ ସାମାନ୍ୟ ଧର୍ମଯାଜକ ମାତ୍ର—ଏ ପ୍ରଦେଶର ବିଶପ୍‌ । କେତେ ବିସ୍ମିତ ହେଉଛନ୍ତି କିଆଁ ? ଶୟନ କରନ୍ତୁ ।" ଏହା କହି ବିଶପ୍‌ ସେହି କକ୍ଷ ତ୍ୟାଗ କଲେ । କ୍ଳାନ୍ତ ପରିଶ୍ରାନ୍ତ ଜନ୍‌ ଚମକିତ ହୋଇ ଦେଖିଲା, ସମ୍ମୁଖରେ ଦୁଗ୍ଧଫେନନିଭ ଶଯ୍ୟା । ସେ ଶଯ୍ୟାରେ ଶୟନ କଲା, ଦେଖୁଁ ଦେଖୁଁ ଗାଢ଼ ନିଦ୍ରାରେ ଅଭିଭୂତ ହୋଇଗଲା ।

ବିଶପ୍‌ ମହାଶୟ ଥିଲେ ନେପୋଲିୟନଙ୍କ କୀର୍ତ୍ତିସ୍ତମ୍ଭବିଶେଷ । ଦଶ ବାର ବର୍ଷ ପୂର୍ବେ ନେପୋଲିୟନ୍‌ ଫ୍ରାନ୍‌ସରେ ଖ୍ରୀଷ୍ଟଧର୍ମର ପୁନଃ ପ୍ରତିଷ୍ଠାରେ ଯତ୍ନବାନ ହୋଇ ଅନେକ ଧର୍ମଯାଜକ ନିଯୁକ୍ତ କରିଥିଲେ —ଏହି ବିଶପ୍‌ ସେମାନଙ୍କ ମଧ୍ୟରେ ଅନ୍ୟତମ । ନାନା ସ୍ଥାନରେ ସୁଗୁରୁ-ରୂପେ ବିଶପ୍‌ କାର୍ଯ୍ୟ ସମ୍ପାଦନ କରି ଏ ବର୍ତ୍ତମାନ ପାରିରେ ଅବସ୍ଥାନ

କରୁଥିଲେ । ଏ ସାତ୍ତ୍ୱିକାଶୟ ଦୟାଶୀଳ, ଧର୍ମପରାୟଣ ଓ ଉନ୍ନତଚରିତ । ଏ ନିଃସ୍ୱ ହେଲେ ଧନୀ ନିକଟକୁ ଯା'ନ୍ତି, ଐଶ୍ୱର୍ଯ୍ୟଶାଳୀ ହେଲେ ଦରିଦ୍ର କୁଟୀର ଛାଡ଼ି ଯା'ନ୍ତି ନାହିଁ । ନାସ୍ତିକ ଫ୍ରାନ୍ସକୁ ଆସ୍ତିକରେ ପରିଣତ କରିବା ଏହାଙ୍କର ସାଧ୍ୟାତୀତ ଥିଲା; ତେବେ ଘୋର ଅନୀଶ୍ୱରବାଦୀଗଣ ବି ବିଶପ୍‌ଙ୍କ କଥାରେ କର୍ଣ୍ଣପାତ ନକରି ରହି ପାରୁ ନଥିଲେ । ଏ ଅତ୍ୟନ୍ତ ମିତବ୍ୟୟୀ ଥିଲେ—ସ୍ୱୟଂ ମୃତ୍‌ପାତ୍ରରେ ଭୋଜନ କରୁଥିଲେ; କିନ୍ତୁ ଅତିଥିମାନଙ୍କ ନିମନ୍ତେ ଘରେ ରୌପ୍ୟ ପାତ୍ରର ଅଭାବ ନଥିଲା ।

ରାତ୍ରି ପ୍ରାୟ ତିନିଟାବେଳେ ଜିନ୍‌ର ନିଦ୍ରାଭଙ୍ଗ ହେଲା । ଦେଖିଲା, କକ୍ଷରେ ଆଲୋକ ଜଳୁଅଛି । ଆହାର ଓ ନିଦ୍ରା ପରେ ତାହାର ଶରୀର ସୁସ୍ଥ ହୋଇଅଛି । ସେ ଉଠି ବସିଲା, ପୂର୍ବର କଥା ସ୍ମରଣ କରିବାକୁ ଲାଗିଲା । କ୍ରମେ କ୍ରମେ ଗୋଟିକ ପରେ ଗୋଟିଏ ତାହାର ସକଳ କଥା ସ୍ମରଣ ହେଲା । ସେତେବେଳେ ପର ଦିନର ଭାବନା ଆସି ତାହାର ହୃଦୟ ଅଧିକାର କରି ବସିଲା—କେଉଁଠାକୁ ଯିବ, କଣ କରିବ, କିପରି ବା ସେହି ଭୟଙ୍କର ସହରରେ ନିଜର ଜୀବନ ଅକ୍ଷୁଣ୍ଣ ରଖିବ ? କାଲି ସକାଳେ ଯେ ତାହାକୁ ଏହି ସୁଖ-ନିକେତନ ପରିତ୍ୟାଗ କରି ପୁଣି ଦ୍ୱାର ଦ୍ୱାର ବୁଲିବାକୁ ହେବ, ତାହା ତାହାର ମନେ ପଡ଼ିଲା । ସଙ୍ଗେ ସଙ୍ଗେ ବିଶପ୍‌ଙ୍କର ରୌପ୍ୟ ବାସନଗୁଡ଼ିକ ତାହାର ଦୃଷ୍ଟିରେ ପଡ଼ିଲା । ପାପ ଯେପରି ଧୀରେ ଧୀରେ ଜିନର କାନରେ କହିଲା—'ଯଦି ଏହି ବାସନ ସବୁ ଚୋରେଇ ନେଇ ପାରୁ, ତାହା ହେଲେ ତୁ ସମସ୍ତ ଦୁଃଖ କଷ୍ଟରୁ ଉଦ୍ଧାର ପାଇବୁ ।' ସେ ରୌପ୍ୟ-ଚିନ୍ତାରେ ଅଭିଭୂତ ହୋଇ ପଡ଼ିଲା ।

ଜିନ୍ ଭଲ ଲୋକ ନୁହେ—ବିଖ୍ୟାତ ଦସ୍ୟୁ । କ୍ରମାନ୍ୱୟରେ ଅଠର ବର୍ଷ କାଳ କାରାଭୋଗ କରି, ପରେ ଜେଲ ଭାଙ୍ଗି ପଳାୟନ କରିଅଛି । ପୁଣି ଚୋରି କରିଅଛି । ତା' ନାମରେ ଦୁଇ ତିନି ଖଣ୍ଡ ଓ୍ୱାରେଣ୍ଟ୍ ବି ଜାରି ହୋଇଅଛି । ଏହି ବିଷୟର ଗନ୍ଧ ପାଇ ପ୍ରଥମ ସରାଇସ୍ୱାମୀ ଏହାକୁ ତଡ଼ି ଥିଲା ।

ଜନ୍ ଭାବିଲା—'ନା ଏହି ସ୍ଥାନରେ ଚୋରି କରିବା ଅନ୍ୟାୟ, ଅନୁଚିତ । ଗତ ରାତ୍ରିରେ ବିଶପ୍ ମୋର ଜୀବନ ରକ୍ଷା କରିଛନ୍ତି । ଯେଉଁ ଲୋକ ଏପରି ଧର୍ମପରାୟଣ ଲୋକର ଅପହରଣ କରିବ, ତାହାର ସ୍ଥାନ ନରକରେ ବି ବୋଧହୁଏ ହେବ ନାହିଁ ।' ଏସବୁ ଭାବୁ ଭାବୁ ପୁନର୍ବାର ଶୋଇ ପଡିଲା ।

ପାଞ୍ଚ ମିନିଟ୍ ପରେ ଜନ୍ ପୁଣି ଉଠି ବସିଲା । କିଛି ସମୟ କଣ ଗୁଡ଼ାଏ ଭାବି ସ୍ଥିର କଲା, ବିଶପ୍ ଭବନରେ ଚୋରି କରିବ । ସେ ଧୀରେ ଧୀରେ ଶଯ୍ୟା ତ୍ୟାଗ କଲା । ଆସ୍ତେ ଆସ୍ତେ ଲକ୍ଷ୍ୟ ତ୍ୟାଗ କଲା । ପରେ ବିଶପ୍‌ଙ୍କର ସମସ୍ତ ରୌପ୍ୟ ବାସନ ନିଜ ଥଳୀରେ ନିଃଶବ୍ଦରେ ଭରତି କଲା ଏବଂ ଗବାକ୍ଷ ମାର୍ଗରେ ନିଷ୍କ୍ରାନ୍ତ ହୋଇ ଉଦ୍ୟାନରେ ପହଞ୍ଚିଲା । ଶେଷରେ ପ୍ରାଚୀର ଉଲ୍ଲଂଘନ କରି ପଳାଇଲା ।

ଦେଖୁ ଦେଖୁ ଜଗତରେ ଊଷା ଦେଖା ଦେଲା—ପୂର୍ବ ଗଗନ ଆଲୋକିତ ହୋଇ ଉଠିଲା । ଜନ୍ ସେତେବେଳେ ରାଜମାର୍ଗରେ ଯାଉଁ ଯାଉଁ ପୁଲିସ ପ୍ରହରୀମାନଙ୍କଦ୍ୱାରା ଧୃତ ହେଲା । ସେ ସେମାନଙ୍କୁ କହିଲା ଯେ, ସେ ବାସନ ସବୁ ଚୋରି କରି ନାହିଁ, ବିଶପ୍ ମହାଶୟ ନିଜ ଇଚ୍ଛାରେ ଏହା ତାହାକୁ ଦାନ କରିଛନ୍ତି । ତାହାର କଥାର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ପୁଲିସ ପ୍ରହରୀମାନେ ତାହାକୁ ବିଶପ୍‌ଙ୍କ ନିକଟକୁ ଟାଣି ନେଲେ । ସେମାନଙ୍କ ସଙ୍ଗେ ପ୍ରାୟ ତିନି ଶତ ଦେଖଣାହାରୀ ଚାଲିଲେ । ଦେଖୁଁ ଦେଖୁଁ ବିଶପଙ୍କର କ୍ଷୁଦ୍ର ଉଦ୍ୟାନଟି ଜନତାରେ ପୂର୍ଣ୍ଣ ହୋଇଗଲା । ଜନ୍‌ର ସର୍ବାଙ୍ଗ କମ୍ପିତ ହେବାକୁ ଲାଗିଲା, କପାଳରେ ବିନ୍ଦୁ ବିନ୍ଦୁ ଘର୍ମ ଦେଖା ଦେଲା ।

ପୁଲିସ ପ୍ରହରୀଗଣ ବିଶପଙ୍କୁ ଯଥାବିଧି ନମସ୍କାର କରି ଜିଜ୍ଞାସା କଲେ, "ପୂଜ୍ୟମହାଶୟ ମହାଶୟ, ଏ ସମସ୍ତ ବାସନ କଣ ଆପଣଙ୍କର ?"

ବିଶପ୍—ଆଗେ ମୋର ଥିଲା, ବର୍ତ୍ତମାନ କିନ୍ତୁ ଏ ଜନ୍‌ଙ୍କର ।

ପ୍ରହରୀ—ଏହା କିପରି ସମ୍ଭବ ?

ବିଷପ୍—ବ୍ରିଗେଡ୍‌ୟାର୍ ମହାଶୟ, ଏ ସକଳ ପଦାର୍ଥ ମୁଁ ଏହାଙ୍କୁ ବାସ୍ତବିକ ଦାନ କରିଅଛି । ତୁମେମାନେ ବର୍ତ୍ତମାନ ଯାଇ ପାର ।

ପୁଲିସ ପ୍ରହରୀମାନେ ଜନ୍‌ଙ୍କୁ ସେଠାରେ ଛାଡ଼ି ଦେଇ ଚାଲିଗଲେ । ଦର୍ଶକମାନେ ବି ପ୍ରସ୍ଥାନ କଲେ । ବିଷପ୍ ଜନ୍‌ଙ୍କୁ କହିଲେ, "ତୁମେ ଯେଉଁ ସ୍ଥାନରୁ ଏ ସବୁ ଦ୍ରବ୍ୟ ନେଇଥିଲ, ସେଠାରେ ଆଉ ଦୁଇଟି ରୂପୀ ପିଲସୁଜ (ସାମାଦାନ) ବି ତୁମ ପାଇଁ ରଖିଥିଲି, ନେଲ ନାହିଁ କାହିଁ । ସେ ଦୁଇଟି ବି ତୁମର ।"

ବିଷପ୍ ସେହିକ୍ଷଣି କକ୍ଷ ମଧ୍ୟକୁ ଯାଇ, ଦୁଇଟି ଆଣିଲେ ଏବଂ ତାହା ଜନ୍ ହାତରେ ଦେଇ କହିଲେ—"ଏଥିରେ ତୁମର ଆଉ ଦୁଇ ଶହ ଫ୍ରାଙ୍କ୍ ହୋଇ ପାରିବ । ସବୁଶୁଦ୍ଧ ଛ'ଶହ ଫ୍ରାଙ୍କ୍‌ର ସାଧୁ ବିନିଯୋଗ କଲେ ତୁମର ଏକ ପ୍ରକାର ଚଳିବ ନାହିଁ ? ତୁମେ ତୁମ ଆତ୍ମାକୁ ପବିତ୍ର ରଖି ପାରିବ ନାହିଁ ?"

ଜନ୍ ବହୁକ୍ଷଣଯାଏଁ ପ୍ରସ୍ତରନିର୍ମିତ ପୁତ୍ତଳିକା ପରି ଠିଆ ହେଲା । ପରେ ପିଲସୁଜ ନେବାକୁ ଅନିଚ୍ଛା ପ୍ରକାଶ କରି ଲଜ୍ଜାରେ ମସ୍ତକ ଅବନତ କରି ରହିଲା ।

ବିଷପ୍—ଜନ୍ ! ତୁମେ ଚୋରି କରି ନାହଁ, ବୃଥା ଲଜ୍ଜିତ, ସଙ୍କୁଚିତ ହେଉଛ କାହିଁ ? ତୁମେ ମୋର ଭାଇ, ତୁମେ ଅଭାବରେ ପଡ଼ି, ଯାହା ତୁମ ଭାଇ ପାଖରେ ଅଧିକ ଥିଲା ତାହା ନେଇଅଛ ମାତ୍ର । ଅବସାଦ ତ୍ୟାଗ କର । ଏ ସମସ୍ତ ଦ୍ରବ୍ୟ ନେଇ ଅକୁତୋଭୟରେ ଯାଇ ପାର । ଈଶ୍ୱର ତୁମକୁ ଶାନ୍ତି ଦାନ କରନ୍ତୁ—ତୁମର ଆତ୍ମା ସ୍ୱର୍ଗକୁ ଯିବାର ଉପଯୁକ୍ତ ହେଉ ।

ଜନର ଅନ୍ତଃକରଣରେ ଗୋଟାଏ ଅଭିନବ ଭାବର ଉଦୟ ହେଲା । ତାହାର ସଂଜ୍ଞାଲୋପର ଉପକ୍ରମ ହୋଇଥିଲା । ବର୍ତ୍ତମାନ ସେ ଯେପରି ସୁପ୍ତୋତ୍‌ଥିତ । ଯନ୍ତ୍ର-ସଂଚାଳିତ ପୁତ୍ତଳିକା ଭଳି, ସେ ଦକ୍ଷିଣ ହସ୍ତ ପ୍ରସାରିତ କରି ବିଷପ୍-ପ୍ରଦତ୍ତ ପଦାର୍ଥଗୁଡ଼ିକ ଥଳୀରେ ଭରିଛି କଲା ଏବଂ କମ୍ପିତ କଳେବରରେ ଉଠି ବିଷପ୍‌ଙ୍କୁ ନମସ୍କାର କରି ଧୀର

ଓ ଘର୍ଘ ପଦ ବକ୍ଷେପରେ ଅଦୃଶ୍ୟ ହୋଇଗଲେ । ସେଠାରୁ ଚାଲି ଯିବା-ବେଳେ ଭାବିଲେ—'ମୁଁ ମାନବର, ମର୍ତ୍ତ୍ୟର ଅତିଥି ହୋଇ ନଥିଲି—ହୋଇଥିଲି ଦେବତାର, ସ୍ୱର୍ଗର ଅତିଥି ।'

*

# ପରିବର୍ତ୍ତନ

ଜିନ୍ ବାଲ୍‌ଜାନ ହରିଣ ଭଳି ଦ୍ରୁତବେଗରେ ନଗର ତ୍ୟାଗ କରି ଗୋଟିଏ ପ୍ରାନ୍ତରରେ ଯାଇ ପହଞ୍ଚିଲା । ପରେ ଗୋଟିଏ ବୃକ୍ଷକୁଞ୍ଜ ତଳେ ବସି ଆକାଶ ପ୍ରତି ଦୃଷ୍ଟିପାତ କରି ଭାବିବାକୁ ଲାଗିଲା । ତାହାର ମନ ପ୍ରାଣ ଅସ୍ଥିର । ଘର୍ଘକାଳ ସ୍ଥାୟୀ ଜ୍ୱର-ପରିତ୍ୟାଗ ସମୟରେ ରୋଗୀର ଯେପରି ଚାଞ୍ଚଲ୍ୟ ହୋଇଥାଏ, ଜିନ୍ ବି ସେପରି ଚଞ୍ଚଳ ହୋଇ ଉଠିଅଛି । ତା ହୃଦୟରେ ଆଜି ଚିନ୍ତା ପରେ ଚିନ୍ତା ତରଙ୍ଗ ଭଳି ଖେଳି ବୁଲୁଅଛି, ପ୍ରାଣରେ ଯେପରି ଭାବନାର ପ୍ରବଳ ଝଟିକା ବହୁଅଛି । ସେ ବର୍ତ୍ତମାନ ଆଉ ଆଗର ଜିନ୍ ନୁହେ—ପୂର୍ବ ଜିନ୍‌ର ଯେପରି ଗୋଟାଏ ମାର୍ଜ୍ଜିତ, ସଂସ୍କୃତ, ପରିବର୍ତ୍ତିତ ସଂସ୍କରଣ ।

ଜିନ୍‌ର ହୃଦୟରେ ପର୍ଯ୍ୟାୟକ୍ରମେ ଅନୁତାପ, ଅବସାଦ, ଉତ୍ତେଜନା ଓ ବୈର୍ଯ୍ୟର ଉଦ୍ରେକ ହେବାକୁ ଲାଗିଲା । ସେ ଭାବିଲା, 'ମୁଁ କେବଳ ଦସ୍ୟୁ ନୁହେ, ମୁଁ ଅତି ନୃଶଂସ, ପାପାତ୍ମା ନରାଧମ । ଈଶ୍ୱର କୌଣସି ପ୍ରକାରେ ଏଇ ଘୃଣିତ ଜୀବନ ଶେଷ କରି ଦେଲେ ରକ୍ଷା ପାଆନ୍ତି ।'

ଏପରି ସମୟରେ ଜଣେ ବ୍ୟକ୍ତି ଅଶ୍ୱପୃଷ୍ଠରେ ସେହି ପଥରେ ଯାଉଥିଲା । ତାହାକୁ ଦେଖି ଜିନ୍ ବ୍ୟସ୍ତଭାବରେ ଉଠି କହିଲା,—'ତୁମେ ବୋଧହୁଏ ପୁଲିସ କର୍ମଚାରୀ । ମୋତେ ଗ୍ରେପ୍ତାର କର—ମୁଁ ଚୋର ।' ଅଶ୍ୱାରୋହୀ ତାହାର ପ୍ରଳାପରେ କର୍ଣ୍ଣପାତ ନକରି ଚାଲିଗଲା ।

ପରେ ଜନୈକ ଧର୍ମଯାଜକଙ୍କୁ ସେହି ମାର୍ଗରେ ଯିବାର ଦେଖି, ଜିନ୍ ତାଙ୍କୁ ଯଥାବିଧି ପ୍ରଣାମ କରି କହିଲା, 'ମହାଶୟ, ମୋ ନିକଟରେ

ଛ' ଶତ ଫ୍ରାଙ୍କ୍ ଅଛି । ଏହି ଅର୍ଥ ନେଇ ଆପଣ ଦରିଦ୍ରମାନଙ୍କ ମଧ୍ୟରେ ବିତରଣ କରିପାରନ୍ତି । ନେବେ ?' ଧର୍ମ୍ମଯାଜକ ଅଳ୍ପ ହସି ଦେଇ ଚାଲିଗଲେ ।

ଜନ୍ ଭାବିଲା,—'ନା ଏ ଅର୍ଥ ଭୋଗ କରିବା ସହଜ ନୁହେଁ । ଏଥିରେ ମୋର ଶାନ୍ତି ନାହିଁ । ଏହା ଯାହାଙ୍କର, ତାଙ୍କୁହିଁ ଦେଇ ଆସିବି ।' ଏହା ଭାବି ସେ ହସ୍ତସ୍ଥିତ ଥଳିଟି ତଳେ ପକାଇ ଦେଇ, କିୟତ୍କାଳ ନୀରବ ଭାବରେ ବସି ରହିଲା । ପରେ ପୁଣି ମନକୁ କହିଲା,—'ମୁଁ ସେ ବର୍ତ୍ତମାନ ସ୍ୱର୍ଗର ପଥିକ । ସେହି ପରମ କାରୁଣିକ ମହର୍ଷିଙ୍କ ମୁଖମଣ୍ଡଳରେ ଯେଉଁ ସ୍ୱର୍ଗୀୟ ଜ୍ୟୋତିଃ ଦେଖିଅଛି, ତାହା ମୁଁ ଭୁଲି ଯାଉଛି କାହିଁକି ? ସେ ପ୍ରକୃତ ମାନବ, ସେହି ପରମ ଦେବତା । ସେ ମୋତେ ସ୍ୱର୍ଗଗମନର ଯେଉଁ ସମ୍ବଳ ଦେଇଛନ୍ତି, ତାହା ବା ପରିତ୍ୟାଗ କରିବି କିଆଁ ? ବରଂ ତାଙ୍କର ପଦଚିହ୍ନ ଅନୁସରଣ କରି ଧୀରପଦ ବିକ୍ଷେପରେ ସ୍ୱର୍ଗ ପ୍ରତି ଅଗ୍ରସର ହେବି । ଯେଉଁମାନେ ମୋ ଉପରେ ଅତ୍ୟାଚାର କରିଛନ୍ତି, ସେମାନଙ୍କୁ ମୁଁ କ୍ଷମା କଲି । ଅଭିଶପ୍ତ ଭୂମଣ୍ଡଳର ବ୍ୟଥା ବେଦନା ଭୁଲିଲି । ସେଇ ଅଶେଷ ଯନ୍ତ୍ରଣା-ନିବାରିଣୀ ଚିରସଙ୍ଗିନୀ ବୈରନିର୍ଯ୍ୟାତନ-କଳ୍ପନାକୁ ବି ଏଠାରେ ଛାଡ଼ି ଯାଉଛି ।'

ଏପରି ସଂକଳ୍ପ କରି ଜନ୍ ମଧ୍ୟାହ୍ନବେଳେ ଏକ ଦୋକାନରେ ଯାଇ ଖଣ୍ଡିଏ ରୁଟି କିଣି ଖାଇଲା ଏବଂ ଅପରାହ୍ଣରେ ବିଶପ୍-ଦତ୍ତ ଜିନିଷ-ଗୁଡ଼ିକ ବିକ୍ରୟ କରି ଛ' ଶତ ଫ୍ରାଙ୍କ୍ ପାଇଲା । ବିଶପ୍‌ଙ୍କର କଥା ସବୁ ତାହାର ହୃଦୟରେ ବେଦବାକ୍ୟ ପରି ଗ୍ରଥିତ ହୋଇଥିଲା । ସେ ଜନ୍‌କୁ ଏ ଧନର ସାଧୁ ବିନିଯୋଗଦ୍ୱାରା ଜୀବିକା ନିର୍ବାହ କରିବାକୁ କହିଥିଲେ । କିପରି ଧନର ବ୍ୟବହାର କରିବ ସେ କଥା ଚିନ୍ତା କରିବାକୁ ଲାଗିଲା । ପାରିସର ଦରିଦ୍ର ବିଭାଗରେ ଗୋଟାଏ ଘର ଭଡ଼ା କରି ସେ ସହରର ସକଳ ସ୍ଥାନରେ ଭ୍ରମଣ କରି ବ୍ୟବସାୟ ବାଣିଜ୍ୟର ସୁବିଧା ଖୋଜିବାକୁ ଲାଗିଲା ।

ଏପରି ଅବସ୍ଥାରେ ଦିନେ ସନ୍ଧ୍ୟା ପରେ ଜନ୍ କିଛି ଖାଦ୍ୟ ପଦାର୍ଥ କିଣି ନିଜ ବସାକୁ ଫେରୁଅଛି, ଏପରି ସମୟରେ କୌଣସି ଦୁଃଖିନୀ ରମଣୀ

ଆସି ତାହା ନିକଟରେ କିଛି ଖାଦ୍ୟ ପ୍ରାର୍ଥନା କଲା । କହିଲା, "ମହାଶୟ, ଦିନଟାଯାକ ଆହାର ହୋଇ ନାହିଁ । ମୋର ଗୋଟାଏ କନ୍ୟା ଅଛି ପାଞ୍ଚ ବର୍ଷର । ପିଲାଟି ଘରେ ଭୋକରେ କଲବଲ ହେଉଛି । ତା ପାଇଁ ଆପଣଙ୍କୁ ପ୍ରାର୍ଥନା କରୁଛି । ମୁଁ ନିଜେ ବିନା ଆହାରରେ ଆହୁରି ଗୋଟିଏ ଦିନ ଚଳି ପାରେ ।"

ଜନ୍ ହସ୍ତସ୍ଥିତ ଖାଦ୍ୟ ଜିନିଷ ଅନାଥିନୀର ହାତରେ ଦେଇ କହିଲା, 'ଏହା ତୁମର ବାଳିକା ପାଇଁ ଦେଲି । ତୁମ ପାଇଁ କିଛି ଦେଇ ପାରୁ ନାହିଁ, ଦୁଃଖର କଥା ।' ଦୁଃଖିନୀ ନେଇଏ ବ୍ୟଗ୍ରଭାବରେ ଖାଦ୍ୟ ନେଇ ସେଠାରୁ ପ୍ରସ୍ଥାନ କରିବା ପରେ, ଜନ୍ ଭାବିଲା, 'ମୋର ମୋଟେ ଗୁଳିଶି ପଇସା ଖର୍ଚ୍ଚ ହୋଇଅଛି—ବଟ୍ଲେର୍ଙ୍କର ଛ'ଶତ ଫ୍ରାଙ୍କ୍ ତ ଅଛି, ମିଛିକୁ ମିଥ୍ୟା କହିଲି କାହିଁକି ? ଏଥିରୁ କ୍ଷୁଧା-ପୀଡିତା ସ୍ତ୍ରୀଟିକୁ ଏକ ଫ୍ରାଙ୍କ୍ ଦାନ କରିଥିଲେ ତାହାର ଢେର ଉପକାର ହୁଅନ୍ତା । ନା, ନା, ମୁଁ ମନ୍ଦ କରି ନାହିଁ—ଏ ଛ'ଶତ ଫ୍ରାଙ୍କ୍ କଣ ମୋର ?'

ଏପରି ଚିନ୍ତା କରୁ କରୁ ଜନ୍ ବିଷଣ୍ଣ ପ୍ରାଣରେ ଗୃହରେ ପ୍ରବେଶ କଲା । ସେ ଉପବାସୀ ରହିଲା ସତ, ସେଥିପାଇଁ ସେ ଦୁଃଖିତ ନୁହେ; କିନ୍ତୁ ଅନାଥିନୀ ନେଇକୁ ସାହାଯ୍ୟ କରି ପାରିଲା ନାହିଁ ବୋଲି ସେ ହୃଦୟରେ ଦାରୁଣ ଆଘାତ ଅନୁଭବ କରିବାକୁ ଲାଗିଲା ।

ବଟ୍ଲେର୍ ମହାଶୟ, ତୁମର କୃପାରୁ ଜନ୍ ଚରିତ୍ରର ହୋଇ ପାରିଛି ଏଇ ଅଦ୍ଭୁତ ପରିବର୍ତ୍ତନ !

*

# ଅନାଥିନୀ

ସଭ୍ୟ ଜଗତରେ ମନୁଷ୍ୟ ମାରିବାର କଳ ଅନେକ ଅଛି । ବନ୍ଧୁକ, କମାଣ, ଡିନାମାଇଟ୍, ବମ୍ ଶେଲ୍, ଟର୍ପେଡୋ ଇତ୍ୟାଦି ଆଧୁନିକ ସଭ୍ୟତାର

ଉପାଦାନ । ଯେଉଁ ଜାତିର ନରହତ୍ୟା କରିବାର ଯେତେ ଅଧିକ ଯନ୍ତ୍ର ଅଛି, ଆଜି କାଲି ସେହି ଜାତି ସେତେ ଅଧିକ ସଭ୍ୟବୋଲି ପରିଚିତ । ସଭ୍ୟ ଫ୍ରାନ୍ସ ଏ ସମସ୍ତ କଳରେ ମୂର୍ତ୍ତି । ନରହତ୍ୟା କରିବାର ଆଉ ଗୋଟିଏ କଳ ସଭ୍ୟଜାତିମାନଙ୍କ ମଧ୍ୟରେ ଅନନ୍ତକାଳରୁ ବରାବର ପ୍ରଚଳିତ ହୋଇ ଆସୁଅଛି—ତାହାର ନାମ 'ଡ଼ାଇଭୋର୍ସ' । ଏ ବିଷୟରେ ବି ଫ୍ରାନ୍ସ ଅଗ୍ରଣୀ ।

ବିପ୍ଳବବେଳେ ଫ୍ରାନ୍ସରେ ଡ଼ାଇଭୋର୍ସର ଭୟଙ୍କର ପ୍ରାଦୁର୍ଭାବ ହୋଇଥିଲା । ରାଜନୈତିକ ଉଦ୍ଦେଶ୍ୟ ସାଧନ କଲ୍ପେ ପବିତ୍ର ଦାମ୍ପତ୍ୟ ମୂଳରେ କୁଠାରାଘାତ କରିବାରେ ଫରାସୀଜାତି ଯେପରି ପଟୁତା ପ୍ରଦର୍ଶନ କରିଅଛି, ଜଗତରେ ତାହାର ଆଉ ତୁଳନା ନାହିଁ । ଫ୍ରାନ୍ସର ଅବତାର ବିଶେଷ ସ୍ୱୟଂ ନେପୋଲିୟନ ମଧ୍ୟ ଏହି ଘୋର ପାପରେ ଲିପ୍ତ ହୋଇଥିଲେ—ରାଜନୀତି ଅନୁରୋଧରେ ଯୋସେଫାଇନଙ୍କୁ ପରିତ୍ୟାଗ କରି ଅଷ୍ଟ୍ରିୟା-ରାଜ-କନ୍ୟା ମେରିୟା ଲୁଇସାଙ୍କର ପାଣିଗ୍ରହଣ କରିଥିଲେ ।

ଡ଼ାଇଭୋର୍ସରୂପ ବାଣବିଦ୍ଧ ଯେଉଁ ଶତ ସହସ୍ର ହରିଣୀଙ୍କର କରୁଣ ଚୀତ୍କାରରେ ଫ୍ରାନ୍ସ ଆଜି ମୁଖରିତ, ସେମାନଙ୍କ ମଧ୍ୟରେ ମେରି ଅନ୍ୟତମା । ମେରି ଯାହାକୁ ପ୍ରେମ କରୁଥିଲେ, ସେ ତାଙ୍କୁ ଛାଡ଼ି ଯାଇଛି । ଯାହାର ପ୍ରେମରେ ମୁଗ୍ଧ ହୋଇ, ଯାହାକୁ ସୁଖୀ କରିବା ପାଇଁ ମେରି ଆତ୍ମୋତ୍ସର୍ଗ କରିଥିଲେ, ଯାହା ଲାଗି ଗୃହତ୍ୟାଗ କରି ପାରି ଆସିଥିଲେ ସେ ମେରିଙ୍କି ଛାଡ଼ି ପଳାଇ ଅଛି । ଅଭାଗିନୀ ଏ ସଂସାରରେ ଏକାକିନୀ ନୁହନ୍ତି--ତାଙ୍କର ଗୋଟାଏ କନ୍ୟା ଅଛି ।

ମେରିଙ୍କର ବୟଃକ୍ରମ ପଞ୍ଚବିଂଶତି ବର୍ଷରୁ ଅଧିକ ନୁହେ । ତଥାପି ସେ ଆଉ ବିବାହ କରି ନାହାନ୍ତି । ଇଚ୍ଛା କରିଥିଲେ ସେ ଏହି ସମୁଦ୍ୟତ ଯୌବନରେ, ଅତୁଳ ସୌନ୍ଦର୍ଯ୍ୟ ଓ ଲାବଣ୍ୟ, ସ୍ୱର୍ଣ୍ଣବର୍ଣ୍ଣାଭ ନିତମ୍ବଚୁମ୍ବୀ କେଶରାଶି, ସୁବିମଳ ଶଶଧର ସନ୍ନିଭ ବଦନ ମଣ୍ଡଳ ଓ ସୁପୁଷ୍ଟ ମୁକ୍ତାପଂକ୍ତି ସଦୃଶ ମନୋହର ଦଶନପଂକ୍ତି ଧରି, କୌଣସି ଡ଼ିଉକ୍ (Duke) ବା କାଉଣ୍ଟ୍‌କୁ ପତି ପଦରେ ବରଣ କରି ବିପୁଳ ଐଶ୍ୱର୍ଯ୍ୟ

କୋଳରେ ଅପାର ସୁଖ ଶାନ୍ତି ଭୋଗ କରି ପାରୁଥାନ୍ତେ । କିନ୍ତୁ ହାୟ ! ସେହା ନକରି, ସେ ଛିନ୍ନ ମଳିନ ବସନରେ ଘାଟ-ବାଟରେ ବୁଲି ଭିକ୍ଷା ମାଗୁଛନ୍ତି । ଯେଉଁ ଦେଶରେ ପରିତ୍ୟକ୍ତା ବା ମୃତଭର୍ତ୍ତୃକା ପତିାନ୍ତର ଗ୍ରହଣ କରି ଅପୂର୍ବ ସମ୍ମାନ ଓ ସନ୍ତୋଷରେ ଦିନ କଟାଇବାର ବିଧାନ ରହିଅଛି, ସେହି ଦେଶରେ ମେରି ଏଭଳି ବିସ୍ମୟକର ତ୍ୟାଗସ୍ୱୀକାର କରିଛନ୍ତି ।

ସୀତା ଓ ସାବିତ୍ରୀଙ୍କ ଦେଶରେ ପାଠକ ପାଠିକାମାନେ ଅବଶ୍ୟ ମେରିଙ୍କ ପତିଭକ୍ତିର ଗୁରୁତ୍ୱ ମନେ କରି ନପାରନ୍ତି । ମେରି କିନ୍ତୁ କୃତଜ୍ଞତାର ଉଚ୍ଚ-ଆଦର୍ଶ, ପିତୃପତିର ବିଷୟରେ ପରିଣାମ, ଅପତ୍ୟ ସ୍ନେହର ବିଶୁଦ୍ଧ ପ୍ରତିମା । ମେରି ବାସ୍ତବିକ ମୂର୍ତ୍ତିମନ୍ତ ମାତା । ଯଦ୍ୟପି ମେରିଙ୍କର ଦେହ ପାପ—ପୃଥିବୀରୁ ଗୃହୀତ ହୋଇଅଛି, ତଥାପି ତାଙ୍କର ଆତ୍ମା ସ୍ୱର୍ଗରୁ ଆସିଅଛି । ସେ ସ୍ୱପ୍ନରେ ସୁଦ୍ଧା ପତିନିନ୍ଦା କରନ୍ତି ନାହିଁ, ଅପର ମୁଖରେ ପତି-ନିନ୍ଦା ଶୁଣିବାକ୍ଷଣି ମୃତପ୍ରାୟା ହୋଇ ପଡ଼ନ୍ତି ।

ଭିକ୍ଷା କରୁ କରୁ ଦିନେ ମେରି ଜଣେ ଭଦ୍ରଲୋକଙ୍କ ଗୃହରେ ଉପସ୍ଥିତ ହୋଇ ଭିକ୍ଷା ପ୍ରାର୍ଥନା କଲେ । ଭଦ୍ରଲୋକଟି ବିସ୍ମିତ ହୋଇ କହିଲେ, 'ଆଜ ଯାଏ ପୃଥିବୀରେ ତୁମ ଭଳି ରୂପବତୀ ରମଣୀକୁ ଭିକ୍ଷା କରିବାର ଦେଖିନାହିଁ । ତୁମେ କିଏ ? ତୁମେ କଣ ବାସ୍ତବିକ ଭିଖାରିଣୀ ?'

ମେରି—ହଁ ମହାଶୟ, ଭିକ୍ଷା ମୋର ଏକମାତ୍ର ଉପଜୀବିକା । ମୁଁ କୌଣସି ବ୍ୟକ୍ତିର ପରିତ୍ୟକ୍ତା ସ୍ତ୍ରୀ ।

ଭଦ୍ରଲୋକ—ଏଠାରେ ଏପରି ଗୋଟାଏ ସମିତି ଅଛି, ଯେଉଁଠାରେ ପରିତ୍ୟକ୍ତା, ଅନାଥିନୀ ସ୍ତ୍ରୀମାନଙ୍କର ଭରଣପୋଷଣ ସକାଶେ ମାସିକ ବୃତ୍ତି ଦିଆ ହୁଏ । ତୁମେ ସେଠାକୁ ଯାଉ ନାହଁ କାହିଁକି ?

ମେରି—ପିତା ଓ ସ୍ୱାମୀଙ୍କର ନାମ ନ କହିଲେ ସେମାନେ କିଛି ଦିଅନ୍ତି ନାହିଁ । ମୁଁ ମୋ ପିତା ଓ ପତିଙ୍କର ନାମ ପ୍ରକାଶ କରିବି ନାହିଁ ।

ଭଦ୍ରଲୋକ କପୂତକାଳ ଗମ୍ଭୀର ଭାବରେ ଠିଆ ହୋଇ ମେରିଙ୍କ ହାତରେ ଦଶ ଗୋଟି ଫ୍ରାଙ୍କ୍ ଦେଲେ ଏବଂ କହିଲେ ଯେ, ଏକ ସପ୍ତାହ ପରେ ପୁଣି ସାକ୍ଷାତ୍ କଲେ ଆଉ କିଛି ସାହାଯ୍ୟ କରିବେ । ଅନାଥିନୀ ତାଙ୍କୁ ନମସ୍କାର କରି ସେଠାରୁ ପ୍ରସ୍ଥାନ କଲା ।

*

# ସମର ସଜ୍ଜା

ଆଜି ଅଷ୍ଟ୍ରିୟା-ରାଜକୁମାରୀ ମେରିଆ ଲୁଇଶା ପାଖରେ ଆସି ଉପସ୍ଥିତ ହୋଇଛନ୍ତି । ଫ୍ରାନ୍‌ସ ଆଶା କରିଥିଲା, ଲୁଇଶା ଫ୍ରାନ୍‌ସ ସହିତ ଅଷ୍ଟ୍ରିୟାର ଅବିଚଳିତ ବନ୍ଧୁତା-ସମ୍ବାଦ ନେଇ ଆସିବେ । କିନ୍ତୁ ଫରାସୀ ଜାତିର ସେଇ ଆଶା—ଶେଷ ଆଶା ଆଜି ବିଫଳ ହେଲା । ମେରିୟା ଲୁଇଶା ନେପୋଲିୟନଙ୍କର ବକ୍ଷ ଉପରେ ମସ୍ତକ ନ୍ୟସ୍ତ କରି ଲୋତକପୂର୍ଣ୍ଣ ଚକ୍ଷୁରେ କହିଲେ,—'ମୋ ପିତା ତୋର ସର୍ବନାଶରେ କୃତସଂକଳ୍ପ ହୋଇଅଛନ୍ତି ।'

ନେପୋଲିୟନ କହିଲେ—'ଆଶ୍ୱସ୍ତ ହୁଅ ସୁନ୍ଦରି ! ତମର ପିତା ପୁନର୍ବାର ଭିଏନା ଦ୍ୱାରରେ ମୋର ତୋପଧ୍ୱନି ଶୁଣିବେ ।'

ସମ୍ରାଟ ସେହି ମୁହୂର୍ତ୍ତରେ ସଭାଗୃହକୁ ଗମନ କଲେ । ସେ ଏଲ୍‌ବାରୁ ଆସି ଯେଉଁ ସନ୍ଧି ଓ ଶାନ୍ତି ପ୍ରସ୍ତାବ କରି ଇଉରୋପର ସକଳ ରାଜଧାନୀକୁ ଦୂତ ପଠାଇଥିଲେ, ତହିଁର ଫଳାଫଳ ଜଣାଇବା ନିମନ୍ତେ ମହାମନ୍ତ୍ରୀ କଲେନ୍‌କୋର୍ଟ ଉକ୍ତ ସଭାରେ ଯୋଗ ଦେଲେ । ସେ ନେପୋଲିୟନଙ୍କୁ ଜଣାଇଲେ, "ଇଉରୋପର ରାଜନୈତିକ ଗଗନରେ ପୁନର୍ବାର ମେଘମାଳା ସଜ୍ଜିତ ହୋଇଅଛି । ଅଷ୍ଟ୍ରିୟା, ସ୍ପେନ୍, ପର୍ତ୍ତୁଗଲ୍, ଗ୍ରେଟ୍‌ବ୍ରିଟେନ୍, ରୁସିୟା, ପ୍ରସିୟା ଓ ସୁଇଡ଼େନ୍ ଫ୍ରାନ୍‌ସ ବିରୋଧରେ

ମିଳନ-ପ୍ରସ୍ତାବରେ ସ୍ୱାକ୍ଷର କରିଅଛନ୍ତି । ସମ୍ମିଳିତ ଶକ୍ତି ସମୂହର ଆଠଲକ୍ଷ ସୈନ୍ୟ ଫ୍ରାନ୍‌ସର ସୀମାନ୍ତ ପ୍ରଦେଶରେ କେନ୍ଦ୍ରୀଭୂତ ହେବାକୁ ଚେଷ୍ଟା କରୁଛନ୍ତି । ମିତ୍ର ରାଜାମାନଙ୍କର ସାହାଯ୍ୟକଳ୍ପେ ଇଂଲଣ୍ଡ ପୁନର୍ବାର ଦଶ କୋଟି ସ୍ୱର୍ଣ୍ଣ ମୁଦ୍ରା ଦେବାକୁ ପ୍ରତିଶ୍ରୁତ ହୋଇଅଛି । ଆପଣଙ୍କର ସମସ୍ତ ସାଧୁ ପ୍ରୟାସ ବିଫଳ ହୋଇଅଛି । ପ୍ରେରିତ ଦୂତଗଣ ଯଥା ସ୍ଥାନରେ ପହଞ୍ଚି ପାରି ନାହାନ୍ତି—ସୀମାନ୍ତ ପ୍ରଦେଶରେ ବ୍ୟାହତ ବା ଧୃତ ହୋଇଅଛନ୍ତି ।'

ସମ୍ରାଟ ଗମ୍ଭୀର ଭାବ ଧାରଣ କରି କହିଲେ, 'ଅଷ୍ଟ୍ରିୟା ଫ୍ରାନ୍‌ସ ସଙ୍ଗେ ବନ୍ଧୁତା ରଖିବାକୁ ସାହସୀ ହୋଇଥିଲେହିଁ, ଇଉରୋପର ସମସ୍ତ ଶକ୍ତି ଏହି ଦୁଇ ଶକ୍ତିର ଅଧୀନ ହୋଇ ପାରିଥାନ୍ତେ । ଅଷ୍ଟ୍ରିଆ କିନ୍ତୁ ଆମମାନଙ୍କୁ ଛାଡ଼ି ଯାଇଛି । ତଥାପି ଭୟର କୌଣସି କାରଣ ନାହିଁ । ଫରାସୀ-ସିଂହକୁ ଲୌହପିଞ୍ଜରରେ ପୂରାଇବା ପାଇଁ ଇଉରୋପୀୟ ନୃପତି-ମାନଙ୍କୁ ଆହୁରି ଅଧିକ ଆୟୋଜନ କରିବାକୁ ହେବ । ମୁଁ ମୋର ଜୀବନ କଦାପି ଅଳ୍ପ ମୂଲ୍ୟରେ ବିକ୍ରୟ କରିବି ନାହିଁ ।'

ସଭାସଦ୍‌ଗଣ କ୍ରମଶଃ ମତାମତ ପ୍ରକାଶ କରିବାକୁ ଲାଗିଲେ । ଜଣେ କହିଲେ, "ଆମେମାନେ ବୈଦେଶିକଗଣଙ୍କୁ ଅଣୁ ମାତ୍ର ଭୟ କରୁ ନାହୁଁ । ଆମମାନଙ୍କର ଭୟ ଗୃହଶତ୍ରୁଙ୍କୁ । ଫ୍ରାନ୍‌ସର ରୟାଲିଷ୍ଟମାନେ ଗୁପ୍ତଭାବରେ ସମ୍ମିଳିତ ଶକ୍ତି ସମୂହ ସହିତ ଯୋଗ ଦାନ କରିଛନ୍ତି । ସର୍ବାଗ୍ରେ ଏହା ନିବାରିତ କରିବା ଆବଶ୍ୟକ । ବିପ୍ଳବ ଆରମ୍ଭରେ ଷୋଡ଼ଶ ଲୁଇ ନିହତ ହେବାକ୍ଷଣି ଯେତେବେଳେ କ୍ରୋଧାନ୍ଧ ଅଷ୍ଟ୍ରିୟା ସୀମାନ୍ତ ପ୍ରଦେଶକୁ ଲକ୍ଷ ଲକ୍ଷ ସୈନ୍ୟ ପଠାଇଥିଲା, ସେତେବେଳେ ଏକ-ମାତ୍ର ରୟାଲିଷ୍ଟ-ରୁଧିର ସେମାନଙ୍କ ହୃଦୟରେ ବିଭୀଷିକା ଉତ୍ପାଦନ କରି ଥିଲା । ଆଜି ଏହି ଆସନ୍ନ ବିପଦରେ ଯଦି ସମ୍ରାଟ୍ ଦୟା କରି ଅନ୍ତତଃ ବାର ଜଣ ରୟାଲିଷ୍ଟଙ୍କୁ ଗିଲୋଟିନରେ ଚଢ଼ାଇବାର ଆଦେଶ ପ୍ରଦାନ କରନ୍ତି, ତାହା ହେଲେ ଫ୍ରାନ୍‌ସର ସକଳ ବିପଦ ଘୁଞ୍ଚିଯିବ ।"

ଏହା ଶୁଣି ସମ୍ରାଟ୍ ହାସ୍ୟ ସମ୍ବରଣ କରି ପାରିଲେ ନାହିଁ । କିନ୍ତୁ ନିମେଷ ମଧ୍ୟରେ ତାଙ୍କର ନୟନଯୁଗଳ ରୋଷକଷାୟିତ ଭାବ ଧରି

ଉଠିଲା । ସେ ଭ୍ରୂଯୁଗଳ ଆକୁଞ୍ଚିତ କରି ଗମ୍ଭୀର କଣ୍ଠରେ କହିଲେ, "କିଏ କହୁଛି ଫରାସୀ ଉପପ୍ଲବ ଅନୁକରଣର ସାମଗ୍ରୀ ? ମାତୃ-ବକ୍ଷରେ ପଦାଘାତ କରି କିଏ କେବେ ଅବ୍ୟାହତି ପାଇଅଛି ? ବିପ୍ଳବକ ଶାସନକର୍ତ୍ତାମାନେ ନରହତ୍ୟାଦ୍ୱାରା କୌଣସି ଫଳ ଲାଭ କରିଥିଲେ ? ମୋ ଶାସନମନ୍ତ୍ରର ମୂଳ ମନ୍ତ୍ର ଦାନ, ହରଣ ନୁହେ । ଦେଶପାଇଁ ନିଜର ପ୍ରାଣ ଦିଅ, ଅନ୍ୟର ପ୍ରାଣ ହରଣ କର ନାହିଁ ।"

ବହୁବାଦାନୁବାଦ ପରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାହିଁ ଉଚିତ ବୋଧ ହେଲା । ଫ୍ରାନ୍ସର ସର୍ବଶୁଦ୍ଧ ଦୁଇ ଲକ୍ଷ ଅଶୀଏ ହଜାର ସେନା ମଧ୍ୟରେ, ଏକଲକ୍ଷ କୋଡ଼ିଏ ହଜାର ସୈନ୍ୟ ମାତ୍ର ନେଇ ବୀର ନେପୋଲିୟନ ବିପୁଳ ଶତ୍ରୁବାହିନୀର ସମ୍ମୁଖୀନ ହେବାକୁ ବାହାରିଲେ ।

*

## ଫାଦାର୍ ମ୍ୟାଡ଼ାଲିନ୍

ଜିନ୍ ଦରିଦ୍ର ସନ୍ତାନ । ତାହାର ପିତା ଶାରୀରିକ ପରିଶ୍ରମଦ୍ୱାରା ଜୀବିକା ନିର୍ବାହ କରୁଥିଲା । ବାଲ୍ୟକାଳରେ ଜିନ୍‌ର ପିତାମାତାଙ୍କର ମୃତ୍ୟୁ ହେବା ପରେ ସେ ଜ୍ୟେଷ୍ଠା ଭଗିନୀଦ୍ୱାରା ପ୍ରତିପାଳିତ ହୋଇଥିଲା । ଜିନ୍ ପ୍ରାପ୍ତ ବୟସ୍କ ହେବା ପରେ ତାହାର ଭଗିନୀ ବିଧବା ହୋଇଥିଲା । ଭଗିନୀ ଓ ତାହାର ଛ'ଟି ଶିଶୁ ସନ୍ତାନଙ୍କର ପ୍ରତିପାଳନଭାର ଜିନ୍ ଉପରେ ପଡ଼ିଥିଲା । ସେ ସାରାଦିନ ପରିଶ୍ରମ କରି ଏକ ଫ୍ରାଙ୍କ୍ ଉପାର୍ଜନ କରେ ଏବଂ କେବେ କେବେ ନିଜେ ଉପବାସରେ ରହି ସୁଦ୍ଧା ଭଗିନୀର ଶିଶୁମାନଙ୍କୁ ଖୁଆଏ ।

ଏହି ସମୟରେ ଜିନ୍ ଦିନେ କିଛି ଉପାୟ କରି ନପାରି, ରାତିବେଳେ ଗୃହକୁ ଫେରି ଦେଖିଲା ଯେ, ଗୋଟିଏ ଶିଶୁ କ୍ଷୁଧା-ଯନ୍ତ୍ରଣାରେ ଅନବରତ ଚିତ୍କାର କରୁଅଛି । ଦୁଇ ପଇସା ମୂଲ୍ୟର ଖଣ୍ଡିଏ

ରୁଟିର ଯୋଗାଡ଼ କରି ପାରିଲେ, ଏ ବିପଦରୁ ପରିତ୍ରାଣ ପାଇବାର କଥା; କିନ୍ତୁ ସେ ଦିନ ସେଇ ରୁଟିଖଣ୍ଡିକର ବି ସଂସ୍ଥାନ ହୋଇ ପାରିଲା ନାହିଁ । ଜିନ୍ ଅନନ୍ୟୋପାୟ ହୋଇ ନିକଟବର୍ତ୍ତୀ ରୁଟିଦୋକାନକୁ ଯାଇ 'ଖଣ୍ଡିଏ ରୁଟି ଧାର ଦିଅ' ବୋଲି ଚିତ୍କାର କଲା । ସେତେବେଳେ ଦୋକାନଦାର ନିଦ୍ରିତ । ଜିନ୍‌ର ଚିତ୍କାରରେ ବି ରୁଟିଓୟାଲାର ନିଦ୍ରାଭଙ୍ଗ ହେଲା ନାହିଁ । ଜିନ୍ ଦୋକାନର ଝରକା ଭାଙ୍ଗି ଭିତରେ ପଶିଲା ଏବଂ ଖଣ୍ଡିଏ ରୁଟି ଉଠାଇ ନେଲା । ରୁଟି ଧରି ଯିବାବେଳେ ଦୋକାନଦାର ତାହାକୁ ଦେଖି ଆଉ ଦୁଇ ଜଣ ଲୋକଙ୍କୁ ସଙ୍ଗେ ନେଇ ତାହାକୁ ଧରି ପକାଇଲା । ତତ୍‌କ୍ଷଣାତ୍ ଜିନ୍ ପୁଲିସ ହାତରେ ସମର୍ପିତ ହେଲା—ଘରକୁ ଆଉ ବାହୁଡ଼ି ପାରିଲା ନାହିଁ ।

ପ୍ରଥମତଃ ଜିନ୍‌କୁ ଏକ ବର୍ଷ କାରାବାସ ଦଣ୍ଡ ଦିଆଗଲା । ସେ ଏଗାର ମାସ କାଳ ସଶ୍ରମ କାରାବାସ କରି କୌଶଳରେ ଜେଲ୍ ଭାଙ୍ଗି ପଳାଇଲା । ଜେଲ୍ ଭାଙ୍ଗିଲେ ତ ଦ୍ୱିଗୁଣ ଦଣ୍ଡ—ଜିନ୍ ପୁଣି ଦୁଇ ବର୍ଷ ଜେଲ୍ ଖଟିଲା । ସେ ଅମ୍ଳାନ ବଦନରେ ଦେଢ଼ ବର୍ଷ ଜେଲ୍ ଦଣ୍ଡ ଭୋଗ କରି, ପ୍ରହରିମାନଙ୍କ ଆଖିରେ ଧୂଳି ପକାଇ ପୁନର୍ବାର ଜେଲରୁ ବାହାରି ପଡ଼ିଲା । ଫଳତଃ ଅଠର ବର୍ଷ କାରାରୁଦ୍ଧ ରହି ଶେଷରେ ସେ ପୁଣି ଜେଲ୍ ଭାଙ୍ଗି ବାହାର ହୋଇଅଛି—ଆଉ ଧରା ପଡ଼ି ନାହିଁ । ସେ କିପ୍ରକାରେ ସମ୍ରାଟଙ୍କ ଅଭିଯାନରେ ମିଳିତ ହୋଇ କିପରି ପାରିସ୍‌କୁ ଆସିବାକୁ ସମର୍ଥ ହୋଇଥିଲା, ତାହା ବର୍ଣ୍ଣିତ ହୋଇଅଛି ।

ଜିନ୍ ଅଧିକ ବିଦ୍ୟା ଶିକ୍ଷା କରି ନାହିଁ ସତ, ତାହାର ବୁଦ୍ଧି କିନ୍ତୁ ସାତିଶୟ ତୀକ୍ଷ୍ଣ । ତାହାର ହୃଦୟରେ ମାନବ-ହୃଦୟର ସଦ୍‌ବୃତ୍ତିନିଚୟର ଅଭାବ ନାହିଁ; କେବଳ ଦାରିଦ୍ର୍ୟ ଓ ନିର୍ଯାତନ ପ୍ରଭାବରେ ସେ ସକଳ ସଦ୍‌ବୃତ୍ତି ଏତେ ଦିନ ଧରି ଚିର-ନିଦ୍ରିତବତ୍ ହୋଇ ପଡ଼ିଥିଲା । ପରମ-କାରୁଣିକ ବିଶପ୍‌ଙ୍କ ଅନୁଗ୍ରହରେ ସେ ସବୁ ଯେପରି ପୁଣି ଜାଗି ଉଠିଛି ।

ସେଇ ଜିନ୍ ଆଜି ପାରିସ୍ ନିକଟସ୍ଥ 'ଲି' ନାମକ ଶ୍ରେଷ୍ଠ ସହରରେ 'ଫାଦାର୍ ମ୍ୟାଡ଼ାଲିନ୍' ନାମ ଧାରଣ କରି ବାଣିଜ୍ୟ ବ୍ୟବସା କରୁଅଛି ।

ବ୍ୟବସା ଉପଲକ୍ଷ ମାତ୍ର—ମନୁଷ୍ୟର ମଙ୍ଗଳ ସାଧନରେ ସେ ପ୍ରବୃତ୍ତ । ସେ ଦୃଢ଼ ପ୍ରତିଜ୍ଞା କରିଅଛି, ଉପାର୍ଜିତ ଅର୍ଥ ପର ପାଇଁ ଉତ୍ସର୍ଗ କରିବ । ପଣ୍ଡିତମାନେ କହନ୍ତି—'ନଷ୍ଟେନେନ ଧନଂ ପ୍ରାପ୍ୟ, ତୃଣବତ୍ ମନ୍ୟତେ ଜଗତ୍' । ନିର୍ଧନ ଜନ୍‌ର ବ୍ୟବହାର କିନ୍ତୁ ଏହି ମହାଜନ-ବାକ୍ୟର ଠିକ୍ ବିପରୀତ । ସେ ପ୍ରତ୍ୟହ ଶତ ଫ୍ରାଙ୍କ୍ ଉପାର୍ଜନ କରି ସୁଦ୍ଧା ଜଗତକୁ ତୃଣ ଜ୍ଞାନ କରେ ନାହିଁ—ବରଂ ସମାଗତ ଦରିଦ୍ର ସନ୍ତାନଗଣଙ୍କୁ ଆଦରରେ କୋଳକୁ ନିଏ । ତାହାର ଭାଗ୍ୟଲକ୍ଷ୍ମୀ ପ୍ରାବୃଟ୍‌କାଳର ଜାହ୍ନବୀ-ବନ । ଦିନ ଉତ୍ତରୋତ୍ତର ସ୍ଫୀତା । ଆଜି ନ୍ୟୂନାଧିକ ଏକ ଶତ ଲୋକ ଜନ୍ ନିକଟରୁ ଅନ୍ନ ବସ୍ତ୍ର ପାଉଛନ୍ତି ।

ଜିନ୍‌ର ଅତୁଳ ଐଶ୍ୱର୍ଯ୍ୟ ସର୍ବଦା ବିବିଧ ସଦ୍‌ବ୍ୟୟରେ ବ୍ୟୟିତ ହେବାକୁ ଲାଗିଲା । ସେ ଏହି ସହରରେ ଗୋଟିଏ ପ୍ରକାଣ୍ଡ ଔଷଧାଳୟ ଓ ଗୋଟାଏ ସୁନ୍ଦର ଦରିଦ୍ର-ନିବାସ ନିର୍ମାଣ କଲା । ସହରର ଦରିଦ୍ର ଭିକ୍ଷୁକମାନଙ୍କ ସଂଖ୍ୟା ତାହାର କୃପାରେ ଆସ୍ତେ ଆସ୍ତେ କମି ଆସିଲା । ସେ ହେଲା ସମସ୍ତଙ୍କର ପିତୃ ସ୍ୱରୂପ—ତାର ନାମ କ୍ରମେ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ସମସ୍ତେ କହିବାକୁ ଲାଗିଲେ ଯେ, ଫାଦାର ମ୍ୟାଡ଼ାଲନ୍ ବିପୁଳ ସମ୍ପତ୍ତିର ଅଧିକାରୀ, ଦୟାମାୟାର ଆବାସଭୂମି ।

*

# ଅଭିଯାନ

ନେପୋଲିୟନ ସ୍ଥିର କଲେ, ଶତ୍ରୁମାନଙ୍କୁ ମିଳିତ ହେବା ଆଗରୁ ସ୍ୱତନ୍ତ୍ର ଭାବରେ ଜଣକ ପରେ ଜଣକୁ ନିଧନ କରିବେ । ଜୁନ୍ ମାସ ୨୧ ହବା ତିନ ଘଟିକା ସମୟରେ ଟୁଇଲରିରୁ ଅବତରଣ କରିବା ବେଳେ ସେ ଅନୁଚରବର୍ଗଙ୍କୁ ସମ୍ଭାଷଣ ପୂର୍ବକ କହିଲେ,—'ମହାଶୟଗଣ ! ଆମେ-ମାନେ ମରିବାକୁ ଅଥବା ଜୟଲାଭ କରିବାକୁ ଯାଉଅଛୁ ।' ପରେ ଚତୁର୍ଦ୍ଦିଗସ୍ଥ ପୁଷ୍ପିତ ଓ ଫଳିତ ରମଣୀୟ ଉଦ୍ୟାନ ଶ୍ରେଣୀ ଉପରେ ଦୃଷ୍ଟି

ନିକ୍ଷେପ କଲେ । ପରେ ଗଳଦଶ୍ରୁନୟନା ମେରିୟା ଲୁଇସାଙ୍କର ବିଦାୟ ଗ୍ରହଣ ଏବଂ ଶିଶୁ ପୁତ୍ରର ମୁଖଚୁମ୍ବନ କରି ଶକଟାରୋହଣ କଲେ । ଏକ ବିନ୍ଦୁ ଅଶ୍ରୁ ତାଙ୍କର ଗଣ୍ଡଦେଶ ସିକ୍ତ କରି ପ୍ରବାହିତ ହେଲା ।

ସୁଦୀର୍ଘ ଅଭିଯାନ ଚାଲିଲା । ଫ୍ରାନସ ସେଇ ଗୌରବର ଅଭିଯାନ, —ବିଧାତା ଯାହାକୁ ବରମାଲ୍ୟରେ ମଣ୍ଡିତ କରିବା ବଦଳରେ ବରଂ ଅବିନଶ୍ୱର କୀର୍ତ୍ତିରେ ବିଭୂଷିତ କରିବାରେ ପ୍ରୀତ ହୋଇଥିଲା— ଜାତୀୟ ସଙ୍ଗୀତ, ରଣବାଦ୍ୟ ଏବଂ 'ଭାଇଭ୍ ଏଲ୍ ଏମ୍ପାରର୍' ଧ୍ୱନିରେ ଦଶ ଦିଗ ମତାଇ ଚାଲିଲା । ରୁ ସେଣ୍ଟ୍ ଡେନିସ୍‌ରୁ ନଗର-ପ୍ରାନ୍ତ ପର୍ଯ୍ୟନ୍ତ ସକଳ ସ୍ଥାନରେ ଭାବୀ ଓ୍ୱାଟର୍ଲୁ'ର ବୀରଗଣଙ୍କ ମସ୍ତକରେ ଅଜସ୍ର କୁସୁମ ବୃଷ୍ଟି ହେବାକୁ ଲାଗିଲା ।

ବାଲ୍ୟକାଳରେ ନେପୋଲିୟନ୍ ବ୍ରିନ୍ ନାମକ ସ୍ଥାନରେ ବିଦ୍ୟାଭ୍ୟାସ କରିଥିଲେ । ଆଜି ବିଂଶ ବର୍ଷ ପରେ ପୁନର୍ବାର ସେଇ ବ୍ରିନ୍ କଲେଜ ନିକଟରେ ଉପସ୍ଥିତ ହୋଇ ସେ ସେପରି ମୁହୂର୍ତ୍ତିକ ପାଇଁ ସମର ଚିନ୍ତାରୁ ଅବସର ପାଇଲେ । ସେ ଶକଟରୁ ଓହ୍ଲାଇ ପ୍ରସନ୍ନ ମୁଖରେ କଲେଜ ଆଡ଼କୁ କେତେକ ପଦ ଅଗ୍ରସର ହେଲେ । ଜଣେ ବୁଢ଼ା ପଥପାର୍ଶ୍ୱରେ କାଠ ଗୋଟାଉଥିଲା । ସେ ସର୍ବପ୍ରଥମରେ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସମ୍ରାଟ୍ ବୁଢ଼ା ନିକଟକୁ ଯାଇ ପଚାରିଲେ, "ତିରିଶି ବର୍ଷ ତଳେ ଏ କଲେଜରେ ବୋନାପାର୍ଟ ନାମରେ ଜଣେ ଛାତ୍ର ପଢ଼ୁଥିଲା, —ତାହାକୁ ତୁମେ ଚିହ୍ନିଛ ?"

ବୁଢ଼ା—ହଁ ଚିହ୍ନିଛି । ମୁଁ ସେତେବେଳେ କଲେଜର ବାଳକମାନଙ୍କୁ ଫଳ ବିକୁଥିଲି ।

ସମ୍ରାଟ—ତୁମେ ବୋନାପାର୍ଟକୁ ଯେଉଁ ଫଳ ବିକ୍ରି କରୁଥିଲ, ମନେ କରି ଦେଖ, ସେଥିପାଇଁ ତାଠାରୁ ତୁମର କିଛି ପାଇବାର ଅଛି କି ନା ?

ବୁଢ଼ା—ସେ ସମସ୍ତ ଫଳର ମୂଲ୍ୟ ଦେଉଥାନ୍ତି—ତହିଁ ଉପରେ ଫେର୍ ସେ ମୋତେ କେବେ କେବେ ପୁରସ୍କାର ଦିଅନ୍ତି । ଯେଉଁ ସକଳ

ଦୁଷ୍ଟ ଗ୍ରହ ଫଳ ନେଇ ଦାମ୍ ଦେଉନ୍ତି ନାହିଁ, ବୋନାପାର୍ଟ ସେମାନଙ୍କଠାରୁ ଆଦାୟ କରି ଆଣି ଦେଉନ୍ତି । ତାଙ୍କ ନିକଟରୁ ମୋର କିଛି ପାଉଣା ନାହିଁ ।

ସମ୍ରାଟ୍—ଦେଖ, ତୁମେ ବୁଢ଼ୀ ହୋଇଅଛ—ବୋଧହୁଏ ସବୁ କଥା ତୁମର ମନେ ନାହିଁ । ବୋନାପାର୍ଟର ଖାତାରେ, ତୁମ ନିକଟରେ ତାହାର ଋଣ କଥା ଲେଖା ଅଛି । ଏଣୁ ସେ ତୁମ ପାଇଁ ଏ ଥଳୀଟି ପଠାଇଛି, ନିଅ ।

ବୁଢ଼ୀ ହାତ ବଢ଼ାଇ ଥଳୀଟି ନେଲା । ନେପୋଲିୟନ ଶେକଟା-ବେହଣ କଲେ । ବୁଢ଼ୀ ଥଳୀଟି ଖୋଲି ଦେଖିଲା, ତନ୍ମଧ୍ୟରେ କୋଡ଼ିଏ ଗୋଟି ସ୍ୱର୍ଣ୍ଣମୁଦ୍ରା ଅଛି ।

ଜୁନ୍ ୧୪ ଶ ଦିବସ ସମ୍ରାଟ୍ କାର୍ଲେରି ନାମକ ସ୍ଥାନରେ ଉପସ୍ଥିତ ହେଲେ । ଏଠାରେ ପ୍ରୁସିୟା ସେନାପତି ବ୍ଲୁକାରଙ୍କର ଦଶ ସହସ୍ର ସୈନ୍ୟ ଥିଲେ । ତାହାର ଏକ ଚତୁର୍ଥାଂଶ ଫରାସୀମାନଙ୍କ ହାତରେ ନିହତ ହେଲେ । ଏହି ସ୍ଥାନରୁ ବେଲ୍‌ଜିୟମ ରାଜଧାନୀ ବ୍ରସେଲ୍‌ସ ଛଅକୋଶ ମାଇଲ । ଡିଉକ୍ ଅବ୍ ଓ୍ୱେଲିଂଟନ୍ ଏହି ଶେଷୋକ୍ତ ନଗରୀରୁ ଲକ୍ଷାଧିକ ସୈନ୍ୟ ନେଇ ଅଗ୍ରସର ହେଉଥିଲେ । ଏଣେ ବ୍ଲୁକାର୍ ମଧ୍ୟ ନାମୁର ଦୁର୍ଗରୁ ଏକଲକ୍ଷ ବିଂଶ ହଜାର ସେନା ସହ ଡ଼ିଉକ୍ ମହାଶୟଙ୍କ ସଙ୍ଗେ ମିଳିତ ହେବାକୁ ଚେଷ୍ଟା କରୁଥିଲେ । ନେପୋଲିୟନ ବର୍ତ୍ତମାନ ମଧ୍ୟବର୍ତ୍ତୀ କୋୟାର୍ଟର୍ ବ୍ରାସ୍ ନାମକ ସ୍ଥାନରେ ଚାଳିଶି ହଜାର ସୈନ୍ୟ ସହ ମାର୍ଶାଲ୍ ନେ'ଙ୍କୁ ପଠାଇ ଉଲ୍ଲିଖିତ ମଣି-କାଞ୍ଚନ-ଯୋଗରେ ବିଘ୍ନ ଘଟାଇ ପକାଇଲେ । ମାର୍ଶାଲ ନେ ପ୍ରଥମ ସେନାପତି ପଦରେ ନିଯୁକ୍ତ ହୋଇଥିଲେ । ମାର୍ଶାଲ୍ ସୁଲ୍‌ଟ ଥିଲେ ଦ୍ୱିତୀୟ ସେନାପତି ।

ନେପୋଲିୟନ କୋୟାର୍ଟର ବ୍ରାସ ଓ ନାମୁର୍ ମଧ୍ୟବର୍ତ୍ତୀ ଲିଗ୍‌ନି ନାମକ ସ୍ଥାନରେ ଉପସ୍ଥିତ ହୋଇ ଅକସ୍ମାତ୍ ବ୍ଲୁକାରଙ୍କର ଦେଖା ପାଇଲେ । ବ୍ଲୁକାର୍ ଖିଆଲମତ ଯୁଦ୍ଧ ଚଳାଇଲେ ନାହିଁ । ସେ ପୃଷ୍ଠ ପ୍ରଦର୍ଶନ କରୁ କରୁ ଦୁର୍ଜ୍ଜୟ ଫରାସୀଗଣ ପ୍ରୁସିଆର କୋଡ଼ିଏ ହଜାର ସୈନ୍ୟକୁ

ଏକ ସମୟରେ ସମାଧାନ କରି ପକାଇଲେ ଏବଂ ଅନ୍ୟୂନ ଦଶ ସହସ୍ର ସୈନିକଙ୍କୁ ବନ୍ଦୀ କରି ନେଲେ ।

ଡଉକ୍ ଅବ୍ ଓୟେଲିଂଟନ ଶୁଣି ପାରିଲେ ନେପୋଲିୟନ ଫ୍ରାନ୍ସ-ସୀମା ଅତିକ୍ରମ କରି ବ୍ରସେଲ୍ସ ଅଭିମୁଖରେ ଆସୁଅଛନ୍ତି । ତାଙ୍କର ବଦନମଣ୍ଡଳ ପ୍ରଭାତକାଳୀନ ଶେଫର ଅପେକ୍ଷା ବି ନିଷ୍ପ୍ରଭ ହୋଇ ଉଠିଲା । ଅଥଚ କ୍ଷଣକାଳ ମଧ୍ୟରେ ଡଉକ୍ ମହାଶୟ କର୍ତ୍ତବ୍ୟାବଧାରଣ କରିବାକୁ ସକ୍ଷମ ହେଲେ । ସେ ସର୍ବାଗ୍ରେ କୋୟାର୍ଟାର ବ୍ରାସ୍ ଅଧିକାର କରିବା ସମୁଚିତ ବୋଧ କଲେ । ଯୁଦ୍ଧବାଦ୍ୟ ବାଜି ଉଠିଲା । ଏକ ଘଣ୍ଟା ମଧ୍ୟରେ ତାଙ୍କର ବିପୁଳ ବାହିନୀ ସେହି ଦିଗରେ ଧାବିତ ହେଲା ।

ପ୍ରାତଃକାଳରେ ମାର୍ଶାଲ୍ ନେ କୋୟାର୍ଟାର ବ୍ରାସ୍ ପ୍ରତି କିଞ୍ଚିତ୍ ଅଗ୍ରସର ହୋଇ ଦେଖିଲେ, ଡଉକଙ୍କର ସୈନ୍ୟଗଣ ରାତିବେଳେ ସେହି ସ୍ଥାନ ଅଧିକାର କରିଅଛନ୍ତି । ସେ ସ୍ତମ୍ଭିତ ହୋଇଗଲେ । ଏହି ସମୟରେ ସମ୍ରାଟଙ୍କ ନିକଟରୁ ଜଣେ ଦୂତ ଆସି ନେଙ୍କୁ ଖଣ୍ଡିଏ ପତ୍ର ଦେଲା । ସମ୍ରାଟ୍ ଲେଖିଥିଲେ,—'ଫ୍ରାନ୍ସର ଭାଗ୍ୟ ତୁମର ହାତରେ ନିର୍ଭର କରିଅଛି । ଯଦ୍ୟପି କୋୟାର୍ଟାର ବ୍ରାସ ଅଧିକୃତ ହୋଇଥାଏ, ସେଠାରେ କେତେକ ସୈନ୍ୟ ରଖି ଅବଶିଷ୍ଟ ସୈନ୍ୟ ସହିତ ବ୍ଲୁକରଙ୍କର ପଳାୟନ ପଥରେ ଅଗ୍ରସର ହୁଅ ।' ମାର୍ଶାଲ୍ ମହାଶୟ ଏହି ସମ୍ବାଦରେ ସାତିଶୟ ଚିନ୍ତିତ ହୋଇ ପଡ଼ିଲେ । ତଥାପି ଆଉ ଚିନ୍ତାର ସମୟ ନାହିଁ । ଇଂରେଜର କମାଣ ଗର୍ଜନ କରି ଉଠିଲା । ଦେଖୁଁ ଦେଖୁଁ ଡଉକଙ୍କର ଗୋଳା ଆସି ମାର୍ଶାଲଙ୍କ ସୈନ୍ୟବ୍ୟୂହ ମଧ୍ୟରେ ନିପତିତ ହେଲା । ସେ ସମୀପସ୍ଥ 'କେଲରମାନ' ନାମକ ସେନାପତିଙ୍କ ଆଡ଼କୁ ଅଗ୍ରସର ହେବାକୁ ଆଦେଶ ପ୍ରଦାନ କଲେ । କେଲରମାନ ଅମିତ ବିକ୍ରମରେ ଡଉକଙ୍କର ସେନାକୁ ଆକ୍ରମଣ କଲେ । ଅସଂଖ୍ୟ ଇଂରାଜ ସୈନ୍ୟ ଧରାଶାୟିତ ହେଲେ ସତ, କିନ୍ତୁ କୋୟାର୍ଟାର ବ୍ରାସ୍ ଫରାସୀମାନଙ୍କର ଅଧିକୃତ ହୋଇ ପାରିଲା ନାହିଁ ।

ନେପୋଲିୟନ ଏ ସମ୍ବାଦ ପାଇଲେ । ସେ କୌଣସି ଅସନ୍ତୋଷ ପ୍ରକାଶ ନକରି ମାର୍ଶାଲ୍ ନେଙ୍କୁ ପ୍ରିୟ ବାକ୍ୟରେ କହି ପଠାଇଲେ,

ହତାଶ ହୁଅ ନାହିଁ, ମୁଁ ତୁମର ସାହାଯ୍ୟ ପାଇଁ ଆସୁଛି ।' ସେ ତତ୍‌କ୍ଷଣାତ୍ 'ଗ୍ରାକ' ନାମକ ପରାକ୍ରମଶାଳୀ ସେନାପତିଙ୍କୁ ତିଂଶ ସହସ୍ର ସୈନ୍ୟ ସହ ବ୍ଲୁକାରଙ୍କର ଅନୁସରଣ କରିବାକୁ ଆଦେଶ ଦେଇ ସ୍ୱୟଂ କୋୟାଟଂ ର ବ୍ରାସ୍ ଯାତ୍ରା କଲେ ।

ଏଣେ ନେପୋଲିୟନଙ୍କର ଆଗମନ ସମ୍ବାଦ ପାଇ, ଡ଼ିଉକ୍ ମହାଶୟଙ୍କର ଉକ୍ତ ସ୍ଥାନରେ ରହିବାକୁ ଆଉ ଭରସା ହେଲା ନାହିଁ । ସେ କ୍ରମେ ଅଗ୍ରଗାମୀ ହେବାକୁ ଲାଗିଲେ । ବ୍ରସେଲ୍‌ସ୍ ବଗରେ ଛ'ମାଇଲ ଅଗ୍ରସର ହେଲେ ଓ୍ୱାଟାଲୁ'ର ବିସ୍ତୀର୍ଣ୍ଣ କ୍ଷେତ୍ର । ଏହି ସ୍ଥାନର ଭୂବୃତ୍ତାନ୍ତ ଓ୍ୱେଲିଂଟନଙ୍କର କଣ୍ଠସ୍ଥ ଥିଲା । ସ୍ଥାନଟି ସୁବିଧାଜନକ ଦେଖି ସେ ସେଠାରେ ଦେଢ଼ ମାଇଲ ବ୍ୟାପୀ ଉଚ୍ଚ ଭୂମି ଉପରେ ସମଗ୍ର ସେନା-ସନ୍ନିବେଶନ ପୂର୍ବକ ସତୃଷ୍ଣ ନୟନରେ ବ୍ଲୁକାରଙ୍କର ଆଗମନ ପ୍ରତୀକ୍ଷା କରିବାକୁ ଲାଗିଲେ ।

ସନ୍ଧ୍ୟାର ପ୍ରାକ୍‌କାଳରେ ନେପୋଲିୟନ ସସୈନ୍ୟ ଓ୍ୱାଟଲୁ'ର ପ୍ରାନ୍ତଭାଗରେ ଉପସ୍ଥିତ ହେଲେ । ଉନ୍ନତ ଭୂଭାଗ ଶତ୍ରୁ-କରତଳଗତ, ସୁତରାଂ ଅପେକ୍ଷାକୃତ ନିମ୍ନ ପ୍ରଦେଶରେ ତାଙ୍କର ସେନା ସନ୍ନିବିଷ୍ଟ ହେଲା । ଏତିକବେଳେ ଅସ୍ତାଚଳ-ଶିଖରାବଲମ୍ବୀ ଭଗବାନ୍ ମରୀଚିମାଳୀଙ୍କ ପ୍ରତି ପ୍ରଗାଢ଼ ଦୃଷ୍ଟିପାତ କରି ନେପୋଲିୟନ ଗମ୍ଭୀର ସ୍ୱରରେ କହିଥିଲେ, 'ଭବଦୀୟ ଅସ୍ତଗମନର ଆଉ ଦୁଇ ଘଣ୍ଟା କାଳ ବିଳମ୍ବ ହୋଇଥିଲେ, ଆଜି ଇଉରୋପରେ ଇତିହାସ ଭିନ୍ନ ରୂପ ପରିଗ୍ରହ କରିଥାନ୍ତା ।'

*

## ଧାତ୍ରୀ-ଶିବିରରେ

ମନୁଷ୍ୟ ସକଳ ବାଧାବିଘ୍ନ ଅତିକ୍ରମ କରି ପାରେ, କିନ୍ତୁ ଦୈବ-ବାଧା ଉପରେ ତାହାର ହାତ ନାହିଁ । ସନ୍ଧ୍ୟାଗମରେ ମେଘାରମ୍ଭ ହେଲା ।

ରାତି ତମାମ ଅବଶ୍ରାନ୍ତ ବୃଷ୍ଟି ହେବାରୁ ସେହି ନିମ୍ନଭୂମିରେ ବହୁତ ଜଳ ଓ କର୍ଦ୍ଦମ ଜମିଗଲା—ପ୍ରାତଃକାଳରେ କମାଣ ଟଣା ହୋଇ ପାରିଲା ନାହିଁ, ଚକ ବସିଗଲା ।

ନେପୋଲିୟନ ଚିନ୍ତିତ ହୋଇ ପଡ଼ିଲେ । କମାଣପରିଚାଳନାରେ କୌଣସି ଜେନାରେଲ୍ ତାଙ୍କର ସମକକ୍ଷ ନଥିଲେ । ଏହି ଭୟଙ୍କର ଯୁଦ୍ଧାସ୍ତ୍ରରେ ସେ ସିଦ୍ଧହସ୍ତ ଥିଲେ । ଶତ୍ରୁସୈନ୍ୟର ଦୁର୍ଭେଦ୍ୟ ସ୍ଥଳ ଲକ୍ଷ୍ୟ କରି ଅଜସ୍ର ଗୋଳା ବର୍ଷଣ କରିବା ହିଁ ତାଙ୍କ ବିଶ୍ୱ-ବିଜୟର ମୂଳସୂତ୍ର ସ୍ୱରୂପ ଥିଲା । ଆସନ୍ନ ସମରରେ ତାଙ୍କର ସୈନ୍ୟସଂଖ୍ୟା ଶତ୍ରୁସୈନ୍ୟର ଅର୍ଦ୍ଧେକ ମାତ୍ର ହେଲେହେଁ ତାଙ୍କର କୌଣସି ଆଶଙ୍କା ନଥିଲା, କାରଣ ତାଙ୍କ ହାତରେ ଦୁଇ ଶହ ପଚାଶି ଗୋଟି କମାଣ ଥିଲା । କିନ୍ତୁ ନିଦାରୁଣ ଆକାଶ ସମସ୍ତ କାର୍ଯ୍ୟ ନଷ୍ଟ କରିବାକୁ ବସିଲା ।

ବୃଷ୍ଟି ଆରମ୍ଭ ହେଲା । ନେପୋଲିୟନ ଅଶ୍ୱାରୋହଣରେ ସେନା ପରିଦର୍ଶନ କରିବାକୁ ବହିର୍ଗତ ହେଲେ । ସେହି ବିସ୍ତୀର୍ଣ୍ଣ ପ୍ରାନ୍ତରରେ ସେ ଯେଉଁ ସ୍ଥାନକୁ ଗଲେ, ସେହି ସ୍ଥାନ 'ଭାଇଭ୍ ଏଲ୍ ଏମ୍ପରର୍' ଧ୍ୱନିରେ ମୁଖରିତ ହେବାକୁ ଲାଗିଲା । ବର୍ଷାଜଳ-ସିକ୍ତ ସେନାମଣ୍ଡଳୀ ଅଗ୍ନି ଜାଳି ଶୀତାର୍ତ୍ତଦେହର ଉଷ୍ଣତା ସମ୍ପାଦନ କରୁଥିଲେ । ସେନା ପରିଦର୍ଶନ କରି ସମ୍ରାଟ୍ ଅଦୂରବର୍ତ୍ତୀ ହାସପାତାଲରେ ଉପସ୍ଥିତ ହେଲେ ।

ଏହି ସ୍ଥାନରେ ସାର୍ଜନ୍ ଜେନାରେଲ୍ ଲାରେ ଅସଂଖ୍ୟ ଶିବିର ସନ୍ନିବେଶପୂର୍ବକ ଅବସ୍ଥାନ କରୁଥିଲେ । ତାଙ୍କ ଅଧୀନରେ ଶତାଧିକ ସାର୍ଜନ୍ ଏବଂ ଏକ ସହସ୍ର ଧାତ୍ରୀ (Nurse) ଯେପରି ଆସନ୍ନ ସମରରେ ରୁଧିରାର୍ଣ୍ଣବତାରଣର ଏକମାତ୍ର ନୌକା ରୂପେ ବିରାଜିତ । ସମ୍ରାଟ୍ ଆସୁଛନ୍ତି ବୋଲି ଶୁଣି ସମସ୍ତେ ଯେତେବେଳେ ଶିବିର ବାହାରେ ଆସି ଶ୍ରେଣୀବଦ୍ଧ ହୋଇ ଠିଆ ହେଲେ, ସେହି ନରନାରୀ-ବିନିର୍ମିତ ସୁଦୀର୍ଘ ସୁରମ୍ୟ ମାଳିକାରେ ଦ୍ୟୁତିମାନ୍ ମଧ୍ୟମଣି ସଦୃଶୀ ମୁକ୍ତକେଶୀ କେହି ଜଣେ ଠିଆ ହୋଇଥିଲା । ଏ ଆମମାନଙ୍କର ଦୁଃଖିନୀ ମେରି !

ଅଭାଗିନୀର ଦୁଃଖ ଦେଖି ଦୟାର୍ଦ୍ର ହୃଦୟ ଡ଼ାକ୍ତର ତାହାକୁ ଧାତ୍ରୀ ନିଯୁକ୍ତ କରି ଓସ୍ପାଟାଲ୍‌କୁ ଆଣିଛନ୍ତି । ମେରି ଦୈନିକ ଦଶ ଫ୍ରାଙ୍କ୍ ବେତନ ପାଉଛନ୍ତି । ଆଜକୁ ଦଶ ଦିନ ହେଲା ତାଙ୍କ ନିଯୁକ୍ତି ହୋଇଅଛି । ଏଥି ମଧ୍ୟରେ ସେ ଏକ ଶତ ଫ୍ରାଙ୍କ୍ ଉପାର୍ଜ୍ଜନ କରିଅଛନ୍ତି । ଯେଉଁ ଅନାଥିନୀ ରମଣୀ ସାରାଦିନ ପାରି-ରାଜପଥରେ ଭିକ୍ଷା କରି ଦଶଟି ପଇସା ବି ସଂଗ୍ରହ କରି ପାରି ନଥିଲା, ସେ ଆଜି ଦୈନିକ ଦଶ ଫ୍ରାଙ୍କ୍ ଉପାର୍ଜ୍ଜନ କରୁଅଛି । ଏହି କାରଣରୁ କଣ ମେରିଙ୍କର ସତତ ଚିନ୍ତା-ଭାରାକ୍ରାନ୍ତ ମଳିନ ମୁଖମଣ୍ଡଳ ନିରନ୍ତର ପ୍ରଫୁଲ୍ଲଭାବ ଧାରଣ କରିଅଛି ? ଅସମ୍ଭବ—ଯେଉଁ ବାଳିକା ଚିରଦିନ ଐଶ୍ୱର୍ଯ୍ୟ ଅଙ୍କରେ ପ୍ରତିପାଳିତ ହୋଇଅଛି, ଏହି ସାମାନ୍ୟ ଅର୍ଥ ତାହାର କି ପ୍ରୀତି ଉତ୍ପାଦନ କରିପାରେ ? ବସ୍ତୁତଃ ମେରିଙ୍କ ପ୍ରଫୁଲ୍ଲତାର କାରଣ ଏହା ନୁହେ । ମେରିଙ୍କ ପ୍ରାଣରେ ଆନନ୍ଦର ତରଙ୍ଗ ଖେଳୁଛି ସମ୍ରାଟଙ୍କର ଦର୍ଶନ ଆଶାରେ । ହେଲା, ସେହି ଆନନ୍ଦ, ସେହି ହୃଦୟ-ତୃପ୍ତି-ବିଧାୟିନୀ କୌତୂହଳ-ମାତ୍ରା କଣ ସମବେତ ସହସ୍ର ରମଣୀଙ୍କ ମଧ୍ୟରେ ଆଉ କାହାର ହେଉ ନାହିଁ ? ଅବଶ୍ୟ ହେଉଅଛି; ତେବେ ବର୍ତ୍ତମାନ କ୍ଷେତ୍ରରେ ଅନ୍ୟର କୌତୂହଳ ଓ ମେରିଙ୍କର ପ୍ରୀତି-ମାତ୍ରା ମଧ୍ୟରେ ବହୁତର ପ୍ରଭେଦ ! ସମ୍ରାଟ୍ ନିକଟବର୍ତ୍ତୀ ହେବାରୁ ହରିଣୀ ପ୍ରେକ୍ଷଣା ମେରିଙ୍କ ନୟନଯୁଗଳରେ ମୁକ୍ତାଫଳକ ସଦୃଶ ଦୁଇ ବିନ୍ଦୁ ଅଶ୍ରୁ ଦେଖାଦେଲା ଏବଂ ଅଶେଷ ରହସ୍ୟ ବିଜଡ଼ିତ ସେହି ପବିତ୍ର ବାରି-ବିନ୍ଦୁ ଦୁଃଖିନୀଙ୍କର ଶ୍ୱେତ-ସରୋଜ ସନ୍ନିଭ ମନୋରମ ଗଣ୍ଡଦେଶ ପ୍ଲାବିତ କରିଦେଲା ।

ମେରିଙ୍କ ସମୀପରେ ସମ୍ରାଟଙ୍କର ଅଶ୍ୱ-ରଶ୍ମି ସଂଯତ ହେଲା । ଯେଉଁ ସ୍ଥାନରେ କୌଣସି ପ୍ରକାର ବିଶେଷତ୍ୱ ଥାଏ, ସେହି ସ୍ଥାନରେ ନେପୋଲିୟନଙ୍କର ସୂକ୍ଷ୍ମ ଦୃଷ୍ଟି ସର୍ବପ୍ରଥମରେ ନିପତିତ ହୁଏ । ଏହି ଅସାଧାରଣ ପୁରୁଷଙ୍କର ଏହା ଥିଲା ଏକ ମହତ୍ତ୍ୱ ଗୁଣ । ସେ ଶତ ଶତ ରମଣୀଙ୍କୁ ପଛରେ ପକାଇ ଆସିଛନ୍ତି, କେହି ତାଙ୍କର ଦୃଷ୍ଟି ଆକର୍ଷଣ କରି ପାରି ନାହିଁ—ମେରି କିନ୍ତୁ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଏଡ଼ାଇ ପାରିଲେ ନାହିଁ । ସେ ଯେତିକି ନିକଟବର୍ତ୍ତୀ ହେଲେ, ମେରି ସେତିକି ଭାବ ଗୋପନ

କରିବାକୁ ଚେଷ୍ଟିତ ହେଲେ । କିନ୍ତୁ ଦୁର୍ବଳ ବାଳିକା ମୃଦୁମନ୍ଦ-ବାୟୁ ସଞ୍ଚାଳିତ କଦଳୀ ତୁଲ୍ୟ କମ୍ପିତ ଦେହ-ଯଷ୍ଟି ସମ୍ବରଣ କରି ପାରିଲା ନାହିଁ, ସେହି ହର୍ଷ-ବିଷାଦ-ପରିମ୍ଳାନ ଭାବ ଲୁଚାଇ ପାରିଲା ନାହିଁ, ଛଳଛଳ ଚକ୍ଷୁ ବି ଗୋପନ କରି ପାରିଲା ନାହିଁ ।

ନେପୋଲିୟନ୍ ପ୍ରଶ୍ନ କଲେ, "ସୁନ୍ଦରି ! ତୁମ ବ୍ୟାକୁଳତାର କାରଣ କଣ ? ତୁମେ କଣ ଘରେ ସ୍ନେହର ସନ୍ତାନକୁ ଛାଡ଼ି ଆସିଛ ? ନା ତୁମର ପ୍ରିୟତମ ସ୍ୱାମୀ ତୁମକୁ କଷ୍ଟରେ ବିଦାୟ ଦେଇଛନ୍ତି ?"

ମେରିଙ୍କର ପ୍ରତ୍ୟୁତ୍ତର ନାହିଁ । ସେ କିଛିକ୍ଷଣ ଏକ ଦୃଷ୍ଟିରେ ସମ୍ରାଟଙ୍କ ମୁଖକୁ ଅନାଇ ରହିଲେ । ସମ୍ରାଟଙ୍କର ପ୍ରଶ୍ନରେ ମସ୍ତକ ଅବନତ କରି ଠିଆ ହେଲେ । ତାଙ୍କର ନୀରବତା ଦେଖି ଜଣେ ବଡିଗାର୍ଡ ସମ୍ରାଟଙ୍କୁ କହିଲା—'ବୋଧହୁଏ ଏ ଛଦ୍ମବେଶିନୀ, ନଚେ ରୟାଲିଷ୍ଟ ବା କୌଣସି ରୟାଲିଷ୍ଟ କୁଳରେ ଜନ୍ମଗ୍ରହଣ କରିଅଛି । ଅନୁମାନ ହୁଏ ଏ ସ୍ତ୍ରୀ କୌଣସି ଗୁପ୍ତମନ୍ତ୍ର ସାଧନା ପାଇଁ ଧାତ୍ରୀ-ଶିବିରରେ ପ୍ରବେଶ କରିଅଛି । ଏହା ବୋଧହୁଏ ଏହାର ସନ୍ଦିଗ୍ଧ ଭାବ ଓ ବ୍ୟାକୁଳତାର ଅନ୍ୟତମ କାରଣ ।'

ସମ୍ରାଟ୍ କହିଲେ,—ତେବେ ଏହାଙ୍କର ସପ୍ରତିଭ ମୁଖମଣ୍ଡଳରୁ ଜଣାପଡ଼ୁଛି, ଅପରାଧିନୀ ଛଦ୍ମବେଶିନୀ ନୁହନ୍ତି ।

ତଥାପି ମେରି କୌଣସି କଥା ପ୍ରକାଶ କରି ପାରିଲେ ନାହିଁ । ପୁନର୍ବାର ମୁଖ ଉଠାଇ ସମ୍ରାଟଙ୍କ ମୁଖକୁ ଚାହିଁଲେ ମାତ୍ର । ନେପୋଲିୟନ ମେରିଙ୍କର ଶଙ୍କାଶଙ୍ଗପରପ୍ରତିଭ ବଦନମଣ୍ଡଳ ଉପରେ କିଛି ସମୟ ଦୃଷ୍ଟି ଖେଳାଇ କହିଲେ, "ଏ ରମଣୀ ଆମମାନଙ୍କୁ ଛଳନା କରିବାକୁ ଆସି ନାହାନ୍ତି । ଏହାଙ୍କର ବ୍ୟାକୁଳତା କୌତୂହଳାଧିକ୍ୟ ଭିନ୍ନ ଆଉ କିଛି ନୁହେ । ଏହାଙ୍କ ଚକ୍ଷୁରୁ ଯେପରି ଧୃତି ଓ ଶାନ୍ତି ଫୁଟି ଉଠୁଅଛି । ଏହାଙ୍କର ନାତି ପ୍ରଫୁଲ୍ଲ ଅଧରରେ କୃତଜ୍ଞତା ଏବଂ ଅଶ୍ରୁରେ ବ୍ୟଥିତ ସ୍ମୃତି ଚିହ୍ନିତ । ମନେ ହୁଏ, ଏହି ଅଭିନବ ନୀରବ ମୁଖଛବିରେ ଯେପରି ଫରାସୀ ଇତିହାସର ଏକ ଅଧ୍ୟାୟ ରଚିତ ରହିଅଛି ।"

ନେପୋଲିୟନ୍ ପୁନର୍ବାର ନେରଙ୍କ ଆଡ଼କୁ ଅନାଇଁ କହିଲେ, 'ଭଦ୍ରେ ! ପ୍ରାଣପଣରେ ନିଜ କର୍ତ୍ତବ୍ୟ ପାଳନ କର । ଆହତ ସୈନିକ ଯେତେବେଳେ ତୁମମାନଙ୍କ ନିକଟକୁ ଆନୀତ ହେବେ, ତୁମେମାନେ ସେତେବେଳେ ସେମାନଙ୍କର ସେବା ଶୁଶ୍ରୂଷା କରିବ, ଦେଖ ସେମାନେ ଯେପରି ଏହି ଶିବିରରେ ମାତା, ଭଗିନୀ, ସ୍ତ୍ରୀ ବା କନ୍ୟାର ଅଭାବ ଉପଲବ୍ଧି ନକରନ୍ତି । ତୁମମାନଙ୍କର ସାଧୁ ବ୍ୟବସାୟର ପୁରସ୍କାର କେବଳ ସେହି ସର୍ବଶକ୍ତିମାନ୍ ଈଶ୍ୱରଙ୍କ ହାତରେ ଅଛି—ସାମାନ୍ୟ ମନୁଷ୍ୟ ବା ସରକାର ନିକଟରେ ତାହା ଆଶା କର ନାହିଁ ।'

*

# ଓ୍ୱାଟାର୍ଲୁ

ଦେଖୁଁ ଦେଖୁଁ ସେହି କାଳରଜନୀର ଅବସାନ ହେଲା । ପ୍ରତ୍ୟୁଷରେ ନେପୋଲିୟନ ସେନାପତିଗଣଙ୍କୁ ଯୁଦ୍ଧପାଇଁ ଆଦେଶ ପ୍ରଦାନ କଲେ । ବେଳ ଆଠ ଘଟିକା ସମୟରେ ଆକାଶରୁ ମେଘମାଳା ଅପସୃତ ହେଲା । ସୂର୍ଯ୍ୟ ସମୁଜ୍ଜ୍ୱଳ ଭାବରେ ଉଦିତ ହେଲା । ଦୁଇଘଣ୍ଟା ମଧ୍ୟରେ କର୍ଦ୍ଦମାକ୍ତ ରଣଭୂମିର ଶିଥିଳତା ବହୁପରିମାଣରେ ଦୂରୀଭୂତ ହେଲା । ଫରାସୀ ସୈନ୍ୟଗଣ ଶ୍ରେଣୀବଦ୍ଧ ହୋଇ ଠିଆ ହେଲେ । ଅଶ୍ୱାରୋହୀଗଣ ଠାଏଁ ଠାଏଁ ଚତୁରସ୍ର ନିର୍ମାଣ କରି ଦୁର୍ଭେଦ୍ୟ ଦୁର୍ଗ ପରି ଦେଖାଗଲେ । ଫରାସୀ ଗୋଲନ୍ଦାଜ ସକଳ ସ୍ୱ ସ୍ୱ ଆଗ୍ନେୟାସ୍ତ୍ର ନେଇ ଯଥାସ୍ଥାନରେ ଉପବିଷ୍ଟ ହେଲେ ।

ନେପୋଲିୟନ ପ୍ରକାଣ୍ଡ ଶ୍ୱେତାଶ୍ୱପୃଷ୍ଠରେ ସୈନ୍ୟଶ୍ରେଣୀ ପାର୍ଶ୍ୱରେ ଅଗ୍ରସର ହେଲେ । ତାଙ୍କର ବାମ ହସ୍ତରେ ଅଶ୍ୱରଶ୍ମି, ଦକ୍ଷିଣ ହସ୍ତରେ ଦୂରବୀକ୍ଷଣ ଯନ୍ତ୍ର । ସେତେବେଳେ ପ୍ରତ୍ୟେକ ସୈନିକ ହୃଦୟର ଅନ୍ତସ୍ତଳରୁ ତାହାଙ୍କୁ ଆଶୀର୍ବାଦ କଲା, 'ଈଶ୍ୱର ଆପଣଙ୍କୁ ରକ୍ଷା କରନ୍ତୁ ।' ସେହି ସମୟରେ ନେପୋଲିୟନଙ୍କ ପ୍ରତି ଫରାସୀମାନେ ଯେଉଁ ଅନୁରାଗ

ପ୍ରଦର୍ଶନ କରିଥିଲେ, ତାହା ଜଗତରେ ବିରଳ । ସେହି ସମୟରେ ନେପୋଲିୟନ ଓ ଫରାସୀ ସେନାର ଧମନୀରେ ଏକ ରକ୍ତ ପ୍ରବାହିତ ହେଉଥିଲା । ଉଭୟଙ୍କର ଚେଷ୍ଟା ଓ ଶିକ୍ଷାରେ ଏତେ ଐକ୍ୟ ସମ୍ପାଦିତ ହୋଇଥିଲା ଯେ, କ୍ଷଣକ ପାଇଁ ନେପୋଲିୟନ କିଏ ଏବଂ ତାଙ୍କର ସୈନ୍ୟ ବା କିଏ, ଏପରି କୌଣସି ପାର୍ଥକ୍ୟ ଉପଲବ୍‌ଧ ହେଉ ନାହିଁ । ମୁହୁର୍ମୁହୁଃ କେବଳ ପ୍ରତୀୟମାନ ହେବାକୁ ଲାଗିଲା ଯେପରି ସମଗ୍ର ପ୍ରାନ୍ତରବ୍ୟାପୀ ଏକ ନେପୋଲିୟନ୍ ଅତି ପ୍ରକାଣ୍ଡ ବଜ୍ରପୁରୁଷ ତୁଲ୍ୟ ଦଣ୍ଡାୟମାନ ।

ଜୁନ୍ ୧୮ ରବିବାର ବେଳ ଏଗାରଟା ସମୟରେ ଓ୍ୱାଟର୍ଲୁ ଯୁଦ୍ଧ ଆରମ୍ଭ ହୁଏ । ସର୍ବପ୍ରଥମରେ ଫରାସୀ କମାଣ ସକଳ ଗର୍ଜନ କରି ଉଠିଲା । ଏକ ମୁହୂର୍ତ୍ତ ପୂର୍ବେ ଯେଉଁ ସ୍ଥାନ ଅବାତ-ବିକ୍ଷୋଭିତ ସ୍ଥିର ସାଗର ତୁଲ୍ୟ ପ୍ରତୀୟମାନ ହେଉଥିଲା, ସେହି ସ୍ଥାନ ବର୍ତ୍ତମାନ ଭୀଷଣ ରଣ ତରଙ୍ଗରେ ଆକୁଳ ହୋଇ ପଡ଼ିଲା । ଉଭୟଙ୍କର ହତ୍ୟାକାଣ୍ଡ ଉପସ୍ଥିତ ହେଲା, ଚତୁର୍ଦ୍ଦିଗରେ ରୁଧିରଧାରା ପ୍ରବାହିତ ହେଲା । ଆହତ ସୈନିକ-ମାନଙ୍କର ମର୍ମଭେଦୀ ଆର୍ତ୍ତନାଦରେ, ଅଶ୍ୱମାନଙ୍କର ବିକଟ ଚିତ୍କାରରେ ଏବଂ ଅବିଶ୍ରାନ୍ତ କମାଣ-ଧ୍ୱନିରେ ଯୁଦ୍ଧକ୍ଷେତ୍ର ମୁଖରିତ ହୋଇ ଉଠିଲା । ଚକ୍ଷୁ ଦେଖିଲା —ଛିନ୍ନ ଗ୍ରୀବ, ଲୂନବାହୁ, ଚୂର୍ଣ୍ଣପଦାସ୍ଥି, ଭଗ୍ନପିଞ୍ଜର, ବିକୃତକଟିର, ରୁଧିରରଂଜିତ ମନୁଷ୍ୟ ଓ ପଶୁକୁଳ, କେହି ଘୂର୍ଣ୍ଣ୍ୟମାନ, କେହି ପଳାୟମାନ, କେହି ବା ଧରଣୀଶାୟିତ, ପଦଦଳିତ, ଚର୍ମମର୍ଦ୍ଦିତ, ନିଷ୍ପିଷ୍ଟ ଓ ମର୍ମଶାୟିତ—ଚକ୍ଷୁ ଆଉ ସହ୍ୟ କରି ନପାରେ ! କମାଣ-ମୁଖୋତ୍ଥିତ ଧୂମରାଶି କୁଜ୍‌ଝଟିକା ତୁଲ୍ୟ ଦିକ୍‌ଦିଗନ୍ତର ବେଷ୍ଟନ କରି ପକାଉଛି । କମାଣ ସକଳ ଯେପରି ଧୂମ୍ରରୂପ ଆବରଣ ବିସ୍ତାର କରି ତନ୍ମଧ୍ୟରେ ବିଶ୍ୱନିଷ୍ଠୁରତାର ଅଭିନୟ କରୁଅଛି !

କରାଳକାଳ ଯମ ସଦୃଶ ଯୁଦ୍ଧାସ୍ତ୍ର ସକଳ ଯେ ମୂର୍ତ୍ତିମାନ୍ ଧ୍ୱଂସ, ଭୀଷଣ ଦାବାଦହନ, ନିରବଚ୍ଛିନ୍ନ ମହାପ୍ରଳୟ ! କିଏ କେଉଁଠି ମଲା, କେବେ ମଲା, କାହା ହାତରେ ମଲା, କିପରି ବା ମଲା ସ୍ଥିର କରି ହେଉ ନାହିଁ । କିଏ କଣ କହିଲା, କିଏ କଣ କଲା, କିଏ ଆଦେଶ ଦେଲା,

କଏ ତାହା ପଚାରନ କଲ—କେହି ଏହାର ଯଥାଯଥ ଉତ୍ତର ଦେଇ ନପାରେ । ଏଣୁ ସ୍ୱୟଂ ନେପୋଲିୟନଙ୍କୁ କୌଣସି ଯୁଦ୍ଧ ବିଷୟ ପଚାରିଲେ, ସେ ଖାଲି ଏତିକ କହନ୍ତି, "ମୁଁ ବିଶେଷ କିଛି ଜାଣେ ନାହିଁ । ପ୍ରତ୍ୟେକ ସୈନିକ ଯଦି ନିଜ ଜୀବନୀ ଲେଖି ମରି ପାରିଥାନ୍ତା, ତାହା ହେଲେ ଆପଣମାନେ ପ୍ରକୃତ ଘଟନା ବୁଝି ପାରିଥାନ୍ତେ ।"

ନେପୋଲିୟନ ଲା ହେ ସେଣ୍ଟ୍ ନାମକ ସ୍ଥାନରେ ଇଂରେଜର ଅନ୍ୟତମ କେନ୍ଦ୍ର ଆକ୍ରମଣ କଲେ ଏବଂ ବେଳ ଚାରିଟା ସମୟରେ ସେହି ସ୍ଥାନ ଅଧିକୃତ ହେଲା । ପୁନର୍ବାର ଇଂରେଜ ସୈନ୍ୟର କେନ୍ଦ୍ର ହେଲା ମଣ୍ଟ୍ ସେଣ୍ଟ୍ ଜନ୍ । ଦୃଢ଼ ପ୍ରତିଜ୍ଞ ୱେଲିଂଟନ୍ ନାନା ସ୍ଥାନରେ ଅପଦସ୍ଥ ହୋଇ କେନ୍ଦ୍ର ସ୍ଥଳରେହିଁ ସମଗ୍ର ବଳଯୋଜନା କରିବାକୁ ଲାଗିଲେ । କେତେକ ଜଣ ଗୋଲନ୍ଦାଜ ସେନାନାୟକ ଓ ଚଉଦ ଶତ ଅଶ୍ୱାରୋହୀ ସୈନ୍ୟ ସହ ସମରସେଟ୍ ଆସି କେନ୍ଦ୍ର ସ୍ଥଳରେ ମିଳିତ ହେଲେ ।

ଇଂରେଜ କେନ୍ଦ୍ରରେ ଫରାସୀମାନଙ୍କର ଗୋଳା ଆସି ପଡ଼ିବାକୁ ଲାଗିଲା । ୱେଲିଂ ମହାଶୟ ସୈନିକମାନଙ୍କୁ ବରାବର ଉତ୍ସାହବାଣୀ ଶୁଣାଉଥାନ୍ତି । ନେପୋଲିୟନ ସମୀପବର୍ତ୍ତୀ ଅଧିତ୍ୟକା ଆରୋହଣ କରି ଦୂରବୀକ୍ଷଣଯନ୍ତ୍ର ସାହାଯ୍ୟରେ ଦେଖିଲେ, ୱେଲିଂଟନ୍ ପଳାୟନ କରୁଛନ୍ତି । ଏହି ସମୟରେ ଗୋଟିଏ ଭୟଙ୍କର ଗୋଳା ଆସି ତାଙ୍କର ଅଶ୍ୱଟିକୁ ଧରାଶାୟିତ କରି ଦେଲା । ସେ ତତ୍‌କ୍ଷଣାତ୍ ଜନୈକ ବଡଗାର୍ଡ଼ର ଅଶ୍ୱ ଆରୋହଣ କଲେ । ୱେଲିଂଟନ ଫରାସୀ ସେନାର ଅବିଶ୍ରାନ୍ତ ବହ୍ନି ସହ୍ୟ କରି ପାରିଲେ ନାହିଁ । ସେ ପଶ୍ଚାତ୍‌ପଦ ହେଲେ; ତେବେ ସେଥିରେ ତାଙ୍କର ମତଲବ୍ ଥିଲା—ଫରାସୀମାନେ ତାହାଙ୍କୁ ପଳାୟନ ମନେ କରି ଅନୁସରଣ କଲେ, ସେମାନଙ୍କୁ ସହଜରେ ଆକ୍ରମଣ କରି ପାରିବେ ।

ସତକୁ ସତ ନେପୋଲିୟନ ଭ୍ରମରେ ପଡିଲେ । ସେ ସେହିକ୍ଷଣି ୱେଲିଂଟନଙ୍କର ଅନୁସରଣ କରିବାକୁ ମାର୍ଶାଲ ନେ'ଙ୍କୁ ଆଦେଶ ଦେଲେ । ନେ ତିନ ସହସ୍ର ଅଶ୍ୱାରୋହୀ ସୈନ୍ୟ ନେଇ ବିଦ୍ୟୁତ୍‌ବେଗରେ ଧାବିତ ହେଲେ । ତାଙ୍କର ଏକ ପାର୍ଶ୍ୱରେ କେଲରମ୍ୟାନ୍ ଏବଂ ଅପର ପାର୍ଶ୍ୱରେ

ମିଲ୍‌ହଉ୍ ତିନ ସହସ୍ର ଅଶ୍ୱସେନା ଶୃଙ୍ଖଳିତ କଲେ । ବୋଧ ହେଲା ଯେପରି ଏକ ଦୁର୍ଭେଦ୍ୟ ଲୌହଦୁର୍ଗ ଦ୍ରୁତ ବେଗରେ ଗ୍ଲୁଅଛି ।

ଡ଼ିଉକ୍ ମୂବାଧିଷ୍ଠିତ ଉଚ୍ଚଭୂମିରେ କେବଳ ଗୋଲନ୍ଦାଜମାନଙ୍କୁ ରଖି ଯାଇଛନ୍ତି । ସ୍ୱୟଂ ବହୁ ସୈନ୍ୟ ସହ ଅନ୍ୟ ପାର୍ଶ୍ୱର ନିମ୍ନଭୂମିରେ ଅଲକ୍ଷିତ ଭାବରେ ଅବସ୍ଥାନ କରୁଅଛନ୍ତି । ଫରାସୀମାନେ ଉଚ୍ଚଭୂମିରେ ଆରୋହଣ କରିବା ମାତ୍ରକେ ବିଷମ ବିପାକରେ ପତିତ ହେଲେ । ଏହି ସ୍ଥାନର ଭୂବୃତ୍ତାନ୍ତ ନେପୋଲିୟନ ଆଦୌ ବୁଝି ନଥିଲେ । ଫରାସୀମାନଙ୍କୁ ଦେଖିବାକ୍ଷଣି ସେହି ନିମ୍ନଭୂମିରୁ ଏକ ସମୟରେ ବିଂଶ ସହସ୍ର ବନ୍ଧୁକ ଗର୍ଜନ କରି ଉଠିଲା । ଅଗ୍ରସର ହେବାର ଉପାୟ ନାହିଁ—ସମ୍ମୁଖରେ ଖାତ, ପଶ୍ଚାତ୍‌ପଦ ହେଲେ ଧ୍ୱଂସ ଅନିବାର୍ଯ୍ୟ । ଏକ ସହସ୍ର ଫରାସୀ ଅଶ୍ୱ ଲମ୍ଫ ଦେଇ ଖାତରେ ପଡ଼ିଲେ । ଭୟଙ୍କର କର୍ଦ୍ଦମରେ ଅଶ୍ୱମାନଙ୍କର ପାଦ ଲାଗି ରହିଲା, ସେମାନଙ୍କ ଉପରେ ଇଂରେଜ ସୈନ୍ୟଗଣ ଅବିଶ୍ରାନ୍ତ ଗୁଳିବର୍ଷଣ କରିବାକୁ ଲାଗିଲେ । ମୁହୂର୍ତ୍ତକ ମଧ୍ୟରେ ଅଶ୍ୱ ଓ ମନୁଷ୍ୟ-ମାନଙ୍କ ଯୋଗେ ଏକ ଅପୂର୍ବ ସେତୁ ପ୍ରସ୍ତୁତ ହୋଇଗଲା । ଆଉ ଏକ ହଜାର ଅଶ୍ୱ ମରିବା ପାଇଁ ସେହି ସେତୁ ଦେଇ ପାର ହେଲେ । ମାର୍ଶାଲ ନେ ତ୍ରିଂଶ ସହସ୍ର ସୈନ୍ୟ ସହିତ ଅଗତ୍ୟା ହଟି ଆସିଲେ ।

ଫରାସୀମାନଙ୍କ ପରାଜୟର ସୂତ୍ରପାତ ହେଲା । କିନ୍ତୁ ସେମାନେ ସହଜରେ ହଟିବାର ଲୋକ ନୁହନ୍ତି । ଇଂରେଜର ସହିଷ୍ଣୁତା ଯୁଗପତ୍ ଆହ୍ରାନ୍ତ ହେଲା । ମାର୍ଶାଲ ସୁଲ୍‌ଟ ଖୁବ୍ ପରାକ୍ରମ ପ୍ରଦର୍ଶନ କରିବାକୁ ଲାଗିଲେ । ଡିଉକଙ୍କର ସୈନ୍ୟଗଣ ଦାବାଦଗ୍ଧ ହରିଣ ତୁଲ୍ୟ ଇତସ୍ତତଃ ପଳାୟନ କଲେ । ବ୍ରାନସ୍ ଉଇକଙ୍କର ସେନା ବିଭାଗ 'ଇଂରେଜ ପରାସ୍ତ ହୋଇଅଛି' ବୋଲି ଉଚ୍ଚ ସ୍ୱରରେ ଚିତ୍କାର କରି କରି ବ୍ରସେଲ୍‌ସ ଆଡ଼କୁ ଗ୍ଲିଗଲେ । ଇଂରେଜ ସୈନ୍ୟଗଣ କ୍ରମାଗତ ସ୍ଥାନ ପରିବର୍ତ୍ତନ କରିବାକୁ ଲାଗିଲେ । ଡିଉକ୍ ମହାଶୟ କମ୍ପିତ କଳେବରରେ ଠିଆ ହେଲେ ।

ଠିକ୍ ଏପରି ସମୟରେ ଜେନାରେଲ୍ ବୁଚେର, ବ୍ଲୁକାରଙ୍କର ଅଗ୍ରବର୍ତ୍ତୀ ସେନା ବିଭାଗ ସହ ସମରକ୍ଷେତ୍ରରେ ଆସି ପହଞ୍ଚିଗଲେ ।

ଫରାସୀମାନେ ଦାରୁଣ ନୈରାଶ୍ୟରେ ପତିତ ହେଲେ । ନେପୋଲିୟନଙ୍କ ଆଶା ଅନୁସାରେ 'ଗ୍ରାକି' ଆସି ତାଙ୍କ ସହିତ ଯୋଗ ଦେଇ ପାରିଲେ ନାହିଁ । ତାଙ୍କ ପ୍ରତି ସମ୍ରାଟଙ୍କର ଆଦେଶ ଥିଲା ଯେ, ସେ ବ୍ଲୁକାରଙ୍କର ଅନୁସରଣ କରିବେ, ଓ୍ୱାଟରଲୁକୁ ଯିବେ ନାହିଁ । ବ୍ଲୁକାର କିନ୍ତୁ କୌଶଳରେ ଗ୍ରାକିଙ୍କର ଦୃଷ୍ଟି ଏଡ଼ାଇ ଓ୍ୱାଟରଲୁରେ ଉପନୀତ !

ବ୍ଲୁକାରଙ୍କର ଷାଠିଏ ହଜାର ସୈନ୍ୟ ଫରାସୀମାନଙ୍କର ପୃଷ୍ଠ ଭାଗ ଆକ୍ରମଣ କଲେ । ଏତିକିବେଳେ ଗ୍ରାକିଙ୍କର ତିରିଶି ହଜାର ସୈନ୍ୟ ଆସିଥିଲେ ଆଉ କାହାକୁ ଗୃହକୁ ଫେରି ଯିବାକୁ ହୋଇ ନଥାନ୍ତା । କିନ୍ତୁ ସବୁ ଅଦୃଷ୍ଟ ଉପରେ ନିର୍ଭର କରିଥାଏ ସିନା ! ସନ୍ଧ୍ୟା ହେଲା । ଦେଖୁଁ ଦେଖୁଁ ପ୍ରସିୟାର ସୈନ୍ୟଗଣ ଫରାସୀମାନଙ୍କର ଦକ୍ଷିଣ ଭାଗରେ ଏବଂ ଇଂରେଜ ସୈନ୍ୟଗଣ ସମ୍ମୁଖଭାଗରେ ଉପସ୍ଥିତ ହେଲେ । ନିର୍ଭୀକ ଫରାସୀମାନେ ଉଚ୍ଚୈଃସ୍ୱରରେ 'ଭାଇଭ ଏଲ୍ ଏମ୍ପାରର୍' ଧ୍ୱନି କରି ସମ୍ରାଟଙ୍କୁ ବେଷ୍ଟନ କଲେ । ନେପୋଲିୟନ ସେହି ମୁହୂର୍ତ୍ତରେ 'ଇମ୍ପିରିୟାଲ୍ ଗାର୍ଡ଼' ନାମକ ଅଶ୍ୱସେନା ନେଇ ବ୍ଲୁକାରଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲେ । ପ୍ରଧାନ ପ୍ରଧାନ ସେନାପତିଗଣ ଅବସ୍ଥା ଦୃଷ୍ଟିରେ ତାଙ୍କୁ ସ୍ୱୟଂ ଅଗ୍ରସର ହେବାକୁ ନିଷେଧ କଲେ । ସମସ୍ତଙ୍କର ଅନୁରୋଧ ଫ୍ରାନ୍ସର ଗୌରବ ସ୍ୱରୂପ ସେହି ମହାର୍ଘ ଅଶ୍ୱସେନାର ପରିଚାଳନା ଭାର ମାର୍ଶାଲ୍ ନେ'ଙ୍କ ପ୍ରତି ଅର୍ପିତ ହେଲା ।

ବ୍ଲୁକାରଙ୍କର ଅବିଶ୍ରାନ୍ତ ଗୋଳା ବର୍ଷଣରେ ମାର୍ଶାଲଙ୍କର ସୈନ୍ୟ ସମୂହ କ୍ରମାଗତ ଧରାଶାୟୀ ହେବାକୁ ଲାଗିଲେ । ତଥାପି ଉତ୍ସାହର ଭଙ୍ଗ ନାହିଁ, ଗତିର ବିରାମ ନାହିଁ । ଗୋଟାଏ ତୋପର ଗୋଳା ଆସି ମାର୍ଶାଲଙ୍କର ଅଶ୍ୱକୁ କେଉଁ ଆଡ଼େ ଉଡ଼ାଇ ନେଇଗଲା ! ସେ ଭୂପତିତ ହେଲେହେଁ ପୁଣି ଉଠି ଠିଆ ହେଲେ । ତାଙ୍କର ଶରୀର ସ୍ୱେଦାର୍ଦ୍ର, ସର୍ବାଙ୍ଗ ରୁଧିରାକ୍ତ, ହସ୍ତରେ ଭଗ୍ନ ଅସି, ଚକ୍ଷୁ ରକ୍ତବର୍ଣ୍ଣ, ମୁଖରୁ ଫେନ ଉଦ୍‌ଗତ !

ନେପୋଲିୟନ ବର୍ତ୍ତମାନ ବୁଝିଲେ, ତାହାଙ୍କୁ ଯୁଦ୍ଧଭୂମି ତ୍ୟାଗ କରିବାକୁ ହେବ । ତାଙ୍କ ଚକ୍ଷୁରୁ ଅଶ୍ରୁଧାରା ବିଗଳିତ ହେବାକୁ ଲାଗିଲା ।

ଥରେ ସାତ ବର୍ଷ ବୟସରେ, କର୍ସିକାର ବିଦ୍ୟାଶିକ୍ଷା ନିମନ୍ତେ ଫ୍ରାନ୍ସ ଯାତ୍ରା କରିବାବେଳେ ସ୍ନେହମୟୀ ଜନନୀଙ୍କର ଅଞ୍ଚଳ ଧରି କାନ୍ଦି ଥିଲେ । ଆଜି ସତଚାଳିଶି ବର୍ଷ ବୟସରେ ଓ୍ୱାଟର୍ଲୁ ପରିତ୍ୟାଗ ବେଳେ ପୁନର୍ବାର ଅଶ୍ରୁ ବିସର୍ଜ୍ଜନ କରି କାନ୍ଦିଲେ । ମଧ୍ୟବର୍ତ୍ତୀ ଊଣଚାଳିଶି ବର୍ଷ କାଳ ସମ୍ପଦରେ କିମ୍ବା ବିପଦରେ କେହି କେବେ ସେହି ବୀର ପୁରୁଷଙ୍କର ଚକ୍ଷୁରେ ବାରି-ବିନ୍ଦୁ ଦେଖି ନାହିଁ । ନେପୋଲିୟନ ତିନି ଜଣ ମାତ୍ର ବାଡ଼ିଗାର୍ଡ଼ଙ୍କ ସହିତ ସମରକ୍ଷେତ୍ର ପରିତ୍ୟାଗ କଲେ ।

ଓ୍ୱେଲିଂଟନ୍ ଓ ବ୍ଲୁଚାର୍ ପରସ୍ପର ରକ୍ତାକ୍ତ କରମର୍ଦ୍ଦନ କଲେ । ଅଭୂତପୂର୍ବ ବିଜୟୋଲ୍ଲାସରେ କିଛି ସମୟ ଉଭୟଙ୍କର ବାକ୍‌ସ୍ଫୂର୍ତ୍ତି ହୋଇ ପାରିଲା ନାହିଁ । ଡିଉକଙ୍କର ସୈନିକମାନେ ଯାରପରନାହିଁ କ୍ଲାନ୍ତ ହୋଇ ପଡ଼ିଥିଲେ, ଅତଏବ ସେ ଆଉ ଶତ୍ରୁ ସୈନ୍ୟର ପଶ୍ଚାଦ୍ଧାବନ କଲେ ନାହିଁ । କିନ୍ତୁ ବ୍ଲୁଚାର୍ କ୍ଲାନ୍ତ ସନ୍ତ୍ରସ୍ତ ଓ ପଳାୟମାନ ଫରାସୀ ସୈନ୍ୟ ଉପରେ ଅନବରତ ଗୋଳାବୃଷ୍ଟି କରିବାକୁ ଲାଗିଲେ । ଆଦେଶ ଦେଲେ, ଜଣେ ହେଲେ ଫରାସୀ ଯେପରି ଜୀବିତ ନରହେ । ସେହି ବୃଦ୍ଧ ନିଷ୍ଠୁର ବ୍ଲୁଚାର୍ ବନ୍ଦୀଗଣଙ୍କୁ, ଏପରିକି ଆତ୍ମସମର୍ପଣ କରିବା ସୈନିକଙ୍କୁ ମଧ୍ୟ ବଧ କରିବାକୁ କୁଣ୍ଠିତ ହେଲେ ନାହିଁ । ଡ଼ିଉକ୍ ମହାଶୟ ଏହି ଲୋମହର୍ଷଣ ହତ୍ୟାକାଣ୍ଡ ଦେଖି ଅତିଶୟ ଅସନ୍ତୁଷ୍ଟ ହେଲେ ସତ୍ୟ, କିନ୍ତୁ ସେହି ବିପଦରେ 'ମଧୁସୂଦନ' ବ୍ଲୁଚାରଙ୍କୁ ଡ଼ରି କୌଣସି କଥା କହି ପାରିଲେ ନାହିଁ ।

କ୍ୟାମ୍ବ୍ରେନ୍ ଅଶ୍ୱପଦାତିସଂକଳିତ ପାଞ୍ଚ ସହସ୍ର ସୈନ୍ୟ ନେଇ ଓ୍ୱାଟର୍ଲୁ ପ୍ରାନ୍ତରରେ ଅପେକ୍ଷା କରିଥିଲେ । ଲକ୍ଷାଧିକ ଲୋକଙ୍କ ଆଗରେ ଏହି ମୁଷ୍ଟିମେୟ ସୈନ୍ୟ ଦେଖି ଡିଉକ୍ ମହାଶୟ ଆତ୍ମସମର୍ପଣ କରିବା ନିମନ୍ତେ କ୍ୟାମ୍ବ୍ରେନ୍‌ଙ୍କୁ କହି ପଠାଇଲେ । କିନ୍ତୁ ପ୍ରତ୍ୟୁତ୍ତରରେ ତେଜସ୍ୱୀ କ୍ୟାମ୍ବ୍ରେନ୍ ଜଳଦଗମ୍ଭୀର କଣ୍ଠରେ କହିଲେ, "ଆମେମାନେ ମରିବାକୁ ପ୍ରସ୍ତୁତ, କଦାପି ଆତ୍ମସମର୍ପଣ କରିବୁ ନାହିଁ ।"

ଦୁଇ ଦିଗରୁ କମାଣ ଗର୍ଜ୍ଜି ଉଠିଲା । କ୍ୟାମ୍ବ୍ରେନ୍‌ଙ୍କର ଅଶ୍ୱସେନା ଦୁଇ ଭାଗରେ ବିଭକ୍ତ ହୋଇ ଶତ୍ରୁସୈନ୍ୟର କେନ୍ଦ୍ର ପ୍ରତି ଧାବିତ

ହେଲେ । ଫରାସୀମାନଙ୍କର ଗୁଳି ବାରୁଦ ଆଗରୁ ନିଃଶେଷ ହୋଇ ଯାଇଥିଲା । ଇଂରାଜମାନଙ୍କ କମାଣ ଗର୍ଜ୍ଜନର ଏବଂ ପ୍ରସିୟାର ଅଗ୍ନିବୃଷ୍ଟିର ଉତ୍ତର ଫରାସୀମାନେ ଦେବାକୁ ଅକ୍ଷମ ହୋଇ ପଡ଼ିଲେ । ଅବ୍ୟାହତ ଓ ଅବିଶ୍ରାନ୍ତ ଗୋଳା ବର୍ଷଣ ଫଳରେ ଦଶ ମିନିଟ୍ ମଧ୍ୟରେ, ଫ୍ରାନ୍ସ ଓଲ୍ଡ଼ଗାର୍ଡ଼ ଜଗତରେ ଅବିନଶ୍ୱର କୀର୍ତ୍ତି ରଖିକରି ପରଲୋକ ଗମନ କଲେ ।

ବ୍ଲୁଚାର ସ୍ୱଦଳବଳ ସହିତ ଶତ୍ରୁ ସେନାର ଅନୁସରଣ କଲେ । ଡିଉକ୍ ମହାଶୟ ଅନନ୍ୟ ମନରେ ଯୁଦ୍ଧକ୍ଷେତ୍ରରେ କିଏ କେଉଁଠି ଆହତ ହୋଇ ପଡ଼ିଅଛି ତାହାର ଅନୁସନ୍ଧାନରେ ବ୍ୟାପୃତ ହେଲେ । ଶତ୍ରୁ ମିତ୍ର ନିର୍ବିଶେଷରେ ଏହି ଅନୁସନ୍ଧାନ ସମ୍ପାଦିତ ହେବାକୁ ଲାଗିଲା । ପରାଭୂତ ଶତ୍ରୁ ପ୍ରତି ସଦ୍‌ବ୍ୟବହାର-ପ୍ରଦର୍ଶନ ଇଂରାଜ ଜାତିର ସ୍ୱତଃସିଦ୍ଧ ଧର୍ମ । କି ଇଂରାଜ, କି ଫରାସୀ ସମସ୍ତଙ୍କ ପ୍ରତି ସମାନ ଦୟା ପ୍ରଦର୍ଶିତ ହେଲା ।

*

# ଆହତ ପତି ପାର୍ଶ୍ୱରେ ପତ୍ନୀ

ପ୍ରାଗୁକ୍ତ ଓଲଡ଼ଗାର୍ଡ଼ର ଜନୈକ ଆହତ ସୈନିକ ରାତ୍ରି ଦଶଟା ପର୍ଯ୍ୟନ୍ତ ସମରକ୍ଷେତ୍ରରେ ପଡ଼ି ରହିଥିଲା । ଡିଉକଙ୍କର ସୈନ୍ୟମାନେ ମଶାଲ ହସ୍ତରେ ସେହି ଆହତ ସୈନିକ ନିକଟରେ ଉପସ୍ଥିତ ହେଲେ । କିଛି କ୍ଷଣ ଶୁଶ୍ରୂଷା କରିବା ପରେ ତାହାର ଚୈତନ୍ୟୋଦୟ ହେଲା । ସୈନିକଟିର ନାମ 'କର୍ଣ୍ଣେଲ୍ ହେବାର୍ଟ' । ଡିଉକ୍ ମହାଶୟ ହେବାର୍ଟଙ୍କୁ ପଚାରିଲେ 'ତୁମେ କେଉଁ ହାସପାତାଳକୁ ଯିବାକୁ ଇଚ୍ଛା କର ?' ହେବାର୍ଟ କହିଲେ, 'ଜାଣିସୁ ହାସପାତାଳକୁ । ଦୁଇଜଣ ଇଂରେଜ ତାହାଙ୍କୁ ସ୍କନ୍ଧରେ ବହନ କରି ଅଦୂରବର୍ତ୍ତୀ ଫରାସୀ ହାସପାତାଳରେ ପହଞ୍ଚାଇ ଦେଲେ । ପରେ ହେବାର୍ଟ ମେରିଙ୍କ ଗୃହକୁ ନୀତ ହେଲେ ।

ଜଗତର ପରିଣାମ ଶାନ୍ତି । ରୋଗ, ଭୋଗ, ଶୋକ, ତାପ, ବନ୍ଧନ, ବ୍ୟସନ ଇତ୍ୟାଦି ପ୍ରବଳରୁ ପ୍ରବଳତର ଭାବ ଧାରଣ କରି କେତେ କାଳାବଧି ବିସ୍ତାର କରେ; କିନ୍ତୁ କାଳକ୍ରମେ ଶାନ୍ତ ହୋଇଥାଏ ! ଶାନ୍ତି ଜୀବର ଏକମାତ୍ର ଲକ୍ଷ୍ୟ ପଦାର୍ଥ, ଶାନ୍ତି ଜୀବର ଗତି, ଶାନ୍ତିହିଁ ଜୀବର ଈଶ୍ୱର । ନିଶୀଥ ସମୟରେ ସେହି ଭୀଷଣ ଓ୍ୱାଟର୍ଲୁ ବି ଶାନ୍ତଭାବ ଧାରଣ କଲା । ଯେଉଁ ସ୍ଥାନ ସାରାଦିନ କାଳାନ୍ତକ ବଜ୍ରନିନାଦରେ ପ୍ରକମ୍ପିତ ହୋଇ ଉଠୁଥିଲା, ସେହି ସ୍ଥାନ ବର୍ତ୍ତମାନ ଧାତ୍ରୀଗଣଙ୍କର ମୃଦୁମଧୁର ଆଶ୍ୱାସ ବାକ୍ୟରେ ମୁଖରିତ ହେବାକୁ ଲାଗିଲା । ଯେଉଁ ସ୍କନ୍ଧରେ ଅବିରତ ଖଡ଼୍‌ଗାଘାତ ହେଉଥିଲା, ସେହି ସ୍କନ୍ଧକୁ ଏବେ ସ୍ନେହମୟୀ ରମଣୀମାନଙ୍କର ସୁକୋମଳ ସୁଶୀତଳ ବାହୁବଲ୍ଲୀ ବେଷ୍ଟନ କରି ରହିଲା । ଯେଉଁ ସ୍ଥାନରେ ବନ୍ଧୁକ-ଗୁଳି ଉଡ଼ୁଥିଲା, ସେହି ସ୍ଥାନରେ ବନ ପୁଷ୍ପ ରାଜି ପ୍ରସ୍ଫୁଟିତ ହୋଇ ଚତୁର୍ଦ୍ଦିଗରେ ମନୋହର ସୌରଭ ଖେଳାଇବାକୁ ଲାଗିଲା । ଯେଉଁ ଗଗନ ମଣ୍ଡଳ ବିକଟ ଗନ୍ଧକଧୂମରେ ଆଚ୍ଛାଦିତ ହୋଇଥିଲା, ସେଠାରେ ବର୍ତ୍ତମାନ ପୂର୍ଣ୍ଣଚନ୍ଦ୍ର ଅସାଧାରଣ ଉଜ୍ଜ୍ୱଲ୍ୟ ସହକାରେ ଉଦିତ ହୋଇ ଯେପରି ପ୍ରୀତି-ବିସ୍ଫାରିତ ନେତ୍ରରେ କହିବାକୁ ଲାଗିଲେ, 'ମାନବ ! ଭୁଲି ଯାଅ ଏହି ପାପ ଯୁଦ୍ଧର ଘଟନା, ପାସୋରି ଯାଅ ଓ୍ୱାଟର୍ଲୁର ନିର୍ମମ ପୈଶାଚିକ ଅଭିନୟ ! ଏହି ଯୁଗାନ୍ତର ରୁଧିର-ସାଗର ଗର୍ଭରେ ଯେଉଁ ସୁବିମଳ ମୈତ୍ରୀ-ରତ୍ନ ପଡ଼ି ରହିଛି ତାହା ଯତ୍ନରେ ଉଠାଇ ନିଅ ।'

ରାତି ପ୍ରାୟ ତିନିଟା ବେଳେ ହେବାର୍ଟ ବିଷମ ଚିତ୍କାର କରି ଉଠି ବସିଲେ । ପାର୍ଶ୍ୱବର୍ତ୍ତିନୀ ଧାତ୍ରୀ ମେରି ତାହାଙ୍କୁ କୁଣ୍ଢେଇ ଧରି ଧୀରେ ଧୀରେ ପୁନର୍ବାର ଶୁଆଇ ଦେଲେ । କୋମଳ କଣ୍ଠରେ ପ୍ରଶ୍ନ କଲେ, "ମନସିଏର୍ କର୍ଣ୍ଣେଲ୍ ! ଆପଣ ଚିତ୍କାର କରି ଉଠିଲେ କାହିଁକି ?"

ହେବାର୍ଟ କହିଲେ, 'ମୁଁ ସ୍ୱପ୍ନ ଦେଖୁଥିଲି, କେହି ଯେପରି ମୋତେ ପର୍ବତଶୃଙ୍ଗ ଉପରକୁ ଉଠାଇ ସେଠାରୁ ଅନନ୍ତ ଅଗାଧ ଅନ୍ଧକାରମୟ ଗହ୍ୱରକୁ ନିକ୍ଷେପ କରୁଅଛି । ଏପରି ସମୟରେ ମୋର ପରିତ୍ୟକ୍ତା ସ୍ତ୍ରୀ ମେରି ଆସି ମୋତେ କୁଣ୍ଢେଇ ଧରି ପକାଇଲେ । ମୁଁ ପଡ଼ି ନାହିଁ, ମେରିଙ୍କର କୋମଳ ମଧୁର ପ୍ରେମାଲିଙ୍ଗନରେ ରକ୍ଷା ପାଇଅଛି ।'

ମେରି ହେବାର୍ଟଙ୍କ ମସ୍ତକରେ ଘନ ଘନ ବ୍ୟଜନସଞ୍ଚାଳନ କରିବାକୁ ଲାଗିଲେ । କର୍ଣ୍ଣେଲ୍‌ଙ୍କର ଭୟଙ୍କର ଜ୍ୱର ଆସିଥିଲା, ବର୍ତ୍ତମାନ ତାହା ଉପସ୍ଥିତ ହେଲା । ମେରି ଅତି ଯତ୍ନ ଓ ସ୍ନେହରେ, କର୍ଣ୍ଣେଲଙ୍କ ଦେହରେ ହସ୍ତାବର୍ତ୍ତନ କରିବାକୁ ଲାଗିଲେ । ସାର୍ଜନ୍‌ମାନେ ହେବାର୍ଟଙ୍କର ଦୁଇ ଚକ୍ଷୁ ବାନ୍ଧି ଦେଇଥିଲେ । ହେବାର୍ଟ କହିଲେ, "ନାର୍ସ ! ମୋର ଦକ୍ଷିଣ ଚକ୍ଷୁଟି ଏକାବେଳକେ ନଷ୍ଟ ହୋଇ ପଡ଼ିଛି ସଙ୍ଗୀନ ଆଘାତରେ; କିନ୍ତୁ ବାମ ଚକ୍ଷୁର ଜ୍ୟୋତି ସମ୍ପୂର୍ଣ୍ଣ ନଷ୍ଟ ହୋଇନାହିଁ । ତୁମେ ଦୟା କରି ସେହି ଚକ୍ଷୁଟି ଖୋଲି ଦିଅ ।"

ମେରି—ସାର୍ଜନଙ୍କର ଆଦେଶ ନେଇ ମୁଁ ସକାଳେ ଆପଣଙ୍କର ଚକ୍ଷୁ ଖୋଲି ଦେବି । ଏବେ ଖୋଲି ଦେଲେ ନିଦ୍ରାରେ ବ୍ୟାଘାତ ହୋଇ ପାରେ । ଏଇକ୍ଷଣି ଶୋଇ ରହନ୍ତୁ ।

ହେବାର୍ଟ—ମୁଁ ଆଉ ନିଦ୍ରା କରି ପାରିବି ନାହିଁ—ଅନେକ କଥା ମନେ ପଡ଼ୁଛି । ମୁଁ ସ୍ୱପ୍ନରେ ମେରିଙ୍କି ଦେଖିଲି କାହିଁକି ? ଆଉ ଗୋଟିଏ କଥା—ତୁମର କଣ୍ଠ ସ୍ୱର ଠିକ୍ ଯେପରି ମେରିଙ୍କ ପରି ଶୁଣା ଯାଉଛି । ଆଜି ବହୁ ଦିନ ପରେ ସେହି ବୀଣାବିନିନ୍ଦୀ ମନୋରମ-ଝଙ୍କାର ପୁନର୍ବାର ମୋ କର୍ଣ୍ଣରେ ଅମୃତଧାର ଢାଳି ଦେଉଛି । ଥରେ ଭାବୁଛି ତୁମେହିଁ ମୋର ମେରି । ପୁଣି ମନେ ହେଉଛି, ତାହା ଅସମ୍ଭବ । ଆଚ୍ଛା, ତୁମେ ଯଦି ମୋର ଚକ୍ଷୁ ଖୋଲି ନଦିଅ, ତାହା ହେଲେ ତୁମର କେଶପାଶ ମୋ ହାତ ଉପରେ ବିନ୍ୟସ୍ତ କର । ତେବେ ମୁଁ ବୁଝି ପାରିବି, ତୁମେ ମେରି କି ନା । ମେରିଙ୍କର ସୁନ୍ଦର କେଶରାଶି ମୟୂରପୁଚ୍ଛ ଅପେକ୍ଷା ବି ଅଧିକ ଚିକ୍‌କଣ, ରେଶମ ଅପେକ୍ଷା ବି ଅଧିକ କୋମଳ ଥିଲା । ମୁଁ ଘୋର ଅନ୍ଧକାରରେ ଶତ ରମଣୀଙ୍କ ମଧ୍ୟରେ କେଶ ସ୍ପର୍ଶ କରିବା ମାତ୍ରକେ ମେରିଙ୍କି ଚିହ୍ନି ପାରୁଥିଲି ।

ସେଠାରେ ବ୍ୟାଣ୍ଡେଜ୍ ବାନ୍ଧିବା ପାଇଁ ଏକ ଗୁଚ୍ଛ ସୂତ୍ର ପଡିଥିଲା । ମେର ହଠାତ୍ ତାହା ଉଠାଇନେଇ, କର୍ଣ୍ଣେଲଙ୍କ ହସ୍ତ ଉପରେ ବିନ୍ୟସ୍ତ କରି ଦେଲେ । ହେବାର୍ଟ ବିଷଣ୍ଣ ମୁଖରେ କହିଲେ, 'ନା, ତୁମେ ମେର ନୁହ ।'

*

## ବୈରାଗ୍ୟୋଦୟ

ବ୍ଲୁଚାର ଯାଇ ସର୍ବପ୍ରଥମରେ ପାରିସ ଅବରୋଧ କଲେ । କ୍ରମଶଃ ୱେଲିଙ୍ଗଟନ୍, ରୁଷ୍ ସମ୍ରାଟ୍ ଓ ଅଷ୍ଟ୍ରିୟାଧିପତି ଆସି ଜୁଣ୍ଡ ହେଲେ । ସପ୍ତାହ ମଧ୍ୟରେ ଅବରୋଧ କାର୍ଯ୍ୟ ସମ୍ପନ୍ନ ହେଲା । ପାରିସ ଉପକଣ୍ଠ ଶତ୍ରୁ ସୈନ୍ୟରେ ଆଚ୍ଛାଦିତ ହୋଇଗଲା । ନେପୋଲିୟନ ଅଦୂରବର୍ତ୍ତୀ 'ଇଲାଇସି' ପ୍ରାସାଦରେ ଅବସ୍ଥିତି କରିଥିଲେ । ପାରିସରେ ତାଙ୍କର ଅନ୍ୟତମ ସହୋଦର ଲୁଇ ବୋନାପାର୍ଟଙ୍କ ଅଧୀନରେ ବିଂଶ ସହସ୍ରରୁ ଅଧିକ ସୈନ୍ୟ ନଥିଲେ ।

କୋସାକଗଣ ବୋମ୍ବାର୍ଡ୍ (Bombard) ଆରମ୍ଭ କଲେ । ନଗର ମଧ୍ୟରେ କମାଣ-ଗୁଳି ପତିତ ହେବାକୁ ଲାଗିଲା । ପୁରବାସିଗଣଙ୍କ ପ୍ରାଣରେ ଆତଙ୍କ ଉପସ୍ଥିତ ହେଲା । ଲୁଇ ଅବସ୍ଥା ଦୃଷ୍ଟିରେ ସମ୍ରାଟଙ୍କର ଅନୁମତି ବ୍ୟତୀତ ଆତ୍ମସମର୍ପଣ କଲେ । ଶତ୍ରୁଗଣ ପାରିସରେ ପ୍ରବିଷ୍ଟ ହୋଇ ଟୁଇଲରି ଅଧିକାର କରି ମଜାଇଲେ । ଅନେକ ଅଧିବାସୀ ଭୟରେ ବାସସ୍ଥାନ ଛାଡ଼ି ପଳାଇଲେ । ଦୁରନ୍ତ କୋସାକମାନେ କେତେକ ସ୍ଥାନରେ ଅକଥ୍ୟ ବିଭୀଷିକା ବିସ୍ତାର କରିବାକୁ ଲାଗିଲେ । ସମ୍ମିଳିତଶକ୍ତି ସମୂହ ପ୍ରଚାର କଲେ ଯେ, ନେପୋଲିୟନ ଫ୍ରାନ୍ସ ଛାଡ଼ି ନଯିବା ଯାଏଁ, ସେମାନେ ପାରିସ ପରିତ୍ୟାଗ କରିବେ ନାହିଁ ।

ଏଣେ ପ୍ରାୟ ଚାଳିଶି ହଜାର ସୈନ୍ୟ ସହ ଇଲାଇସି-ପ୍ରାନ୍ତରରେ ଉପସ୍ଥିତ ହେଲେ । ମାର୍ଶାଲ ନେ ବହୁତର ସୈନ୍ୟ ସଂଗ୍ରହ କରିଛନ୍ତି । ଗୋଲନ୍ଦାଜ ସେନା ପୁନରୁଜ୍ଜୀବିତ ହୋଇଅଛନ୍ତି । ଲକ୍ଷ ଲକ୍ଷ

ଲୋକ 'ଭାଇଭ୍ ଏଲ୍ ଏମ୍ପାରର' ଧ୍ୱନିରେ ଦିଗନ୍ତ କମ୍ପିତ କରି ଉଠିଲେ । ଝୁଲ୍‌ଗୃହଟାରୁ ରମଣୀଗଣ ପର୍ଯ୍ୟନ୍ତ ସମସ୍ତେ ପୁନର୍ବାର ଫ୍ରାନ୍‌ସର ସ୍ୱାଧୀନତା ରକ୍ଷା କରିବା ପାଇଁ ବଦ୍ଧପରିକର ହେଲେ । ସମ୍ରାଟଙ୍କୁ ସମସ୍ତେ ଏକ ସ୍ୱରରେ କହିବାକୁ ଲାଗିଲେ, 'ଆମେମାନେ ତୁମ ସହିତ ମରିବୁ, ଫ୍ରାନ୍‌ସ ତୁମ ସହିତ ମରିବ ।'' ନେପୋଲିୟନଙ୍କ ଭଳି ବୀର ପକ୍ଷରେ ଏହି ଦୃଶ୍ୟ ସାମାନ୍ୟ ପ୍ରଲୋଭନଜନକ ନୁହେଁ, ସାମାନ୍ୟ ଉତ୍ସାହର ବିଷୟ ହୋଇ ନପାରେ ।

ତେବେ ବଡ଼ ଲୋକମାନେ ପତନରେ ଆହୁରି ବଡ଼ ହୋଇଥାନ୍ତି । ଶତ ସମର-ବିଜୟୀ ମହାତ୍ ନେପୋଲିୟନ ଓ୍ୱାଟର୍ଲୁ-ପରାଜୟରେ ମହତ୍ତର ହୋଇ ପାରିଥିଲେ । ପାର୍ଥିବ ସମୃଦ୍ଧିର ପରାକାଷ୍ଠା ଲାଭ ପରେ, ସେହି ମହାନୁଭବଙ୍କର ଅନ୍ତଃକରଣରେ ବର୍ତ୍ତମାନ ବୈରାଗ୍ୟର ଉଦ୍ରେକ ହୋଇଥିଲା । ବହୁ ଦିନର ତାମସିକ ଓ ରାଜସିକ ଭାବ ଅନ୍ତର୍ଦ୍ଧାନ ହେବା ପରେ ତାଙ୍କର ଚିତ୍ତକ୍ଷେତ୍ରରେ ଯେପରି ସାତ୍ତ୍ୱିକଭାବର ଉଦୟ ହୋଇଥିଲା । ସଙ୍ଗେ ସଙ୍ଗେ ରୁଧିରାତଙ୍କ ବି ପହଞ୍ଚିଲା—କହିଲେ, 'ନା, ଆଉ ରକ୍ତପାତର ପ୍ରୟୋଜନ ନାହିଁ ।'

ସେ ଏହା କହି ଦୌତ୍ୟବିଶାରଦ କଲେନ୍ କୋର୍ଟଙ୍କୁ ଆଦେଶ କଲେ, ''ତୁମେ ମୋର ଶତ୍ରୁମାନଙ୍କୁ କହ, ମୁଁ ସିଂହାସନ ପରିତ୍ୟାଗ କରୁଅଛି, ସେମାନେ ଫ୍ରାନସ ଛାଡ଼ି ଚାଲିଯାନ୍ତୁ । ନଚେତ୍ ଜନସାଧାରଣ ଯେପରି ଉତ୍ତେଜିତ ହୋଇ ଉଠିଛନ୍ତି, ସେଥିରେ ଶୀଘ୍ର ରକ୍ତପାତ ନହୋଇ ଯିବ ନାହିଁ । ମୁଁ ବି ସକାଳେ ସମୁଦ୍ରତୀରକୁ ଯାଉଅଛି । ମୋତେ ବୋଧହୁଏ ଇଂଲଣ୍ଡ ଯିବାକୁ ପଡ଼ିବ । ଅନ୍ୟ ଉପରେ ନିର୍ଭର କରିବାକୁ ହେଲେ, ମୁଁ ବ୍ରିଟିଶ୍ ରାଜାଙ୍କ ଉପରେହିଁ ନିର୍ଭର କରିବି—କାରଣ, ସେ ଉଦାର ମତରେ ରାଜ୍ୟଶାସନ କରନ୍ତି । ପତିତ ଶତ୍ରୁ ପ୍ରତି ବି ଇଂରାଜର ଉଦାରତା ଚିର ପ୍ରସିଦ୍ଧ ।''

ଏହା କହି ନେପୋଲିୟନ ବ୍ରିଟିଶ୍ ରାଜାଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖି କଲେନ କୋର୍ଟଙ୍କ ହାତରେ ଦେଲେ--

"ରୟେଲ୍ ହାଇନେସ୍ !

ମତବୈଷମ୍ୟରେ ପୀଡ଼ିତ ଏବଂ ଇଉରୋପର ପ୍ରଧାନ ପ୍ରଧାନ ଶକ୍ତି କର୍ତ୍ତୃକ ଅତ୍ୟାଗୃହୀତ ହୋଇ, ମୋର ରାଜନୈତିକ ଜୀବନର ଅବସାନ ହୋଇଅଛି । ମୁଁ ଇଂରେଜ ଜାତିର ଅତିଥି ହେବାକୁ ଆସୁଛି । ମୁଁ ଇଂଲଣ୍ଡ-ଆଇନର ଶରଣାପନ୍ନ ହେଲି; କାରଣ ସେପରି ଦୃଢ଼, ରକ୍ଷଣଶୀଳ ଓ ସମ୍ଭ୍ରାନ୍ତ ଜାତି ମୋର ଅପରାପର ଶତ୍ରୁମାନଙ୍କ ମଧ୍ୟରେ ବିଦ୍ୟମାନ ନାହିଁ ।"

ପରଦିନ ପ୍ରାତଃକାଳରେ ଇଲିଇସିର ବହୁ ବିସ୍ତୃତ ମଇଦାନରେ ପୁନରାୟ ଜନତା ଏକତ୍ର ହେଲା । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଆଜି ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ଉତ୍ତେଜନାର ଲକ୍ଷଣ ଲକ୍ଷିତ ହେଲା ନାହିଁ । ସମସ୍ତେ ଯେପରି 'ତସ୍ମିନ୍ ତୁଷ୍ଟେ ଜଗତ୍ ତୁଷ୍ଟ' ଭାବ ଧାରଣ କଲେ । ଯେତେ ଦିନ ନେପୋଲିୟନ ଜାଗରିତ ଥିଲେ, ସେତେ ଦିନ ଫ୍ରାନ୍ସର ଚେଷ୍ଟା ଜାଗରିତ ଥିଲା—ଆଜି କିନ୍ତୁ ସେହି ଦିବସର ନିଦ୍ରାଗମନ ଫଳରେ ଫ୍ରାନ୍ସ ଯେପରି ସୁପ୍ତ ହୋଇ ପଡ଼ିଲା । ନେପୋଲିୟନ ନୀରବ ଭାବରେ ଶକଟାରୋହଣ କଲେ । କାଉଣ୍ଟ ବାରଟ୍ରାଣ୍ଡ୍, ମହାମତି ଲାସ୍ କାସାସ, ଜେନେରାଲ୍ ମନ୍ଥଲନ୍ ପ୍ରମୁଖ ଅନ୍ତରଙ୍ଗ ବନ୍ଧୁଗଣ ତାଙ୍କର ଆସନ୍ନ କାରାବାସର ସଙ୍ଗୀ ହେବାକୁ ବାହାରିଲେ । ସେହି ନୀରବ ନିସ୍ତବ୍ଧ ନରସାଗର ମଧ୍ୟରେ ଯିବା ବେଳେ, ପ୍ରତ୍ୟେକ ବ୍ୟକ୍ତି ନେପୋଲିୟନଙ୍କୁ ଭକ୍ତି ସହିତ ଅଭିବାଦନ କଲେ, ପ୍ରତ୍ୟେକ ଚକ୍ଷୁରୁ ଅବିରଳ ବେଗରେ ବାରିଧାରା ପତିତ ହେବାକୁ ଲାଗିଲା । କ୍ଷଣକାଳ ମଧ୍ୟରେ ତାଙ୍କର ଶକଟ ଅଦୃଶ୍ୟ ହୋଇଗଲା ।

ନେପୋଲିୟନଙ୍କୁ ଇଂଲଣ୍ଡକୁ ନେଇ ଯିବା ପାଇଁ ସମୁଦ୍ର ତୀରରେ 'ବେଲେରୋଫୋନ' ନାମକ ଖଣ୍ଡିଏ ଶ୍ରେଷ୍ଠ ଜାହାଜ ପ୍ରସ୍ତୁତ ଥିଲା । ସେ ମୋଟେ ୫୯ ଜଣ ବନ୍ଧୁ, କର୍ମଚାରୀ ଓ ଭୃତ୍ୟଙ୍କୁ ସଙ୍ଗେ ନେଇ ଜାହାଜରେ ପଦାର୍ପଣ କଲେ । ଫ୍ରାନ୍ସର ଅମୂଲ୍ୟନିଧିକୁ ବକ୍ଷରେ ଧାରଣ କରି, 'ବେଲେରୋଫୋନ୍' ତରଙ୍ଗ ମୁଖରେ ଧାବିତ ହେଲା । ବୋଧହେଲା ଯେପରି ଦୁର୍ବୃତ୍ତ କୋପାକ କଂସ-ଭୟରେ ଦେବକୀ-ହୃଦୟ-ନନ୍ଦନକୁ ଧରି ବସୁଦେବ ଯମୁନା ପାର ହେଉଅଛନ୍ତି । ତୀରରେ ଦଣ୍ଡାୟମାନ ଅସଂଖ୍ୟ

ଲୋକଙ୍କର ଦୃଷ୍ଟି ଅନ୍ଧକାର କରି, ଫ୍ରାନ୍ସର ସେହି ମହାପ୍ରତାପଶାଳୀ ସୂର୍ଯ୍ୟ କ୍ଷଣକାଳ ମଧ୍ୟରେ ଦକ୍ଷିଣ ଦିଗ୍‌ମଣ୍ଡଳରେ ଅସ୍ତମିତ ହୋଇଗଲେ ।

ନେପୋଲିୟନଙ୍କର ପରୋପକାର ପ୍ରବୃତ୍ତି ପ୍ରବାଦସ୍ୱରୂପ । ସେ ଲୋକଙ୍କର ଉପକାର-ସାଧନ-ପଥ ପାଇବା ମାତ୍ରକେ ତାହା କେବେ ଛାଡ଼ନ୍ତି ନାହିଁ । ଜୀବନ ସନ୍ଧ୍ୟାରେ ଲୋକୋପକାର-ସାଧନ ତାଙ୍କ ମହତ୍ ଜୀବନର ପ୍ରଧାନ ବ୍ରତ ଥିଲା । ଫରାସୀ-ରକ୍ତପାତ-ଭୀତି ତାଙ୍କ ମନରେ ବୈରାଗ୍ୟ ଜନ୍ମାଇଲା—ଫଳରେ ସେ ଆତ୍ମସମର୍ପଣ କଲେ ।

*

# ବିଦାୟ

ସୁସଭ୍ୟ ଇଂରାଜ ଜାତିର ଗୁଣଗ୍ରାହିତା ପ୍ରବାଦ ସ୍ୱରୂପ ।'ବେଲେରୋଫୋନ' ପ୍ଲାଇମାଉଥରେ ନଙ୍ଗର କରିବାକ୍ଷଣି, ହଜାର ହଜାର ଲୋକ ନୌକା ଚଢ଼ି ସମ୍ରାଟଙ୍କୁ ଅଭ୍ୟର୍ଥନା କରିବାକୁ ଆସିଲେ । ସରକାରଙ୍କ ଆଦେଶରେ ନୌକା ସକଳ ବେଲେରୋଫୋନ୍‌ଠାରୁ ତିନି ଶତ ଗଜ ଦୂରରେ ରହିଲେ ସତ; କିନ୍ତୁ "ଏହି ମହାତ୍ମା ପ୍ରଜାସାଧାରଣଙ୍କର ବନ୍ଧୁ" ବୋଲି ଲୋକେ ପ୍ରାଣ ଖୋଲି ଆନନ୍ଦ ଧ୍ୱନି କରିବାକୁ ଲାଗିଲେ । ଶିକ୍ଷିତ ଇଂରେଜ ମହିଳାଗଣ ରୁମାଲ୍ ହଲାଇ ସମ୍ରାଟଙ୍କ ପ୍ରତି ସ୍ୱ ସ୍ୱ ସମବେଦନା ପ୍ରକାଶ କରିବାକୁ ଲାଗିଲେ । ନେପୋଲିୟନ ସେମାନଙ୍କର କୌତୂହଳ ନିବୃତ୍ତି ନିମନ୍ତେ ଅନେକ ଥର ପାଟାତନ (Deck) ଉପରେ ଆସି ଠିଆ ହୋଇଥିଲେ । ପ୍ରତ୍ୟହ ପ୍ରଭାତରୁ ସନ୍ଧ୍ୟା ପର୍ଯ୍ୟନ୍ତ ଅସଂଖ୍ୟ ନରନାରୀ ସମ୍ବଳିତ ଅନ୍ୟୂନ ଏକ ସହସ୍ର ତରଣୀ ବେଲେରୋଫୋନ୍ ଚତୁର୍ଦ୍ଦିଗରେ ଅବିରତ ବିଦ୍ୟମାନ ରହି ଅତୁଳନୀୟ ଅଦ୍ୱିତୀୟ ଶୋଭା ବିସ୍ତାର କରୁଥିଲେ ।

ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କର ଭାବନା ଉପସ୍ଥିତ ହେଲା । ବେଲେରୋଫୋନ୍‌ର ତିନି ଦିଗରେ ଅନ୍ତତଃ ଦଶ ମାଇଲ ପର୍ଯ୍ୟନ୍ତ ଯୁଦ୍ଧଜାହାଜ ସଜ୍ଜିତ ହେଲା । ଦୁଇ ଖଣ୍ଡି ଦ୍ରୁତଗାମୀ ରଣତରୀ ଗାର୍ଡସ୍ୱରୂପ ଅନବରତ

ବେଲେରୋଫୋନ୍ ଚତୁର୍ଦ୍ଦିଗରେ ବିଚରଣ କରିବାକୁ ଲାଗିଲା ଏବଂ ଡ୍ରିଙ୍ଗିମାନଙ୍କର ସଂଖ୍ୟା ହିବାରଜନ୍ମରେ ଦଶ ଗୁଣ ବଢ଼ିଇ ହିଆଗଲା ।

ଯେଉଁ ସକଳ ତରଣୀ କୌତୂହଳାଧିକ୍ୟବଶତଃ ବେଲେରୋ-ଫୋନର ନିକଟବର୍ତ୍ତୀ ହେବାକୁ ଚେଷ୍ଟାକଲେ, ସେଗୁଡ଼ିକ ଉପରେ ସରକାରୀ ଗୁଳି ପଡ଼ିବାକୁ ଲାଗିଲା । ଦେଖୁଁ ଦେଖୁଁ ଗାର୍ଡ଼-ବୋଟର ସୈନିକ ଦର୍ଶକଗଣଙ୍କର ଦୁଇଖଣ୍ଡି ନୌକା ଜଳମଗ୍ନ କରିଦେଲେ—କେତେଗୋଟି ମୂଲ୍ୟବାନ୍ ଜୀବନ ବିନଷ୍ଟ ହେଲା । ତଥାପି କୁତୂହଳଲୁବ୍ଧ ଦର୍ଶକଗଣ କିଛି ମାତ୍ର ପଶ୍ଚାତ୍ପଦ ହେଲେ ନାହିଁ ।

ନେପୋଲିୟନଙ୍କ ପ୍ରତି ଜନସାଧାରଣଙ୍କର ଅନୁରାଗ ଓ ଭକ୍ତି ଦେଖି ବ୍ରିଟିଷ୍ ଗଭର୍ଣ୍ଣମେଣ୍ଟ ପ୍ରମାଦ ଗଣିଲେ, ସାବଧାନ ହେଲେ । ସେଣ୍ଟ୍ ଜେମ୍ସର କ୍ୟାବିନେଟ୍‌ରେ ଭାବନା ପଡ଼ିଲା । ସେଠାରେ ଅନେକ ଲୋକ ସମ୍ରାଟଙ୍କୁ ହତ୍ୟା କରିବା ପକ୍ଷରେ ଥିଲେ । ଶେଷରେ କାଲ୍ଡ ଡ୍ୟୁକ୍ ଅବ୍ ସମର୍-ସେଟଙ୍କର ଏକାନ୍ତ ଚେଷ୍ଟାରେ ନେପୋଲିୟନଙ୍କର ଜୀବନ ରକ୍ଷା ହେଲା ।

ପରଦିନ ନେପୋଲିୟନଙ୍କ ସମକ୍ଷରେ ବ୍ରିଟିଶ୍ ରାଜାଙ୍କର ଆଦେଶ-ପତ୍ର ପଠିତ ହେଲା—"ଜେନାରେଲ୍ ବୋନାପାର୍ଟଙ୍କୁ, ପୁନର୍ବାର ଇଉରୋପର ଶାନ୍ତିଭଙ୍ଗ କରିବାର ସୁବିଧା ଦେଲେ, ମିତ୍ରରାଜାଗଣ ଓ ସ୍ୱଦେଶ ପ୍ରତି ବ୍ରିଟିଶ୍ ରାଜାଙ୍କର କର୍ତ୍ତବ୍ୟ ଭଙ୍ଗ ହେବ । ଅତଏବ ବ୍ରିଟାନିକ୍ ମ୍ୟାଜେଷ୍ଟି ବୋନାପାର୍ଟଙ୍କର ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରିବା ସଙ୍ଗତ ବୋଧ କରନ୍ତି । ସେଣ୍ଟ୍ ହେଲେନା ଦ୍ୱୀପ ତାଙ୍କର ବସତି ପାଇଁ ନିର୍ଦ୍ଦିଷ୍ଟ ହୋଇଅଛି । ସେହି ସ୍ଥାନର ଜଳବାୟୁ ଅତି ସ୍ୱାସ୍ଥ୍ୟକର । ସେଠାକୁ ଜଣେ ଚିକିତ୍ସକ, ତିନି ଜଣ ସାମରିକ କର୍ମଚାରୀ ଏବଂ ବାର ଜଣ ଭୃତ୍ୟଙ୍କୁ ସଙ୍ଗେ ନେଇ ଯିବେ । ସମସ୍ତେ ବନ୍ଦୀ ସ୍ୱରୂପ ରହିବେ ।"

ଆଦେଶ ଶୁଣି ନେପୋଲିୟନ ବନ୍ଧୁଗଣଙ୍କୁ କହିଲେ—"ମୁଁ ସେଣ୍ଟ୍ ହେଲେନାକୁ ଭୟଙ୍କର ମନେ କରେ । ସେହି ଦ୍ୱୀପ ଖର ନିଦାଘ-ଦଗ୍ଧ ଏବଂ ସଭ୍ୟ ଜଗତରୁ ବହୁ ଦୂରରେ ଅବସ୍ଥିତ । ବ୍ରିଟିଶ୍ ସରକାର

ମୋତେ ବୋର୍ବୋନଗଣଙ୍କ ହାତରେ ଅର୍ପଣ କଲେ ନାହିଁ କାହିଁକି ? ମୁଁ ବ୍ରିଟିଷ୍ ରାଜ ଉପରେ ନିର୍ଭର କରି ପ୍ରବଞ୍ଚିତ ହୋଇଅଛି । ଏମାନେ ମୋର ମୃତ୍ୟୁ-ଆଦେଶ କରିଥିଲେ ବି ଅଧିକତର ଅନୁଦାରତାର ପରିଚୟ ଦେଇ ନଥାନ୍ତେ ।"

ସର୍ ଜର୍ଜ କକ୍‌ବାରନ୍ ବନ୍ଦୀଗଣଙ୍କୁ ସେଣ୍ଟ୍ ହେଲେନାରେ ପହଞ୍ଚାଇ ଦେବା ନିମନ୍ତେ ଆଦିଷ୍ଟ ହେଲେ । ତାଙ୍କ ପ୍ରତି ହୁକୁମ ଥିଲା, ସେ ବେଲେରୋଫୋନରେ ଯାଇ ସମ୍ରାଟଙ୍କର ଖାନତଲାସ କରିବେ । ସେ ସମ୍ରାଟଙ୍କ ସମକ୍ଷରେ ଏହି ହୁକୁମ ବିଷୟ ଲଜ୍ଜାବନତ ମୁଖରେ ଜଣାଇଲେ । ନେପୋଲିୟନଙ୍କର ଭ୍ୟାଲେ-ଡ-ଚେମ୍ବାରଙ୍କ (Valet de Chamber) ସର ଜର୍ଜଙ୍କ ଟ୍ରଙ୍କ ସକଳ ଖୋଲି ଦେଖିବାକୁ ଲାଗିଲେ । ଏକଲକ୍ଷ ଫ୍ରାଙ୍କ୍ ପରିମିତ ସ୍ୱର୍ଣ୍ଣମୁଦ୍ରା ମିଳିଲା । ନାନାବିଧ ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ବାସନ, ହୀରକ ଓ ଦଲିଲାଦିରେ ସମ୍ରାଟଙ୍କ ପାଖରେ ପ୍ରାୟ ଋଳିଶି ଲକ୍ଷ ଫ୍ରାଙ୍କ୍ ଥିଲା । ସବୁ କକ୍‌ବାରନ୍‌ଙ୍କର ହସ୍ତଗତ ହେଲା । ସମ୍ରାଟଙ୍କର ପାଥେୟ-ନିର୍ବାହ ସକାଶେ ମାତ୍ର ବାର ହଜାର ପାଞ୍ଚଶତ ଫ୍ରାଙ୍କ୍ ତାଙ୍କର ଭ୍ୟାଲେ-ଡ-ଚେମ୍ବାରଙ୍କ ହସ୍ତରେ ପ୍ରଦତ୍ତ ହେଲା । ଅବଶିଷ୍ଟ ସମ୍ପତ୍ତି ସେଣ୍ଟ୍ ହେଲେନାକୁ ପଠାଇ ସମ୍ରାଟଙ୍କ ହାତରେ ଅର୍ପଣ କରିବାକୁ ସ୍ଥିର ହୋଇ-ଥିଲା । ସମ୍ରାଟଙ୍କର ପକେଟ ଅନୁସନ୍ଧାନ କରିବା ପାଇଁ ବି ଜର୍ଜଙ୍କ ପ୍ରତି ଆଦେଶ ଥିଲା; କିନ୍ତୁ ସେ ଉକ୍ତ ଆଦେଶ ପାଳନ କଲେ ନାହିଁ । ନେପୋଲିୟନଙ୍କ ହାତରୁ ତରବାରି ଛଡ଼ାଇ ନେବା ପାଇଁ ଲର୍ଡ କିଥ୍ ଆଦିଷ୍ଟ ହୋଇଥିଲେହେଁ, ସେ ଏହି ଅପ୍ରୀତିକର କାର୍ଯ୍ୟରେ ସମ୍ରାଟଙ୍କୁ ଅବମାନିତ କଲେ ନାହିଁ ।

୧୮୧୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୯ ତାରିଖରେ ସର ଜର୍ଜ କକ୍‌ବାରନ୍ ଦଶ ଗୋଟି ଯୁଦ୍ଧ ଜାହାଜ-ସମନ୍ୱିତ 'ନର୍ଥାମ୍ବରଲାଣ୍ଡ' ନାମକ ସୁବୃହତ୍ ଅର୍ଣ୍ଣବଯାନରେ ଷଷ୍ଠି ସହସ୍ର ସୈନ୍ୟସହ ସୁପ୍ରସିଦ୍ଧ ବନ୍ଦୀମାନଙ୍କୁ ନେଇ ମହାସମାରୋହରେ ସେଣ୍ଟ୍ ହେଲେନା ଯାତ୍ରା କଲେ । ଦୂରରେ ଫ୍ରାନ୍ସର ଉପକୂଳ ଦୃଷ୍ଟ ହେଲା । ଫରାସୀ ଭଦ୍ରଲୋକଗଣ 'ହେଇଟି ଫ୍ରାନ୍ସ, ହେଇଟି ଫ୍ରାନ୍ସ' ବୋଲି ଚିତ୍କାର କରି ଉଠିଲେ । ନେପୋଲିୟନ

କେବିନରୁ ବାହାରି ଫ୍ରାନ୍‌ସ ପ୍ରତି କାତର ଦୃଷ୍ଟିପାତ କଲେ, ସଜଳ ନୟନରେ ବ୍ୟାକୁଳ ପ୍ରାଣରେ ପ୍ରଣାମ କରି କହିଲେ, 'ବୀର ପ୍ରସବିନୀ ଫ୍ରାନ୍‌ସ ! ବିଦାୟ !'

*

# ସେଣ୍ଟ ହେଲେନାରେ

ସେଣ୍ଟ ହେଲେନା ଦଶ ମାଇଲ ଦୀର୍ଘ, ଛ ମାଇଲ ଓସାର—ଇଉରୋପଠାରୁ ଛ ସହସ୍ର ଏବଂ ଆଫ୍ରିକାର ନେଦିଷ୍ଟ ଉପକୂଳରୁ ବାରଶହ ମାଇଲ ଦୂରରେ ଅବସ୍ଥିତ । ଚତୁର୍ଦ୍ଦିଗରେ ସହସ୍ର ଫୁଟ ଉଚ୍ଚ ଦୁର୍ଭେଦ୍ୟ ପର୍ବତ ପ୍ରାଚୀରଦ୍ୱାରା ପରିବେଷ୍ଟିତ । ଦୂରରୁ କୃଷ୍ଣବର୍ଣ୍ଣ ଶିଳାସ୍ତୂପ ଭିନ୍ନ ଆଉ କିଛି ଦେଖାଯାଏ ନାହିଁ । ଆଟଲାଣ୍ଟିକ ମହାସାଗରରେ ଏହି ଦ୍ୱୀପ ଯେପରି ଗୋଟାଏ ଅତି ଭୀଷଣ ଅନଧିଗମ୍ୟ ଗିରି-ଦୁର୍ଗ । ପ୍ରଚଣ୍ଡ ରୌଦ୍ର, ପ୍ରବଳ ଝଟିକା ଓ ଗଗନରେ ଅବିଶ୍ରାନ୍ତ ମେଘୋଦୟ ଏହି ସ୍ଥାନର ପ୍ରାକୃତିକ ଅବସ୍ଥା; ଜଳବାୟୁ ଅତି ଅସ୍ୱାସ୍ଥ୍ୟକର ।

୧୭ ଅକ୍ଟୋବରରେ ସମ୍ରାଟ ଚବିଶ ଜଣ ଅନୁଯାତ୍ରୀଙ୍କ ସଙ୍ଗେ ସେଣ୍ଟ ହେଲେନାରେ ଅବତରଣ କଲେ । ସ୍ଥାନୀୟ ଶାସନକର୍ତ୍ତା ସର୍ ହଡସନ୍ ଲୋ ତାଙ୍କ ପ୍ରତି କିଛି ସମ୍ମାନ ପ୍ରଦର୍ଶନ କଲେ ନାହିଁ । ସେହି ଗର୍ବିତ ଇଂରେଜ ନାନା ପ୍ରକାରେ ସମ୍ରାଟଙ୍କର ଉଦ୍‌ବେଗ ଜନ୍ମାଇବାକୁ ଲାଗିଲେ । ନେପୋଲିୟନ ଅନଧିଶ୍ରୟ ନିବାସର ଭାଗୀ ହେଲେ । ବନ୍ଦୀମାନଙ୍କର ଭରଣପୋଷଣ ପାଇଁ ବ୍ରିଟିଷ୍ ଗଭର୍ଣ୍ଣମେଣ୍ଟ ବାର୍ଷିକ ତିନି ଲକ୍ଷ ଫ୍ରାଙ୍କ୍ ନିର୍ଦ୍ଧାରଣ କରିଥିଲେହେଁ, ସେମାନେ ଆହାର ବେଳେ ଯଥେଷ୍ଟ ପରିମାଣରେ ଦୁଗ୍ଧ ଓ ଶକ୍ତ ପାଉନଥିଲେ । କେତୋଟି କୃଷ୍ଣବର୍ଣ୍ଣ, କଦର୍ଯ୍ୟ ରୁଟିରେ ମାତ୍ର ଇଉରୋପବିଜୟୀଙ୍କର ଭୌତିକ ଅସ୍ତିତ୍ୱ ରକ୍ଷା ହେଉଥିଲା । ବସ୍ତୁତଃ ବ୍ରିଟିଷ୍ ଗଭର୍ଣ୍ଣମେଣ୍ଟଙ୍କ ଅନୁକମ୍ପାର ଅଙ୍କ ଖାତାପତ୍ରରେ ସ୍ଥୂଳକଳେବର ହୋଇ ରହି କ୍ଷୁଧାର୍ତ୍ତର ସମ୍ମୁଖସ୍ଥିତ ଶାଳପତ୍ର ବା

କଦଳୀ ପତ୍ରରେ ଉପସ୍ଥିତ ହେଲେ, ତାହା ଅଣୁବୀକ୍ଷଣ ଯନ୍ତ୍ରର ସାହାଯ୍ୟ ବ୍ୟତିରେକେ ଦେଖାଯାଉ ନଥିଲା । ଅତ୍ୟୁନ୍ନତ ଗିରିଶିଖର ସଦୃଶ ସେହି ଗଭର୍ଣ୍ଣମେଣ୍ଟରୁ ପ୍ରଚୁର ବାରିଧାରା ପ୍ରବାହିତ ହୁଏ ସତ, କିନ୍ତୁ ନିମ୍ନସ୍ଥ ନିମ୍ନପଥରେ ଯେଉଁ ସକଳ ଅତଳସ୍ପର୍ଶୀ ଗହ୍ୱର ମୁଖବ୍ୟାଦନ କରି ରହିଅଛି, ସେ ଗୁଡିକ ତାହାର ଅଧିକାଂଶ ଟାଣିନିଏ, ପ୍ରାନ୍ତରବାସିଙ୍କ ଅଦୃଷ୍ଟରେ କେତୋଟି ଛିଟିକା ଭିନ୍ନ ଆଉ କିଛି କେବେ ଜୁଟେ ନାହିଁ । କେବଳ ଆହାର ନୁହେ, ବନ୍ଦୀଗଣଙ୍କର ବିହାର, ଆଳାପ, ବିଶ୍ରାମ ଇତ୍ୟାଦି ବିଷୟରେ ସର୍ ହଡସନ୍ ନିଦାରୁଣ ହସ୍ତକ୍ଷେପ କରିବାକୁ ଲଗିଲେ ।

ମନୁଷ୍ୟ ଅଭ୍ୟାସର ଦାସ । କାଳକ୍ରମେ ଫରାସୀ ବୀରଗଣ ସବୁ ସହିବାକୁ ଲଗିଲେ । ସେମାନେ ଅଭିନବ ଜଳବାୟୁ, ଫର୍ଣ୍ଣ ଏକତଳ ଗୃହରେ ବାସ ଓ ଅପକୃଷ୍ଟ ଭୋଜନ ସହ୍ୟ କରି ପାରିଲେ । କିନ୍ତୁ ସର୍ ହଡ୍‌ସନଙ୍କର ରୁକ୍ଷ ବ୍ୟବହାର, ଉଦ୍ଧତ ଦୃଷ୍ଟି, କର୍କଶ ବଚନ ସେମାନଙ୍କର ଅତିଶୟ ଅସହ୍ୟ ହୋଇ ଉଠିଲା । ହଡ୍‌ସନ୍ ପ୍ରତ୍ୟହ ଆସି ଜେନାରେଲ୍ ବୋନାପାର୍ଟଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧରେ ନାନା କଥା ପଚାରନ୍ତି । ଫରାସୀ ଭଦ୍ର-ବ୍ୟକ୍ତିଗଣ ତାଙ୍କ କଥାର କୌଣସି ଉତ୍ତର ଦିଅନ୍ତି ନାହିଁ । ସର୍ ହଡ୍‌ସନଙ୍କୁ ଦେଖିବା ମାତ୍ରକେ ସମ୍ରାଟଙ୍କର ସର୍ବାଙ୍ଗ ଲକ୍ଷଣୀୟ ଭାବରେ କମ୍ପିତ ହୁଏ ଏବଂ ସେ ଗ୍ଲେଲାଯିବା ପରେ ମଧ୍ୟ କିଛି ସମୟ ତାଙ୍କର ଅସ୍ଥିରତା ରହେ । ନେପୋଲିୟନ କହନ୍ତି, ବିଧାତାଙ୍କ ସୃଷ୍ଟିରେ ହଡ୍‌ସନଙ୍କ ପରି ପାଷଣ୍ଡ ଲୋକ ଆଉ କାହାକୁ ଦେଖି ନାହାନ୍ତି ।

★

## ଡେବାର୍ଟଙ୍କର ଅନୁତାପ

ହେବାର୍ଟଙ୍କର ଅବସ୍ଥା କ୍ରମଶଃ ଶୋଚନୀୟ ହେଉଅଛି । ମେରି ପ୍ରାଣପଣରେ ତାଙ୍କର ସେବା ଶୁଶ୍ରୂଷା କରୁଛନ୍ତି ସତ, କିନ୍ତୁ କୌଣସି ଫଳ ହେଉନାହିଁ । ହେବାର୍ଟ ମୃଦୁ ମନ୍ଦ କଣ୍ଠରେ କହିଲେ, "ନାର୍ସ, ମୁଁ ବୋଧହୁଏ ଆଉ

ବଞ୍ଚିବ ନାହିଁ । ତେବେ ସେଥିରେ ମୋର କିଛି କ୍ଷୋଭ ନାହିଁ । ଜୀବନରେ ମେରିଙ୍କି ଆଉ ଦେଖି ପାରିଲି ନାହିଁ, ଏତିକି ମୋର କ୍ଷୋଭ ରହିଲା ।”

ନାର୍ସ କହିଲେ, “ମନସିଓର କର୍ଣେଲ୍ ! ଆପଣ ଅବଶ୍ୟ ପ୍ରତିକାର ଲଭ କରିବେ । ଦେଖନ୍ତୁ, ମେରି ଆପଣଙ୍କର ପରିତ୍ୟକ୍ତା ସ୍ତ୍ରୀ, ତାହାଙ୍କୁ ସ୍ମରଣ କରି ଆପଣ ନିରର୍ଥକ ବ୍ୟଥିତ ହେଉଛନ୍ତି କାହିଁ ?”

ହେବାର୍ଟ—ନାର୍ସ, ଯେଉଁ ବ୍ୟକ୍ତି ଯାହା ନିକଟରେ ଅପରାଧୀ ଥାଏ, ମରଣ ସମୟରେ ତାହାକୁ ତାହାର କଥହିଁ ସ୍ମରଣ କରିବାକୁ ହୁଏ । ମୁଁ ତ ଈଶ୍ୱରଙ୍କ ନାମ ମନେ କରିବାକୁ ଇଚ୍ଛୁକ । କିନ୍ତୁ ମୋ ମନେ ପଡୁଛନ୍ତି କେବଳ ମେରି । ମୋର ସ୍ୱର୍ଗ ଓ ନରକ ସବୁ ମେରିଙ୍କ ସଙ୍ଗେ । ମେରି ଏକା ଅଜ୍ଞାତସାରରେ ମୋର ଚିତ୍ତକ୍ଷେତ୍ର ଅଧିକାର କରି ନେଇଛନ୍ତି ।

ନାର୍ସ—ଯାହାଙ୍କ ସହିତ ଯାହାର ମନାନ୍ତର ଘଟେ, ସେ ତାହାକୁ ପରିତ୍ୟାଗ କରିବା ତ ସ୍ୱାଭାବିକ । ଏହି ପ୍ରଥା ତ ଚିରଦିନ ଅଛି । ଅନେକେ ପତ୍ନୀ ପରିତ୍ୟାଗ କରିଥାନ୍ତି । ଆପଣ ମେରିଙ୍କି ପରିତ୍ୟାଗ କରି ବିଶେଷ କଣ ଅପରାଧ କରିଛନ୍ତି, ମୁଁ ତାହା ବୁଝିପାରୁ ନାହିଁ । ଆପଣ ମାତୃଭୂମି ପାଇଁ ପ୍ରାଣ ଦେଉଛନ୍ତି । ଆପଣ ଅବଶ୍ୟ ସ୍ୱର୍ଗକୁ ଯିବେ ।

ହେବାର୍ଟ—ନାର୍ସ, ମୁଁ ଗୁରୁତର ଅପରାଧ କରିଅଛି । ତୁମେ ଯଦି ବିରକ୍ତ ନହୁଅ, ତାହାହେଲେ ମୁଁ ତୁମକୁ ମୋର ଅପରାଧ ବୁଝାଇ ଦେବି ।

ନାର୍ସ—ନା, ବିରକ୍ତ ହେବି ନାହିଁ । ଆପଣ ସ୍ୱଚ୍ଛନ୍ଦ ଭାବରେ କହନ୍ତୁ— ଅବ୍ୟବହିତ ଚିତ୍ତରେ ଶୁଣିବି ।

ହେବାର୍ଟ—ପାଖରେ ବେଞ୍ଜାମିନ୍ ନାମରେ ଜଣେ ଅତି ଦୁର୍ଦ୍ଧର୍ଷ ଲୋକ ବାସ କରୁଥିଲେ । ଉପପ୍ଲବ ସମୟରେ ସେ ଜେକବିନ୍ ସମ୍ପ୍ରଦାୟଭୁକ୍ତ ଥିଲେ । ସେ ରୋବାସ୍ପିୟାରଙ୍କର ଅନ୍ୟତମ ଅନୁଚର ।

ତାଙ୍କର ନିଷ୍ଠୁରତାର ଇୟତ୍ତା ନଥିଲା । ନଦାରୁଣ ଔପପ୍ଳବିକ ଧର୍ମାଧିକରଣରେ ଯେଉଁ ସକଳ ରମଣୀଙ୍କର ପ୍ରାଣଦଣ୍ଡ ଆଦେଶ ହୁଏ, ବେଞ୍ଜାମିନ୍ ସେମାନଙ୍କର ମସ୍ତକ ମୁଣ୍ଡନ କରିବାର ଭାର ନେଇଥିଲେ । ଏକଦା କୌଣସି ସମ୍ଭ୍ରାନ୍ତ ମହିଳା ତାଙ୍କୁ କହିଥିଲେ, 'ମହାଶୟ, ମୋର ଗ୍ରୀବାଚ୍ଛେଦନର ଆଦେଶ ହୋଇଅଛି, ମୋର କେଶଚ୍ଛେଦନର ତ ଆଦେଶ ହୋଇ ନାହିଁ । ଆପଣ ମୋତେ ଜୀବିତାବସ୍ଥାରେ ଶ୍ରୀହୀନ କରିବେ କାହିଁକି ?' ରମଣୀ ଏହା କହିବାରୁ ନିଷ୍ଠୁର ବେଞ୍ଜାମିନ୍ ତାଙ୍କର କେଶଚ୍ଛେଦନ ତ କରି ପକାଇଲେ, ଅଧିକରେ ମୁଷ୍ଟ୍ୟାଘାତରେ ତାଙ୍କର ଦଉଡି ସମ୍ମୁଖ ଦନ୍ତ ଭାଙ୍ଗି ତାଙ୍କୁ ଆହୁରି ଶ୍ରୀହୀନ କରିଦେଲେ । ଅନନ୍ତର ରୋବେସ୍ପିୟରଙ୍କର ପତନ ହେଲ; ଫଳତଃ ବେଞ୍ଜାମିନ୍ ରୟୁାଲିଷ୍ଟ ହୋଇ ଉଠିଲେ । ଏଥିପାଇଁ ସେ ଦୋଷୀ ବୋଲି କହୁନାହିଁ; କାରଣ ସେତେବେଳେ ଅନେକ ଜେକ୍ବିନ୍ ରୟୁାଲିଷ୍ଟ ହୋଇଥିଲେ ।

ନାର୍ସ—ଜେକ୍ବିନ୍‌ଗଣ ତ ଅତିରେ ରାଜବଂଶ ଧ୍ୱଂସ କଲେ, ପୁନର୍ବାର ସେମାନେ ରାଜଭକ୍ତ ହୋଇ ଉଠିଲେ କପରି ?

ଢେବାର୍ଟ—ରାଜବଂଶ ଧ୍ୱଂସ କରି ଯେତେବେଳେ ସେମାନେ ଦେଖିଲେ ଯେ ରାଜଦଣ୍ଡ ସେମାନଙ୍କର ହସ୍ତଗତ ହେଲା ନାହିଁ, କ୍ରମେ କ୍ରମେ ନେପୋଲିୟନଙ୍କର ହାତକୁ ଗଲା, ଯେତେବେଳେ ସେମାନଙ୍କର ନବୀକରଣ-ପିପାସା ଛୁଟି ଗଲା । ସେମାନେ ପୁନରାୟ ପ୍ରାଚୀନତା ପ୍ରତି ଦୃଷ୍ଟିପାତ କଲେ । ଖାଲି ଦୃଷ୍ଟିପାତ ନୁହେ, ଯେ କୌଣସି ପ୍ରକାରେ ପ୍ରାଚୀନ ରାଜବଂଶର ପୁନଃ ପ୍ରତିଷ୍ଠା କରିବାକୁ ବଦ୍ଧପରିକର ହେଲେ । ଯେଉଁ ବେଞ୍ଜାମିନ୍ ଦିନେ ମେରି ଏଣ୍ଟୋଏନେଟଙ୍କର ଶିରୋମୁଣ୍ଡନ କରିଥିଲେ, ସେ ପୁଣି ଅଷ୍ଟାଦଶ ଲୁଇଙ୍କ ସିଂହାସନରେ ବସାଇବାକୁ କୃତସଙ୍କଳ୍ପ ହୋଇ ଉଠିଲେ । ଫ୍ରାନ୍ସରେ ଯେଉଁମାନେ ସ୍ୱଭାବତଃ ରୟୁାଲିଷ୍ଟ, ସେମାନେ ସେତେ

ମାରାତ୍ମକ ନୁହନ୍ତି; କିନ୍ତୁ ଜେକ୍‌ବିନ୍‌-ସମ୍ପ୍ରଦାୟରୁ ଆଗତ ଅଭିନବ ରାଜଭକ୍ତଗଣ ଅତ୍ୟନ୍ତ ଭୟଙ୍କର ଭାବ ଧାରଣ କରିଥିଲେ ।

“ନେପୋଲିୟନଙ୍କ ପ୍ରତି ବେଞ୍ଜାମିନ୍‌ଙ୍କର ବିଦ୍ୱେଷ ତାଙ୍କର ପଦବୃଦ୍ଧି ସଙ୍ଗେ ସମ୍ୟକ୍ ବୃଦ୍ଧି ପାଇବାକୁ ଲାଗିଲା । ସୁତରାଂ ଯେତେବେଳେ ୧୮୦୪ ଖ୍ରୀଷ୍ଟାବ୍ଦରେ ପ୍ରଧାନ ପ୍ରଧାନ ବ୍ୟକ୍ତିଗଣ ସମ୍ରାଟଙ୍କ ଜୀବନ ବିରୋଧରେ ଭୟଙ୍କର ଷଡ଼୍‌ଯନ୍ତ୍ର କଲେ, ବେଞ୍ଜାମିନ୍ ତହିଁରେ ଯୋଗ ନ ଦେଇ ରହି ପାରିଲେ ନାହିଁ । ସେନାପତି ମରୁ, ଗଣିତ ଶାସ୍ତ୍ରାଧ୍ୟାପକ ପିକେଗ୍ରୁ, ଡ଼ିଉକ୍ ଡି ଅଞ୍ଜିଓ, ଜର୍ଜେସ୍ କଡ଼ୁଡାଲ ଓ ଜେନାରେଲ ଲଜୋଲେ ଏହି ଷଡ଼୍‌ଯନ୍ତ୍ରରେ ଲିପ୍ତ ଥିଲେ ।

ଷଡ଼୍‌ଯନ୍ତ୍ର କିନ୍ତୁ ବିଫଳ ହୋଇଗଲା । ନେପୋଲିୟନଙ୍କ ଉପରେ ସ୍ୱର୍ଗ ଦୂତଙ୍କର ଶୁଭ ଦୃଷ୍ଟି ଥିଲା । ଉଲ୍ଲିଖିତ ଗୁପ୍ତ ମନ୍ତ୍ରଣା ପ୍ରକାଶିତ ହୋଇ ପଡ଼ିଲା । ଡିଉକ ମହାଶୟ, ମରୁ ଓ ପିକେଗ୍ରୁ ଧୃତ ହେଲେ । କଡ଼ୁଡାଲ, ଲଜୋଲେ ଓ ବେଞ୍ଜାମିନ୍ କେଉଁଆଡ଼େ ପଳାୟନ କଲେ । ଷଡ଼୍‌ଯନ୍ତ୍ରକାରିଗଣଙ୍କର ବିଚାର ନିମନ୍ତେ ଗୋଟିଏ କମିଶନ୍ ବସିଲା । ସମସ୍ତଙ୍କର ପ୍ରାଣଦଣ୍ଡ ଆଦେଶ ହେଲା । ନେପୋଲିୟନ ଆଘାତ ପାଇ କଦାପି ପ୍ରତିଘାତ କରନ୍ତି ନାହିଁ । ଏହି ସମୟରେ ଆମେମାନେ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖିବାକୁ ପାଇଲୁ । ଡ଼ିଉକ ଡି ଅଞ୍ଜିଓ ନେପୋଲିୟନଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ—ଉଦାରଚେତା ନେପୋଲିୟନ ତାଙ୍କୁ କ୍ଷମା କଲେ । ତେବେ ଘଟନାକ୍ରମେ ଏହି ସମ୍ବାଦ ପହଞ୍ଚିବା ଆଗରୁ ଡିଉକ୍ ନିହତ ହୋଇଥିଲେ । ମରୁ କ୍ଷମା ପ୍ରାର୍ଥନା କଲେ—କ୍ଷମା ପାଇଲେ । ପିକେଗ୍ରୁ ନେପୋଲିୟନଙ୍କୁ ବାଲ୍ୟକାଳରେ ଅଙ୍କଶାସ୍ତ୍ର ଶିକ୍ଷା ଦେଇଥିଲେ । ସେ କେଉଁ ମୁଖରେ କ୍ଷମା ଲୋଡ଼ନ୍ତେ ? ତଥାପି ସଦୁଦାର-ପ୍ରକୃତି ନେପୋଲିୟନ୍ ତାଙ୍କୁ ବି କ୍ଷମା କରି, ଗୋପନରେ ଗୁରୁଦକ୍ଷିଣା ସ୍ୱରୂପ ପଞ୍ଚାଶ ସହସ୍ର ଫ୍ରାଙ୍କ୍ ପଠାଇବାର ସ୍ଥିର

କଲେ । କିନ୍ତୁ ପିକେଗ୍ରୁ ପ୍ରାଣଦଣ୍ଡ ଭୟରେ ଇତିମଧ୍ୟରେ କାରାଗାରରେ ଆତ୍ମହତ୍ୟା କରି ପାରିଥିଲେ । ଲିଜୋଲେଙ୍କର ସାହସିକା କନ୍ୟା କୌଶଳ ସହ ଟୁଇଲାରରେ ପ୍ରବେଶ କରି, ସମ୍ରାଟଙ୍କ ପାଦତଳେ ପଡ଼ି ପିତାଙ୍କ ପାଇଁ କ୍ଷମା ପ୍ରାର୍ଥନା କଲେ । ଫଳତଃ ଲିଜୋଲେ କ୍ଷମା ପାଇଲେ । ସମ୍ରାଟ କଡୁଡ଼ାଲଙ୍କୁ କ୍ଷମା କଲେ ନାହିଁ ଏବଂ ବେଞ୍ଜାମିନଙ୍କୁ ଧରିବା ସକାଶେ ମୋତେ ଆଦେଶ କଲେ ।"

*

# ଉପକାରର ପୁରସ୍କାର

ହେବାର୍ଟ କହିବାକୁ ଲାଗିଲେ,—"ବେଞ୍ଜାମିନଙ୍କର ନିସ୍ତାର ନଥିଲା । ବର୍ତ୍ତମାନ କ୍ଷେତ୍ରରେ ତାଙ୍କ ନାମରେ କେତେଗୋଟି ନୃଶଂସତାର ଅଭିଯୋଗ ହୋଇଥିଲା । ସେ ପାରିସଠାରୁ ଦୂରରେ ଗୋଟିଏ ନିଭୃତ ପଲ୍ଲୀ ଭବନରେ ଗୋପନରେ ବାସ କରୁଥିଲେ । ମୁଁ ରାତିବେଳେ ସେହି ସ୍ଥାନ ଘେରାଉ କରି ତାଙ୍କୁ ଧରି ପକାଇଲି ।

"ବେଞ୍ଜାମିନଙ୍କର ମେରି ନାମରେ ଜଣେ ପରମ ରୂପବତୀ କନ୍ୟା ଥିଲା । ମେରିଙ୍କର ବୟସ ସେତେବେଳକୁ ଷୋହଳ ସତର । ଜନୈକ ଐଶ୍ୱର୍ଯ୍ୟଶାଳୀ କାଉଣ୍ଟ (Count) ତାଙ୍କ ରୂପ ଓ ଗୁଣରେ ମୁଗ୍ଧ ହୋଇଥିଲେ ଏବଂ ତାଙ୍କ ସଙ୍ଗେ ମେରିଙ୍କର ବିବାହ ହେବାର କଥା ଥିଲା ।

"ବେଞ୍ଜାମିନ୍ ଧୃତ ହେବାର ପରଦିନ ରାତ୍ରିର ଶେଷଭାଗରେ, କାରାଗାର ବାହାରେ ମୋ ଅନୁଚରମାନେ ଗାଢ଼ ନିଦ୍ରାଭିଭୂତ ଏବଂ କକ୍ଷାନ୍ତରରେ ବେଞ୍ଜାମିନ୍ ଅବରୁଦ୍ଧ ଅଛନ୍ତି, ଏହି ସମୟରେ ମେରି ମୋ କକ୍ଷରେ ପ୍ରବେଶ କରି, ମୋ ପାଦ ଭିଡ଼ି ଧରି ସଜଳ ଚକ୍ଷୁରେ କହିଲେ, 'କର୍ଣ୍ଣେଲ ମହାଶୟ, ମୋ ପିତାଙ୍କୁ ରକ୍ଷା କରନ୍ତୁ, ଛାଡ଼ି ଦିଅନ୍ତୁ ।'

"ମୁଁ କହିଲି, 'ସୁନ୍ଦରି, ତୁମ ପିତାଙ୍କର ଅପରାଧ ଗୁରୁତର । ସେ ସର୍ବସମକ୍ଷରେ ଧୃତ ହୋଇଛନ୍ତି—ତାଙ୍କୁ ଛାଡ଼ି ଦେବି କିପରି ?' ମେରି କହିଲେ, 'ତାହା ଆପଣହିଁ ଜାଣନ୍ତି । ମୁଁ କଦାପି ଆପଣଙ୍କର ଚରଣ ଛାଡ଼ିବି ନାହିଁ ।' ମୁଁ ତାଙ୍କର ଅନନ୍ୟସାଧାରଣ ରୂପରାଶି ପ୍ରତି ସତୃଷ୍ଣ ନୟନରେ ଦୃଷ୍ଟିପାତ କରୁଥିଲି । ତାଙ୍କର ଆଲୁଳାୟିତ କେଶପାଶର ମନୋରମ ଆଘ୍ରାଣରେ, ତାଙ୍କର ସୁକୋମଳ ସୁନ୍ଦର ଶରୀରର ନିରନ୍ତର ସଂସ୍ପର୍ଶରେ ମୋର ହୃଦୟତନ୍ତ୍ରୀ ଅତିଶୟ କୋମଳ, ଶିଥିଳ ହୋଇ ପଡ଼ିଲା । ମୋର ଏକ ପକ୍ଷରେ କର୍ତ୍ତବ୍ୟବୁଦ୍ଧି, ଅନ୍ୟ ପକ୍ଷରେ ପ୍ରଗାଢ଼ ମୋହ—ଏକ ଦିଗରେ ପରୋପକାର, ଅନ୍ୟ ଦିଗରେ ସ୍ୱାର୍ଥ; ମୁଁ ବିଷମ ସନ୍ଧିସ୍ଥଳରେ ଉପନୀତ ହେଲି ।

"ନିରପରାଧିନୀ ମେରିଙ୍କର ସୁକୋମଳ ପ୍ରାଣରେ ବ୍ୟଥା ଦେବାକୁ ମୋର ଆଦୌ ପ୍ରବୃତ୍ତି ହେଲା ନାହିଁ । ତାଙ୍କର ଉପକାର କରିବାକୁ କୃତସଂକଳ୍ପ ହୋଇ ସଂକୀର୍ଣ୍ଣ କର୍ତ୍ତବ୍ୟବୁଦ୍ଧିକୁ ଏକାବେଳକେ ବିଦାୟ ଦେଲି । ମୁଁ ତାଙ୍କୁ ପଚାରିଲି, 'ସୁନ୍ଦରି, ତୁମ ପିତାଙ୍କର ମୁକ୍ତି ବିନିମୟରେ ମୋତେ ତୁମେ କଣ ଦେଇ ପାରିବ ?' ମେରି କହିଲେ ଯେ, ତାଙ୍କ ପିତାଙ୍କୁ ଛାଡ଼ିଦେଲେ ସେ ଚିରଦିନ ମୋର ଗୁଣଗାନ କରିବେ । ମୁଁ କହିଲି, 'ସୁନ୍ଦରି ! ମୁଁ ତୁମର ରୂପରେ ମୁଗ୍ଧ ହୋଇଅଛି । କୌମାର୍ଯ୍ୟ ମୂଲ୍ୟରେହିଁ ତୁମେ ପିତାଙ୍କର ଜୀବନ କ୍ରୟ କରିପାର ।'

"ଏହା ଶୁଣିବାକ୍ଷଣି ମେରି ମୋ ଚରଣ ଛାଡ଼ି ଉଠି ଠିଆ ହେଲେ । ତାଙ୍କ ମୁଖରେ ମୃଦୁ ମଧୁର ହାସ୍ୟ, ଗଣ୍ଡଦେଶ ଲଜ୍ଜାରେ ଆରକ୍ତିମ, ନୟନଯୁଗଳ ଅଶ୍ରୁପୂର୍ଣ୍ଣ । ଏକାଧାରରେ ସେଭଳି ଆଶା ଓ ନୈରାଶ୍ୟ, ପ୍ରୀତି ଓ ବିଷାଦ, ଉତ୍ତେଜନା ଓ ଅବସାଦର ଚିତ୍ର ଜୀବନରେ କେବେ ଦେଖି ନାହିଁ । ମୁଁ ମେରିଙ୍କର ହାତ ଧରି କୋଳରେ ବସାଇ ପଚାରିଲି, 'ସୁନ୍ଦରି, ବୋଧହୁଏ କାଜିଙ୍କର କଥା ଭାବୁଛ ।'

"ମେରି ମୋ କୋଳରେ ନୀରବ ହୋଇ ବସି ରହିଲେ, ମୁଁ ତାଙ୍କର ମୁଖଚୁମ୍ବନ କଲି । ତଥାପି ତାଙ୍କୁ ପାଷାଣ ପ୍ରତିମା ପରି ବସିବାର

ଦେଖି କହିଲି, 'ମେରି, ତୁମେ ମୋ ସହିତ ପ୍ରୀତି ପ୍ରକାଶ କରୁନାହଁ, ଏଣୁ ଭାବୁଛି, ତୁମେ ନିଶ୍ଚୟ କାଉଣ୍ଟଙ୍କର କଥା ଭାବୁଛ।' ମେରି ସହାସ୍ୟ ମୁଖରେ ଉତ୍ତର କଲେ, 'କର୍ଣ୍ଣେଲ ମହାଶୟ, ମୁଁ ଶପଥ କରି କହୁଛି, ମୁଁ କାଉଣ୍ଟଙ୍କର କଥା କିମ୍ବା ଅନ୍ୟ କାହାର କଥା ଭାବୁ ନାହିଁ। ମୁଁ ମୋର ପିତାଙ୍କର କାର୍ଯ୍ୟରେହିଁ ଲାଗିବି। ଆପଣ ବିବେଚନା କରି ଦେଖନ୍ତୁ, ମୋ ପିତା ପାର୍ଶ୍ୱବର୍ତ୍ତୀ କକ୍ଷରେ ବନ୍ଧନଯନ୍ତ୍ରଣାରେ କଷ୍ଟ ପାଉଛନ୍ତି, ମୁଁ ଆପଣଙ୍କ ସହିତ କିପରି ବା ପ୍ରୀତି ପ୍ରକାଶ କରି ପାରିବି ?'

"ମୁଁ ସେହି ମୁହୂର୍ତ୍ତରେ ବେଞ୍ଜାମିନଙ୍କୁ ବନ୍ଧନମୁକ୍ତ କରି ଦେଲି। ସେ ପ୍ରାଣଦଣ୍ଡ ଭୟରେ ଏତେଦୂର ବିହ୍ୱଳ ହୋଇ ପଡ଼ିଥିଲେ ଯେ, ସେହିକ୍ଷଣି ଦୁଇଜଣ ବନ୍ଧୁଙ୍କ ସଙ୍ଗେ ଦ୍ରୁତଗାମୀ ଅଶ୍ୱରେ ଆରୋହଣ କରି ସୁଇଜର୍‌ଲେଣ୍ଡ୍ ଯାତ୍ରା କଲେ।

"ପିତାଙ୍କର ଅଚିନ୍ତ୍ୟପୂର୍ବ ମୁକ୍ତି ଲାଭରେ ମେରିଙ୍କର ମୁଖମଣ୍ଡଳ ପୂର୍ଣ୍ଣଚନ୍ଦ୍ରର ଜ୍ୟୋତିଃ ପ୍ରାପ୍ତ ହେଲା। ସେ ଯେପରି ଆନନ୍ଦରେ ଅଧୀର ହୋଇ ଉଠିଲେ। ସେ ଆନନ୍ଦାଶ୍ରୁ ବର୍ଷଣ କରି କହିଲେ, 'କର୍ଣ୍ଣେଲ୍ ମହାଶୟ, ଆପଣ ଏକା ମୋର ପ୍ରକୃତ ବନ୍ଧୁ, ଆପଣଙ୍କର ଉପକାର କେବେ ଭୁଲିବି ନାହିଁ।' ପରେ ମେରିଙ୍କର ଇଙ୍ଗିତ ଅନୁସାରେ ପରିଚାରିକା କକ୍ଷାନ୍ତରରେ ମୋର ଶୟନ ଶଯ୍ୟା ପ୍ରସ୍ତୁତ କରିବାକୁ ଲାଗିଲା।"

ନାର୍ସ—ଆପଣ ଯେପରି କହୁଛନ୍ତି କିଆଁ ? ଯେଉଁ ଶଯ୍ୟାରେ ମେରିଙ୍କର ଇଙ୍ଗିତ ଥିଲା, ତାହା ତ ପବିତ୍ର-ଶଯ୍ୟା। ତାହାର ସ୍ମୃତି ଆପଣଙ୍କୁ ଏତେ ଯନ୍ତ୍ରଣା ଦେଉଛି କାହିଁକି ?

ହେବାର୍ଟ—ନାର୍ସ ! ଜଗତରେ କୃତୋପକାରର ମୂଲ୍ୟ ଗ୍ରହଣ ପରି ଗର୍ହିତ କାର୍ଯ୍ୟ ଆଉ ନାହିଁ। ସ୍ୱାର୍ଥ ପାଇଁ ପରୋପକାର କରିବା ଅପେକ୍ଷା ବରଂ ନକରିବା ଭଲ। ଯେ ଅନ୍ୟର ବିପଦରେ ଉପକାରର ଛଳନା କରି ସ୍ୱାର୍ଥସାଧନର ସୁବିଧା ଖୋଜି ବୁଲେ, ଜଗତରେ ତାହା ପରି ନରାଧମ ଆଉ ଅଛି କିଏ ? ମୁଁ ସେହି ନରପିଶାଚର ଜ୍ୱଳନ୍ତ ଛବି। ଯେଉଁ ସ୍ଥାନରେ ମୁଁ ଉପକାରର ପୁରସ୍କାର

ଗ୍ରହଣ କଲି, ତାହାକୁ ଶ୍ମଶାନ-ଶଯ୍ୟା ନକହି କହିବ ଆଉ କଣ ? ସେ ଶଯ୍ୟା ମେରିଙ୍କ ପକ୍ଷରେ କୁସୁମ-ଶଯ୍ୟା ହୋଇଥିଲା, କାରଣ ସେହି ସ୍ଥାନରେ ସେ ମୋର କ୍ଷୁଦ୍ର ଋଣ ପରିଶୋଧ କରି ପାରିଥିଲେ । ବେଞ୍ଜାମିନଙ୍କ କ୍ଷମାଯାଚ୍ଞା କଥା ସମ୍ରାଟଙ୍କର କର୍ଣ୍ଣଗୋଚର ହେବାରୁ, ସମ୍ରାଟ୍ ପରଦିନ ବେଞ୍ଜାମିନଙ୍କୁ କ୍ଷମା କଲେ ଏବଂ ସେ ଯେପରି ସୁଇଜରଲେଣ୍ଡ୍‌ରେ ନିର୍ବିଘ୍ନରେ ପହଞ୍ଚି ପାରନ୍ତି ତାହାର ବ୍ୟବସ୍ଥା କରିବା ସକାଶେ ମୋ ନିକଟକୁ ଆଦେଶ-ପତ୍ର ପଠାଇଲେ । ମେରିଙ୍କୁ ସମ୍ରାଟଙ୍କର ପତ୍ର ଦେଖାଇଲି । ସେ ପ୍ରୀତି ଗଦ୍‌ଗଦ କଣ୍ଠରେ କହିଲେ, 'ସମ୍ରାଟ୍ ଦୀର୍ଘଜୀବୀ ହୁଅନ୍ତୁ— ସେ ମୋ ପିତା ଓ ସ୍ୱାମୀ ଉଭୟଙ୍କୁ ରକ୍ଷା କରିଛନ୍ତି ।'

ନାର୍ସ—ସମ୍ରାଟଙ୍କ ଆଦେଶରେ ମେରିଙ୍କର ପିତା ରକ୍ଷା ପାଇଲେ ସତ, କିନ୍ତୁ ଚଢେଇଦ୍ୱାରା ତାଙ୍କ ସ୍ୱାମୀଙ୍କର କି ଉପକାର ହେଲା ?

ହେବାର୍ଟ—ପ୍ରାଣଦଣ୍ଡାର୍ହ ଲୋକକୁ ଛାଡ଼ି ଦେଲେ ଫ୍ରାନ୍‌ସରେ ସେତେବେଳେ ମୁକ୍ତିଦାତାର ପ୍ରାଣଦଣ୍ଡ ହେଉଥିଲା । ମେରି ଏ କଥା ଜାଣିଥିଲେ । ଅତଏବ ସମ୍ରାଟଙ୍କ ଆଦେଶ ଶ୍ରବଣରେ ତାଙ୍କର ମୁଖମଣ୍ଡଳ ମେଘମୁକ୍ତ ଶଶଧର ପରି ସହସା ପ୍ରଦୀପ୍ତ ହୋଇ ଉଠିଲା । ପିତା ଓ ଉପକର୍ତ୍ତାଙ୍କର କୃତଜ୍ଞତା ବ୍ୟତୀତ ମେରିଙ୍କ ହୃଦୟରେ ସେତେବେଳେ ଅନ୍ୟ କୌଣସି ଭାବନା ସ୍ଥାନ ପାଉ ନଥିଲା । ସେ ମୋତେ ପତିରୂପରେ ବରଣ କରି ଅଶେଷ ଗୁଣାଲଂକୃତ କାଉଣ୍ଟଙ୍କୁ ହରାଇ, ସେଇ ସୁଯୋଗ୍ୟ ମିଳନ, ରାଜସମ୍ମାନ ଲାଭ, ସେଇ ଅତୁଳ ଐଶ୍ୱର୍ଯ୍ୟ ଭୋଗ ଆଶାରେ ଜଳାଞ୍ଜଳି ଦେଇ ସୁଦ୍ଧା, ଅଣୁମାତ୍ର କ୍ଷୋଭ କରି ନଥିଲେ । ମେରିଙ୍କର ପ୍ରାଣ ଯେପରି ଏକ ଦିଗରେ କୁସୁମ ଅପେକ୍ଷା କୋମଳ, ଅନ୍ୟଦିଗରେ ସେପରି ବଜ୍ର ଅପେକ୍ଷା କଠିନ ଥିଲା । ତାଙ୍କର ଦୃଢ଼ତା ଦେଖି, ମୋର ପ୍ରାଣ କମ୍ପି ଉଠିଲା । ସେତେବେଳେ ବୁଝିଲି, ମୁଁ ତାଙ୍କର ସର୍ବନାଶ କରିଦେଇଛି ।

*

# ସ୍ୱର୍ଗର ଆଲୋକ

ଦେବାର୍ଷ—ମୁଁ କେବେ କେବେ ମେରିଙ୍କ ସହିତ ଦେଖା କରିବାକୁ ଯାଉଥିଲି । ମେରିଙ୍କର ବିଶୃଙ୍ଖଳ ପରିସ୍ଥିତିରେ ଭିନ୍ନ ଆଉ କେହି ଆମ ଦୁହିଙ୍କର ଆକସ୍ମିକ ପରିଣୟ ସମ୍ବନ୍ଧେ ବନ୍ଧୁବର୍ଗ ବି ଜାଣି ନଥିଲେ । କାଉଣ୍ଟ୍ ସେତେବେଳେ ବି ତାଙ୍କ ପାଇଁ ଯତ୍ନବାନ୍ ଥିଲେ । ମୁଁ ପୁନଃ ପୁନଃ ମେରିଙ୍କି କାଉଣ୍ଟଙ୍କର କଥା ମନେ ପକାଉଥିଲି । ମେରି ତାହା ଶୁଣି ହସନ୍ତି— ବିଚଳିତ ହୁଅନ୍ତି ନାହିଁ । ମୁଁ ସବଦା ଦୂରରେ ବସି ସଂଯତ ଭାବରେ ତାଙ୍କ ସହିତ କଥୋପକଥନ କରେ । ସେ ମୋତେ ପ୍ରଣୟ-କୃପଣ ବୋଲି ଜାଣି ସୁଦ୍ଧା ମୋତେ ଅବଜ୍ଞା କରନ୍ତି ନାହିଁ ବରଂ ପ୍ରବଣା ପରି ଆଦର କରନ୍ତି । ଦିନେ ମେରି ମୋତେ ତିରସ୍କାର କରି କହିଲେ, 'କର୍ଣ୍ଣେଲ ମହାଶୟ, ଆପଣ କି ପ୍ରକୃତିର ଲୋକ ମୁଁ ବୁଝିପାରୁ ନାହିଁ । ଆପଣ ମୋ ପାଖକୁ ଆସିଲେ ମୋର ଅଙ୍ଗ ସ୍ପର୍ଶ କରନ୍ତି ନାହିଁ; ଯଥେଷ୍ଟ ଦୂରରେ ବସି ରହନ୍ତି ! ମୁଁ ପ୍ରତାରଣା ଜାଣେ ନାହିଁ । ମୁଁ ଆପଣଙ୍କୁ ଯାହା ଦେଇଛି, ତାହା ଆଉ ଫେରାଇ ନେଇ ପାରିବି ନାହିଁ ।" ଏହା ଶୁଣି ମୁଁ ଖିନ୍ନ ଚିତ୍ତରେ ତାଙ୍କ ନିକଟରୁ ଶେଷ ବିଦାୟ ନେଲି । ତଥାପି ମେରି କାଉଣ୍ଟଙ୍କୁ ମନରେ ସ୍ଥାନ ଦେଲେ ନାହିଁ—ଭିଖାରିଣୀ ବେଶରେ ପାରିସ ରାଜପଥରେ ବୁଲିବାକୁ ଲାଗିଲେ ।

ନାର୍ସ ! ଜଗତରେ ମୋ ଭଳି ପାଷଣ୍ଡ ଆଉ ଅଛି କିଏ ? ମେରିଙ୍କ ପାଇଁ ମୁଁ ଯେଉଁ ଦୁର୍ବିସହ ମାନସିକ ଯନ୍ତ୍ରଣା ଭୋଗ କରୁଛି, ପରମ କାରୁଣିକ ପିତା ଅଳ୍ପ ସମୟ ମଧ୍ୟରେ ତହିଁରୁ ମୁକ୍ତ କରିବେ—ଏହା ମୋ ପକ୍ଷରେ ପରମ ମଙ୍ଗଳର ବିଷୟ ବୋଲିବାକୁ ହେବ ।

ନାର୍ସ—ଆପଣ ନିଜେ ବିପନ୍ନ ହୋଇ ମେରିଙ୍କର ଉପକାର କରିଥିଲି । ଏଣୁ ସ୍ୱର୍ଗ ଆପଣଙ୍କର ସ୍ଥାନ ହେବ, 'ସନ୍ଦେହ ନାହିଁ । ମେରିଙ୍କି

ତ୍ୟାଗ କରି ଆପଣ ଯଦି କୌଣସି ଦୋଷ କରିଥାନ୍ତି, ତାହା ବି ମେରି ବୋଧହୁଏ, ଅମ୍ଳାନ ବଦନରେ କ୍ଷମା କରିବେ ।

ହେବାର୍ଟ—ମେରି ମୋର ପରିତ୍ୟାଗାପରାଧ କ୍ଷମା କରିପାରନ୍ତି—ନକଲେ ବି କ୍ଷତି ନାହିଁ । ମୁଁ ଯେ ମେରିଙ୍କର ଉପକାର କରି ହାତେ ହାତେ ତାହାର ମୂଲ୍ୟ ଗ୍ରହଣ କରିଥିଲି, ତାହାହିଁ ମୋର ପ୍ରକୃତ ଅପରାଧ, ତାହାହିଁ ମୋର ଦୁଶ୍ଚିକିତ୍ସ୍ୟ ବ୍ୟାଧି ।

ହେବାର୍ଟଙ୍କ ନିକଟରେ ମେରିଙ୍କର ପରିଚୟ ଦେବାର ବଳବତୀ ବାସନା ଥିଲା । ତେବେ ସେ ପ୍ରଥମରେ ଆତ୍ମଗୋପନ କରିଛନ୍ତି ! କର୍ଣ୍ଣେଲଙ୍କର ମୃତ୍ୟୁ କ୍ରମଶଃ ସନ୍ନିକଟ ହେବା ସଙ୍ଗେ ସଙ୍ଗେ, ମେରିଙ୍କ ହୃଦୟରେ ଆତ୍ମପ୍ରକାଶ-ପ୍ରବୃତ୍ତି ବୃଦ୍ଧି ପାଇବାକୁ ଲାଗିଲା । ସେ କିଛୁକ୍ଷଣ ଚିନ୍ତା କରି ହେବାର୍ଟଙ୍କୁ କହିଲେ, 'କର୍ଣ୍ଣେଲ୍ ମହାଶୟ ! ଶିବିର ଦ୍ୱାରରେ ଜଣେ ଦୁଃଖିନୀ ରମଣୀ ଆସି ମେରି ବୋଲି ପରିଚୟ ଦେଉଛି । ଆପଣ ଓୟାଟର୍ଲୁରେ ଆହତ ହେବାର ଶୁଣି ସେ ଆପଣଙ୍କୁ ଦେଖିବାକୁ ଆସିଛି ।'

ହେବାର୍ଟ କ୍ଷଣକାଳ ମୌନାବଲମ୍ବନ କରି ରହିଲେ; ପରେ କହିଲେ, 'ନାର୍ସ, ମୁଁ ଥରେ ମେରିଙ୍କର ଉପକାର କରିଥିଲି । ସେ ମୋତେ ଅସମୟରେ ଦେଖିବାକୁ ଆସିଛନ୍ତି । ତାଙ୍କୁ ମୋର ଶଯ୍ୟା ପାର୍ଶ୍ୱକୁ ଆଣ ନାହିଁ । ମୁଁ ତାଙ୍କଠାରୁ ଏହି ପ୍ରତ୍ୟୁପକାର ଗ୍ରହଣ କରିବି ନାହିଁ ।'

ସର୍ଜ୍ଜନ୍‌ମାନେ ମଧ୍ୟ ମଧ୍ୟରେ ହେବାର୍ଟଙ୍କର ଚକ୍ଷୁ ଖୋଲି ଦେଉଥାନ୍ତି । ସେହି ସମୟରେ ମେରି ଅନ୍ତରାଳରେ ରହିଯାଉଥାନ୍ତି -- ହେବାର୍ଟ ତାଙ୍କୁ ଦେଖି ପାରନ୍ତି ନାହିଁ । ଆଜି ଏହି ଆସନ୍ନ ସମୟରେ ହେବାର୍ଟ ଯେତେବେଳେ କହିଲେ, 'ନାର୍ସ, ଏଥର ମୋ ଆଖି ଖୋଲି ଦିଅ, ମୁଁ ସ୍ୱର୍ଗର ଆଲୋକ ଦେଖି ମରିବି', ସେତେବେଳେ ମେରି ଧୀରେ ଧୀରେ ତାଙ୍କର ଚକ୍ଷୁ ଉନ୍ମୁକ୍ତ କଲେ ।

କିନ୍ତୁ ମୃତ୍ୟପଥର ଅନ୍ତରାଳକୁ ନଯାଇ ସନ୍ଧିକ୍ଷଣରେ ଠିଆ ହୋଇ ରହିଲେ । ହେବାର୍ଟ କହିଲେ, 'ମେରି ! ଆସିଛ ! ତୁମ ପିତାଙ୍କର ମୃତ୍ୟୁଦିନଠାରୁ ଆଜି ପର୍ଯ୍ୟନ୍ତ ତୁମେ ବହୁତ କଷ୍ଟ ସହ୍ୟ କରିଛ । ଏଥର ସେ ଆସିବେ । ନାର୍ସ କାହାନ୍ତି ? 'ମୋର ଭୟଙ୍କର ପିପାସା ହେଉ ଅଛି ।' ଏହା କହି ହେବାର୍ଟ 'ନାର୍ସ, ନାର୍ସ' ବୋଲି ଚିତ୍କାର କରିବାକୁ ଲାଗିଲେ । ମେରି ପାନପାତ୍ର ନେଇ ଅଗ୍ରସର ହେଲେ । ହେବାର୍ଟ କହିଲେ, 'ମୁଁ ଦିନେ ତୁମର ଉପକାର କରିଥିଲି, ତୁମ ନିକଟରୁ ତାହାର ପ୍ରତିଦାନ କରିବି ନାହିଁ । ନାର୍ସ, ଶୀଘ୍ର ମୋତେ ଜଳ ଦିଅ ।'

ମେରି ବିଷମ ବିପଦରେ ପଡ଼ିଲେ । ସେ ନିଜ ପତିଙ୍କ ମୃତ୍ୟୁ ସମୟରେ ଜଳ ଦେଇ ନପାରି ସାଙ୍ଘାତିକ ଅସ୍ଥିର ହୋଇ ଉଠିଲେ । ସେ ହାତ ଯୋଡ଼ି ମିନତି କରି କହିଲେ, 'କର୍ଣ୍ଣେଲ୍ ମହାଶୟ ! ଆମ ଦୁହିଙ୍କ ମଧ୍ୟରେ ବର୍ତ୍ତମାନ ଉପକର୍ତ୍ତା ଓ ଉପକୃତ ସମ୍ବନ୍ଧ ନାହିଁ । ଆମେ ଅନ୍ୟ କୌଣସି ପବିତ୍ର ସମ୍ବନ୍ଧରେ ପରସ୍ପର ଆବଦ୍ଧ । ଏଣୁ ଆଶା କରେଁ, ଆପଣ ମୋର ଶୁଶ୍ରୂଷା ଗ୍ରହଣ କରିବେ ।'

ମେରି ଜଳ ନେଇ ଅଗ୍ରସର ହେଲେ । ତୃଷାରେ ହେବାର୍ଟଙ୍କର କଣ୍ଠ ଶୁଷ୍କ ହୋଇ ଯାଇଥିଲା—ତାଙ୍କର ଆଉ କଥା କହିବାର ଶକ୍ତି ନଥିଲା । ସେ ନାନାବିଧ ଇଙ୍ଗିତରେ ମେରିଙ୍କୁ ନିଷେଧ କରିବାକୁ ଲାଗିଲେ । ମେରି ପାନ ପାତ୍ରଟି ହେବାର୍ଟଙ୍କର ଓଷ୍ଠକୁ ଲଗାଇ ଧରିଲେ । ହେବାର୍ଟ କିନ୍ତୁ ମେରିଙ୍କର ହାତ ଝିଙ୍କି ଧରିବାରୁ, ଜଳ ଖସି ତଳେ ପଡ଼ିଗଲା । ହେବାର୍ଟ ବଜ୍ର ମୁଷ୍ଟିରେ ମେରିଙ୍କର ହାତ ଧରି ରହିଲେ— ମେରି ଆଉ ଜଳ ଆଣି ପାରିଲେ ନାହିଁ । ହାତ ଛାଡ଼ି ଦେବାକୁ ମେରି ପତିଙ୍କୁ ପୁନଃ ପୁନଃ ପ୍ରାର୍ଥନା କଲେ । ହେବାର୍ଟ ଛାଡ଼ିଲେ ନାହିଁ—ଅନବରତ 'ନାର୍ସ, ଜଳ ଜଳ' ରବ କରିବାକୁ ଲାଗିଲେ । ମେରି ଅଗତ୍ୟା ସାର୍ଜନଙ୍କୁ ଡାକି ପଠାଇଲେ । ସାର୍ଜନ ନପହଞ୍ଚୁଣୁ ହେବାର୍ଟ ମେରିଙ୍କର ଅଶ୍ରୁଜଳା-ଭିଷିକ୍ତ ବ୍ୟଥିତ ମୁଖମଣ୍ଡଳ ପ୍ରତି ଅନିମେଷ ନେତ୍ରରେ ଚାହିଁରହି ସ୍ୱର୍ଗର ଆଲୋକ ପାଇ ପ୍ରାଣତ୍ୟାଗ କଲେ । ଅପୂର୍ବ ଧର୍ମ ବୁଦ୍ଧି !

*

# ଯେଉଁ ଦେଶରେ ଡିମାସୀ ନାହିଁ
# ସେ ଦେଶରେ ନେପୋଲିୟନ ନାହିଁ

ଦିନେ ଲଙ୍ଗଉଡ୍‌ରେ ଗ୍ରୀଷ୍ମାଧିକ୍ୟବଶତଃ ଫରାସୀ ବୀରଗଣ ନିଶୀଥ ପର୍ଯ୍ୟନ୍ତ ନିଦ୍ରା କରି ପାରିଲେ ନାହିଁ । ସେମାନେ ନେପୋଲିୟନଙ୍କ ଆଗରେ ବସି ଜାତିର ଉତ୍‌ଥାନ ପତନ ସମ୍ବନ୍ଧରେ ନାନାବିଧ କଥୋପକଥନ କରୁଥିଲେ । ସମ୍ରାଟ୍ କିଛି ସମୟ ସେମାନଙ୍କର ବାଗ୍‌ବିତଣ୍ଡା ଶ୍ରବଣ କରି କହିଲେ, 'କି ବୀର୍ଯ୍ୟ, କି ଐଶ୍ୱର୍ଯ୍ୟ, କିଛିହେଲେ ଜାତିର ଅଭ୍ୟୁତ୍‌ଥାନର କାରଣ ହୋଇ ନପାରେ, ଜାତିର ଅଭ୍ୟୁତ୍ଥାନ ମୂଳରେ ନିଃସ୍ୱାର୍ଥତା ବିଦ୍ୟମାନ । ସ୍ୱାର୍ଥପରତା ଦୋଷରେ ଯେ କୌଣସି ଜାତିର ପତନ ହୋଇଥାଏ । ବୀର୍ଯ୍ୟ ଯଦି ଜାତିର ଉନ୍ନତିର ହେତୁ ହୋଇଥାନ୍ତା, ତାହାହେଲେ ପାର୍ବତ୍ୟ ଜାତିମାନେ ହିଁ ସର୍ବ ପ୍ରଥମରେ ପୃଥିବୀର ରାଜଦଣ୍ଡ ଧାରଣ କରିଥାନ୍ତେ; କେବଳ ଐଶ୍ୱର୍ଯ୍ୟଦ୍ୱାରା ଅଭ୍ୟୁତ୍‌ଥିତ ହେବାର ସମ୍ଭାବନା ଥିଲେ, ଇଟାଲୀର ଧନକୁବେରଗଣ ଏତେକାଳ ଅଷ୍ଟ୍ରିୟାର ପଦସେବା କରନ୍ତେ ବା କାହିଁକି ? ଜାତିର ଅଭ୍ୟୁତ୍‌ଥାନରେ ଯେଉଁ ପରିମାଣରେ ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟ ଆବଶ୍ୟକ, ତାହା ସମସ୍ତ ଜାତିରେ ଅଛି—ନାହିଁ କେବଳ ନିସ୍ୱାର୍ଥପରତା । ଜଣେ ଦରିଦ୍ର ଫରାସୀ ସନ୍ତାନର ନିଃସ୍ୱାର୍ଥ ଦାନ ଉପରେ ଫରାସୀ ସାମ୍ରାଜ୍ୟର ଭିତ୍ତି ପ୍ରସ୍ତୁତ କରାହୋଇଥିଲା । ମୁଁ ଏତେ ଦିନ ପରେ ଆପଣମାନଙ୍କ ନିକଟରେ ସେ ରହସ୍ୟର ଉଦ୍‌ଭେଦ କରୁଅଛି, ଶ୍ରବଣ କରନ୍ତୁ ।

'ସେହି ସମୟରେ ମୁଁ ପାରିସର କୌଣସି ହୋଟେଲରେ ରହି ସାମରିକ କର୍ମର ଉମେଦାରୀ କରୁଥିଲି । ଦିନେ ଏପରି ଘଟିଲା ଯେ, ପର ଦିବସ କଣ ଆହାର କରିବି ତାହାର କୌଣସି ସନ୍ଧାନ ନାହିଁ । ହୋଟେଲ-ଓ୍ୱାଲା ମୋତେ ଜଣାଇ ଦେଲା, ପୁନର୍ବାର ଟଙ୍କା ଜମା ନ ଦେଲେ ପରଦିନଠାରୁ ବୋନାପାର୍ଟର ଖାଦ୍ୟ ପ୍ରସ୍ତୁତ ହେବ ନାହିଁ । ମୁଁ ଚିନ୍ତାନ୍ୱିତ ହୋଇ ବସିଅଛି, ଏପରି ସମୟରେ ଜନନୀଙ୍କର ଖଣ୍ଡିଏ ପତ୍ର ପାଇଲି— "ମୁଁ ତୋ ପାଇଁ ସର୍ବସ୍ୱ ବ୍ୟୟ କରି ବର୍ତ୍ତମାନ ତୋର ଭାଇ ଭଉଣୀଙ୍କୁ

ନେଇ ଘୋର କଷ୍ଟରେ ପଡ଼ିଛି । ତୁ ମୋତେ ସାହାଯ୍ୟ କରୁ ନାହୁଁ କାହିଁକି ?" ଆପଣମାନେ ଶୁଣି ବିସ୍ମିତ ହେବେ, ଏହି ଉଦ୍ଭୂତ ଅଭାବ ନିବାରଣ ନିମିତ୍ତ ମୋ ନିକଟରେ 'ସେତେବେଳେ ସମ୍ପୂର୍ଣ୍ଣ ଦଶଟି ଫ୍ରାଙ୍କ୍ ବି ନଥିଲା । ମୁଁ କିୟତ୍କାଳ ଗମ୍ଭୀର ଭାବରେ ଚିନ୍ତା କଲି । ଅର୍ଥାଭାବ ଚିନ୍ତାରେ ମୁହୂର୍ତ୍ତ କେତେକେ ? କିଣ କରିବି—ସେତେବେଳେ ବି ଫ୍ରାନ୍ସରେ ଉପପ୍ଲବ ଚାଲିଥିଲା । ଅର୍ଥ ଦେଇ କେହି କାହାର ସାହାଯ୍ୟ କରିବା ତେଣିକି ଥାଉ--ସେ ସମୟରେ କେହି ହେଲେ କାହା ସଙ୍ଗେ ଭଲ କରି ଆଳାପ ପର୍ଯ୍ୟନ୍ତ କରୁନଥିଲେ । କେଉଁଠାକୁ, କାହା ପାଖକୁ ଯିବି କିଛି ସ୍ଥିର କରି ପାରିଲି ନାହିଁ । ଲୋକେ ଯେତେବେଳେ ପୁରାତନ ବନ୍ଧୁଙ୍କୁ ଦୂରରେ ଫିଙ୍ଗୁଅଛନ୍ତି, ନୂତନ ବନ୍ଧୁ ଆଉ କରିବ କିଏ ? ସେହି ନିଦାରୁଣ ସମୟରେ ଉପସ୍ଥିତ ଅଭାବ ଅସୁବିଧା ନିବାରଣର ଯେତେ ଉପାୟ ଚିନ୍ତା କଲି, ସମସ୍ତ କେବଳ ଅନୁପାୟରେ ପର୍ଯ୍ୟବସିତ ହେବାକୁ ଲାଗିଲା । ଏକମାତ୍ର ଆତ୍ମହତ୍ୟା ବ୍ୟତୀତ ବର୍ତ୍ତମାନ ସଙ୍କଟରେ ପରିତ୍ରାଣ ଲଭିବାର ଅନ୍ୟ ପଥ ନଥିଲା ।

'ପାରିସରେ ଏପରି ଅନେକ ହୋଟେଲ ଥିଲା, ଯେଉଁଠାରେ ଏକ ମାସ ଧାରରେ ଆହାର କରିଯାଇ ପାରେ । ସେପରି ହୋଟେଲ୍‌କୁ ଯାଇ କିମ୍ବା ଏକାବେଳକେ ଭିକ୍ଷୁକ ହୋଇ ନିଜ ପ୍ରାଣ ବଞ୍ଚାଇ ପାରିଥାନ୍ତି ସତ, କିନ୍ତୁ ତଦ୍ୱାରା ଜନନୀଙ୍କର ତ କୌଣସି ଉପକାର ହୁଅନ୍ତା ନାହିଁ । ଉପସ୍ଥିତ କ୍ଷେତ୍ରରେ ନିଜର ଅଭାବ ଅପେକ୍ଷା ଜନନୀଙ୍କର ଅଭାବହିଁ ମୋତେ ଅଧିକ ବିବ୍ରତ କରୁଥିଲା ଏବଂ ତହିଁରୁ ନିଷ୍କୃତି ଲଭିବାର କୌଣସି ଉପାୟ ଖୋଜି ପାଇଲି ନାହିଁ । ଅତଏବ ଏହି ଅକୃତାର୍ଥ ଜୀବନ ନିଃଶେଷ କରିବାର ସଙ୍କଳ୍ପ ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା । ଶେଷରେ ସ୍ଥିର କଲି, ସୀନ୍ ନଦୀରେ ଝାମ୍ପ ଦେବି—କାରଣ ମୁଁ ସନ୍ତରଣ ଜାଣି ନଥିଲି । ସନ୍ଧ୍ୟାର ପ୍ରାକ୍‌କାଳରେ ସୀନ୍ ତୀରରେ ଯାଇ ଉପସ୍ଥିତ ହେଲି ଏବଂ ଏକମାତ୍ର ଅନ୍ତରିପ୍ସୁ ଜନ-ପୁଲିସମାନଙ୍କର ଦୃଷ୍ଟି ଏଡ଼ାଇବା ସକାଶେ ଅନ୍ଧକାରର ପ୍ରତୀକ୍ଷା କରିବାକୁ ଲାଗିଲି ।

'ଦେଖୁଁ ଦେଖୁଁ ସୂର୍ଯ୍ୟଦେବ ଅସ୍ତମିତ ହେଲେ । ସୀନ୍‌ର ଜଳ-କଲ୍ଲୋଳ ମୋତେ ଯେପରି ସାଦର ସମ୍ଭାଷଣ କରି ଉଠିଲା । ମୁଁ ନଦୀଜଳରେ ଝାମ୍ପ ପ୍ରଦାନ କରିବାକୁ ଉଦ୍ୟତ ହୋଇଅଛି, ଏପରି ସମୟରେ କେହି ଜଣେ ପଶ୍ଚାଦ୍‌ଭାଗରୁ ହଠାତ୍ ଆସି କହିଲା, 'ଭାଇ ନେପୋଲିୟନ, ତୁମେ ଏଇଠି ବସି କଣ କରୁଛ ?' ମୁଁ ମୁହଁ ବୁଲାଇ ଦେଖିଲି, ସେ ମୋର ପୂର୍ବ ପରିଚିତ ଡିମାସୀ—ମୁଁ ନୀରବ ରହିଲି । ଡିମାସୀ କହିଲେ, "ଭାଇ ଗୁରି ବର୍ଷ ପରେ ଅକସ୍ମାତ୍ ତୁମ ସହିତ ଦେଖା ହୋଇଅଛି । ତୁମେ ଆନନ୍ଦ ପ୍ରକାଶ କରିବା ଦୂରେ ଥାଉ, ଏକାବେଳକେ ନୀରବ ! ଏହାର କାରଣ କଣ ?"

'ମୁଁ କହିଲି, "ଭାଇ, ମୋର ମୂଣ୍ଡବଥା ହେଉଛି, ଏଣୁ କଥା କହିବାକୁ ପ୍ରବୃତ୍ତି ହେଉନାହିଁ । କ୍ଷମା କର ।" ଡିମାସୀ କହିଲେ, "ତୁମେ ବୋଧ ହୁଏ ମିଥ୍ୟା କହୁଛ । ତୁମ ବିଷଣ୍ଣତାର କିଛି ନିଗୂଢ଼ କାରଣ ଅଛି —ଖୋଲି କହ ।" ମୁଁ ଡିମାସୀଙ୍କୁ ପ୍ରକୃତ କଥା ନକହି ରହି ପାରିଲି ନାହିଁ । ଡିମାସୀ ଯେତେବେଳେ ଶୁଣିଲେ ଯେ, କେବଳ ଅର୍ଥର ଅଭାବରେ ମୁଁ ଆତ୍ମହତ୍ୟା କରିବାକୁ ସମୁଦ୍ୟତ, ସେତେବେଳେ ସେ ନିଜ ପକେଟରୁ ସାତ ହଜାର ଫ୍ରାଙ୍କର ଗୋଟାଏ ବ୍ୟାଙ୍କନୋଟ୍ ବାହାର କରି ମୋ ହାତରେ ଦେଇ କହିଲେ "ଭାଇ, ଏଥିରେ ତୁମର ଜୀବନ ରକ୍ଷା ହୋଇ ପାରିବ କି ନା ଦେଖ ।"

'ମୁଁ ଅତ୍ୟନ୍ତ ଆଗ୍ରହ ସହିତ ନୋଟ୍‌ଗୁଡିକ ଧରି କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ବନ୍ଧୁଙ୍କ ମୁଖପ୍ରତି ଅନାଇଁ ରହିଲି । ଡିମାସୀ କହିଲେ, "ଭାଇ, ତୁମେ ଏହା ସ୍ୱଚ୍ଛନ୍ଦଭାବରେ ଗ୍ରହଣ କର । ଏହାର କେତେକାଂଶ ତୁମର ପୂଜନୀୟା ଜନନୀଙ୍କଠାକୁ ପଠାଅ, ଅବଶିଷ୍ଟ ନିଜ ପାଇଁ ରଖ । ମୋର ଦୃଢ଼ ବିଶ୍ୱାସ, ତୁମେ ଜଗତରେ ବଡ଼ ଲୋକ ହେବ ।"

'ଏହା କହି ଡିମାସୀ ସେଠାରୁ ଚାଲିଗଲେ । ସୀନ୍-ତୀରରେ ଡିମାସୀ ଯେଉଁ ଦାତବ୍ୟର ହସ୍ତ ବିସ୍ତାର କରିଥିଲେ, ଆପଣମାନେ ସେହି ହସ୍ତରେ କଣ ବିଧାତାର ହାତ ଦେଖୁନାହାନ୍ତି ? ତାଙ୍କର ଧାରଣା କଣ ନଥା-

ସ୍ୱପ୍ନରେ ପର୍ଯ୍ୟବସିତ ହୋଇଅଛି ? ଡ଼ମାସୀଙ୍କର ନିଃସ୍ୱାର୍ଥ ଦାନ ଉପରେ କଣ ଫରାସୀ ସାମ୍ରାଜ୍ୟ ଗଠିତ ହୋଇ ନାହିଁ । ତାଙ୍କର ସାତ ହଜାର ଫ୍ରାଙ୍କରେ ସୀନ୍-ପୁଲିନରେ ସେ ଦିନ ଯେଉଁ ଭିପୁଙ୍କର ଅଗ୍ନିର ସୂଚନା ହୋଇଥିଲା, ତାହା ନିର୍ବାପିତ କରିବାକୁ କଣ ଇଂଲଣ୍ଡକୁ ସାତ କୋଟି ସ୍ୱର୍ଣ୍ଣମୁଦ୍ରା ବ୍ୟୟ କରିବାକୁ ହୋଇନାହିଁ ? ଯେଉଁ ଜାତିରେ ନିଃସ୍ୱାର୍ଥ ଦାତା ନାହିଁ, ସେ ଜାତିର ଅଭ୍ୟୁତ୍ଥାନ ଅସମ୍ଭବ । ଯେଉଁ ଦେଶରେ ଡ଼ମାସୀ ନାହିଁ, ସେ ଦେଶରେ ନେପୋଲିୟନ ନାହିଁ ।'

*

# ଷଷ୍ଠଶୋକ

ଧାତ୍ରୀ କାର୍ଯ୍ୟରେ ମେରି ଯାହା କିଛି ପାଇଥିଲେ, ସେ ସବୁ ହେବାର୍ଟଙ୍କ ପାଇଁ ବ୍ୟୟ କରି ପକାଇଅଛନ୍ତି । ହାସପାତାଳରେ ସରକାର ରୋଗୀର ମୋଟାମୋଟି ବ୍ୟୟ ବହନ କରୁଥିଲେ । ବିଶେଷ ତଦ୍‌ବିର ଆବଶ୍ୟକ ହେଲେ ରୋଗୀକୁ ନିଜ ଧନ ବ୍ୟୟ କରିବାକୁ ପଡ଼ୁଥିଲା । ହେବାର୍ଟଙ୍କ ପାଇଁ ମେରି ତାହା କରିଥିଲେ ।

ଓସ୍ପାଟାର୍ଲୁରେ ମୃତ ସୈନିକମାନଙ୍କର ଯେପରି ଅନ୍ତ୍ୟେଷ୍ଟିର ବିଧାନ ହୋଇଥିଲା, ତାହା ଶୁଣିଲେ ହୃତ୍କମ୍ପ ଉପସ୍ଥିତ ହୁଏ । ହ୍ୱଉଟଗୋମଣ୍ଟର ଟିର୍ଜାରେ ତିନିଶତ ଶବ ସମାହିତ ହୁଏ । ସେ ଦିନ ରାତି ତମାମ ସେହି ସ୍ଥାନରୁ ହୃଦୟ-ବିଦାରକ କାତର-ଧ୍ୱନି ଉତ୍ଥିତ ହୋଇ-ଥିଲା । ଅତଏବ ମେରି ସଙ୍କଳ୍ପ କରିଥିଲେ, ଚବିଶି ଘଣ୍ଟା ମଧ୍ୟରେ ହେବାର୍ଟଙ୍କର ମୃତଦେହ ଛାଡ଼ି ଦେବେ ନାହିଁ । ଦିବା ଦୁଇ ଘଟିକା ସମୟରେ ହେବାର୍ଟଙ୍କର ମୃତ୍ୟୁ ହୁଏ । ସେହି ଭୀଷଣ ଶ୍ମଶାନରେ ଉପବାସିନୀ ମେରି ନିଶୀଥ ପର୍ଯ୍ୟନ୍ତ ହେବାର୍ଟଙ୍କର ଶବ କୋଳରେ ଧରି ଏକାକିନୀ ବସି ଥିଲେ । ସେତେବେଳେ ଯେପରି ସାବିତ୍ରୀ ଆଗରେ ଯମର ଆବିର୍ଭାବ ହେଲା—ଦୁଇ ଜଣ ଭିପୁଙ୍କର ଗୋରା । ସେମାନେ ନିମେଷ ମଧ୍ୟରେ 'ପିକ୍‌

ଆପ୍, ପିକ୍ ଆପ୍' (Pick up) ବୋଲି ଶବ ଗୋଟାଇବାକୁ ଆସିଲେ । ମେରି ପ୍ରମାଦ ଗଣିଲେ ! ସାବିତ୍ରୀଙ୍କର-ଯମ କଥାରେ ତୁଷ୍ଟ ହୋଇଥିଲା — ସେ ବୁଝିଥିଲା ବିନୟ, ବୁଝିଥିଲା, ଧାତୁର୍ଥ-ସମନ୍ୱିତ ଭକ୍ତିବୋଳା କଥା । କିନ୍ତୁ ମେରିଙ୍କର-ଯମ ବିନୟ-ବଧିର, କଥାରେ ତୁଷ୍ଟ ହେବାର ପାତ୍ର ନୁହେ — ସେ ବୁଝେ ଧାତୁ ନିର୍ମିତ ଅର୍ଥ-ସମନ୍ୱିତ ଥାଳୀ । ପତିବ୍ରତା ମେରି ସର୍ବସ୍ୱ ଦେଇ ପତିଙ୍କର ମୃତ କଳେବର ଆଉ ବାରଘଣ୍ଟା କାଳ ରଖିବାକୁ ସମର୍ଥ ହୋଇଥିଲେ ।

ମେରି ରିକ୍ତ ହସ୍ତରେ ପାଖକୁ ଫେରି ଆସିଛନ୍ତି । ତାଙ୍କର ଶରୀର-ଲତା ଶୁଷ୍କ, ମୁଖଶ୍ରୀ ନିଷ୍ପ୍ରଭ, ହୃଦୟ ଚିନ୍ତାରେ ପରିପୂର୍ଣ୍ଣ । ମୃତ୍ୟୁ ସମୟରେ ପତିଙ୍କୁ ଜଳ ଦେଇ ପାରି ନଥିଲେ, ସୁତରାଂ ତାଙ୍କ ପ୍ରାଣରେ ଭୟଙ୍କର ଯନ୍ତ୍ରଣା !

ହାୟ ମେରି ! ଯଦି ପରିଚୟ ଦେଲ, ଆଗରୁ ଦେଲ ନାହିଁ କାହିଁକି ? ପ୍ରଥମ ଦିନର ପରିଚୟରେ ଯଦି ପତି ତୁମକୁ ପ୍ରତ୍ୟାଖ୍ୟାନ କରିଥାନ୍ତେ, ତାହାହେଲେ ଅନ୍ୟ ନାରୀ ନିଯୁକ୍ତ ହୋଇଥାନ୍ତା — ହେବାର୍ଟ ମୃତ୍ୟୁବେଳେ ଜଳ ପାଇଥାନ୍ତେ । ତୁମେ ଯେ କର୍ଣ୍ଣେଲଙ୍କର ଚରିତ୍ର ଏକା-ବେଳକେ ବୁଝି ପାରି ନଥିଲ — କରିବ କଣ ? ମୃତ୍ୟୁ-ଶଯ୍ୟାରେ ଶାୟିତ ହୋଇ ସୁଦ୍ଧା ହେବାର୍ଟ କହିଥିଲେ, 'ଜୀବନରେ ମେରିଙ୍କି ଆଉ ଦେଖି ପାରିଲି ନାହିଁ, ଏତିକି ମାତ୍ର ମୋର କ୍ଷୋଭ ରହିଗଲା ।' ପ୍ରକୃତ ମେରି ଯେତେବେଳେ ଆଗରେ ଆସି ଠିଆହେଲେ, ସେତେବେଳେ ହେବାର୍ଟ ତାଙ୍କୁ ଶଯ୍ୟା ପାର୍ଶ୍ୱକୁ ଆସିବାକୁ ମନା କଲେ — ପତ୍ନୀ ହସ୍ତରୁ ଜଳ ସୁଦ୍ଧା ଗ୍ରହଣ କରିବାକୁ ଅସ୍ୱୀକୃତ ହେଲେ !

ଇଉରୋପର କନ୍ୟାମାନେ ବିବାହ ପୂର୍ବେ ସ୍ୱାମୀଙ୍କର ମନ ଜାଣି ନେଇଥାନ୍ତି, ମେରି କିନ୍ତୁ ବୈଧବ୍ୟ ପରେ ପତିଙ୍କର ମନ ଦେଉରାଇବାକୁ ବସିଲେ — ପତି ତାଙ୍କୁ ବାସ୍ତବିକ ପ୍ରେମ କରୁଛନ୍ତି କି ନା । ହେବାର୍ଟଙ୍କର ମୃତ୍ୟୁକାଳୀନ ପ୍ରତ୍ୟାଖ୍ୟାନହିଁ ମେରିଙ୍କ ହୃଦୟରେ ଅନୁକ୍ଷଣ ନୈରାଶ୍ୟ ଆଣିଥିଲା । ତେବେ ସେଇ ନୈରାଶ୍ୟ ଭିତରେ ସେ ଏକ ବିନ୍ଦୁ ଆଶା

ପାଇଥିଲେ । ସେ ଭାବୁଥିଲେ, 'କର୍ଣ୍ଣେଲ୍ ମୋତେ ପ୍ରତ୍ୟାଖ୍ୟାନ କଲେ ସତ, କିନ୍ତୁ ମୋ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲେ ।'

କର୍ଣ୍ଣେଲ୍ ମହାଶୟ, ଲୋକେ ଦୂରଦେଶକୁ ଯିବାବେଳେ ପ୍ରିୟ-ଜନଙ୍କର ପ୍ରତିକୃତି ସଙ୍ଗେ ନେଇଥାନ୍ତି । ତୁମେ ବି ସେପରି ପରଲୋକକୁ ଯିବାବେଳେ ଚକ୍ଷୁ-କ୍ୟାମେରାରେ ହତଭାଗିନୀ ମେରିଙ୍କର ଅପୂର୍ବ ଫଟୋ ଉଠାଇ ନେଇଥିଲ । ବାସ୍ତବିକ, ଜଗତରେ କେହି ହେଲେ ମେରିଙ୍କ ସରଳ ସୁନ୍ଦର ମୁଖର ଅନାଦର କରି ନପାରେ !

ମେରି ଭାବିବାକୁ ଲାଗିଲେ, 'ପତିଦେବତାଙ୍କର ମୃତ୍ୟୁକାଳୀନ ପ୍ରତ୍ୟାଖ୍ୟାନରେ ନିଷ୍କାମ-ଧର୍ମ ନିହିତ । ମୋତେ ସେ କାଉଣ୍ଟ୍ ଭବନକୁ ପଠାଇଥିଲେ - ତାହା ତାଙ୍କର ନିଃସ୍ୱାର୍ଥ ପ୍ରେମର ବିମଳ ନିଦର୍ଶନ । ମୋତେ ଦାଣ୍ଡର ଭିକାରୁଣୀ କରି ଛୁଡ଼ିଛନ୍ତି—ପ୍ରଣୟ-ପରୀକ୍ଷା ପାଇଁ । ନାଥ ! ଭାଗ୍ୟର ବିଡ଼ମ୍ବନା, ତୁମ କଥାରେ ମୁଁ କାଉଣ୍ଟେସ୍ ହୋଇ ନାହିଁ । ମୁଁ ତୁମର — ଚିରଦିନ ତୁମର ।'

ଶୋକାକୁଳା ଯୁବତୀ ମୋହରେ ନିପତିତ ହେଲେ । 'ନାସ୍ତି ଶୋକସମଂ ତମଃ ।'

*

## ଅନ୍ତରେ ଧୂଳି

ସମୁଦାୟ ପ୍ରକୃତି ନେପୋଲିୟନ ରାଜାସନରେ ଉପବିଷ୍ଟ ଥିବାବେଳେ ପ୍ରତ୍ୟେକ ଫରାସୀ ଦୟାଦାକ୍ଷିଣ୍ୟର ପରିଚୟ ଦେଉଥିଲେ । ବର୍ତ୍ତମାନ ସର୍ବାର୍ଦ୍ଧଚେତା ଅଷ୍ଟାଦଶ ଲୁଇ ସିଂହାସନରେ । ପ୍ରକୃତିପୁଞ୍ଜ ତାହାଙ୍କୁହିଁ ଆଦର୍ଶ କରି ଚଳିଲେ । ବୋନାପାର୍ଟିଷ୍ଟ ଦଳର ପତନରେ ପାରିସନଗରୀରେ ଭାବାନ୍ତର ଆସିଲା ।

ରାଜପଥରେ ଆଉ ସେ ଜନତା ନାହିଁ, ସେ ଆନନ୍ଦ ଧ୍ୱନି, ସେ ଆମୋଦ ନାହିଁ । ବନ୍ଧୁ ସହିତ ବନ୍ଧୁର ଆଉ ସେ ପ୍ରେମାଲିଙ୍ଗନ ନାହିଁ, ସେ ଆନ୍ତରିକ କୁଶଳ-ପ୍ରଶ୍ନ ନାହିଁ । କାହାର ପ୍ରତି କାହାର ସସ୍ନେହ ଦୃଷ୍ଟିପାତ ନାହିଁ, ଆଦର ବା ସାଦର ସମ୍ଭାଷଣ ଆଉ ନାହିଁ । ପାରିସର ସେ ମାଧୁର୍ଯ୍ୟ, ସେ ଆନନ୍ଦ, ସ୍ଫୁର୍ତ୍ତି ସବୁ ଯେପରି ନେପୋଲିୟନଙ୍କ ସଙ୍ଗେ ଚାଲିଯାଇଛି । ଗରିବ ଦୁଃଖିମାନେ ପାରିସ ଛାଡ଼ିବାକୁ ଲାଗିଲେ । ସେମାନେ ସଂକୀର୍ଣ୍ଣ ଗୃହରେ ବାସ କରି ପାରନ୍ତି, କିନ୍ତୁ ସଂକୀର୍ଣ୍ଣ ଭାବରେ ବାସ କରି ପାରିବେ ନାହିଁ ।

କତିପୟ ଦରିଦ୍ର ଲୋକ ଲି-ନଗରରେ ଆସି ଫାଦାର୍ ମ୍ୟାଡ୍‌ଲିନଙ୍କର କାରଖାନାରେ ଚାକିରି କରିବାକୁ ଲାଗିଲେ । ଦୁଃଖିନୀ ମେରି ବି ସେଠାରେ ଆଶ୍ରୟ ପାଇଲେ । ଲି ଅସିବାବେଳେ ମେରି ପଥରେ ମଣ୍ଟ ଫାର୍ମିଲ୍ ନାମକ ସ୍ଥାନରେ ଏକ ସରାଇରେ ତାଙ୍କର ଏକମାତ୍ର କନ୍ୟା କୁସୀକୁ ରଖି ଆସିଥିଲେ ।

ପାରିସ ଓ ଲି ମଧ୍ୟରେ ମଣ୍ଟ ଫାର୍ମିଲ୍ ନାମକ ସୁନ୍ଦର ପର୍ବତମୟ ପଲ୍ଲୀ ଅବସ୍ଥିତ । ପଲ୍ଲୀଟି ସ୍ୱାଭାବିକ ଶୋଭାରେ ପରିପୂର୍ଣ୍ଣ, ନାନା ଜାତିର ବୃକ୍ଷବଲ୍ଲରୀ-ସମାକୀର୍ଣ୍ଣ । ପର୍ବତ ପୃଷ୍ଠରେ ଗୋଟାଏ ସରାଇ । ଥେନାର୍ଡ଼ିୟାର୍ ପୁରୁଷ ଓ ସ୍ତ୍ରୀ ସେଠାର ମାଲିକ । ଥେନାର୍ଡ଼ିୟାର୍ କୁସୀକୁ ରଖି ପାଳନ କରିବାକୁ ସ୍ୱୀକୃତ ହେଲା । ମେରି ପାଖରେ ଯାହା କିଛି ଧନ ଥିଲା, ସେ ସବୁ ନେଲା । ଏହା ଛଡ଼ା ମେରି କନ୍ୟା ପାଇଁ ପ୍ରତିମାସ ସରାଇ ସ୍ୱାମୀ ନିକଟକୁ ଛ ଫ୍ରାଙ୍କ ପଠାଇବାକୁ ସ୍ୱୀକୃତ ହେଲେ । ହତଭାଗିନୀ ଜୀବନରେ ପ୍ରିୟ ଦୁହିତାକୁ ଆଉ ଦେଖି ପାରି ନଥିଲେ ।

ଲି-କାରଖାନାରେ ମେରି ନିର୍ବିବାଦରେ କାମ କରିବାକୁ ଲାଗିଲେ । ମ୍ୟାଡ୍‌ଲିନଙ୍କର କାରଖାନା-ଦ୍ୱାର ସର୍ବଦା ଅବାରିତ । ସେଠାକୁ ଯେ ଯାଏ, କାମ କରି ମାସିକ ଦଶ ଫ୍ରାଙ୍କ ଦରମା ପାଏ । ମେରି ପ୍ରଥମତଃ ମାସିକ ଯେଉଁ ଦଶ ଫ୍ରାଙ୍କ୍ ପାଇବାକୁ ଲାଗିଲେ, ସେଥିରୁ ତାଙ୍କୁ ଛ ଫ୍ରାଙ୍କ୍ କନ୍ୟାର ଭରଣପୋଷଣ ପାଇଁ ଖଳମତି ଥେନାର୍ଡ଼ିୟାରକୁ ପଠାଇବାକୁ ହେଉଥିଲା । ଅବଶିଷ୍ଟ ଚାରି ଫ୍ରାଙ୍କ୍‌ରେ ତାଙ୍କ ନିଜର ଓଳିଏ ଚଳୁଥିଲା ।

କାରଖାନାରେ ଦୁଇଟି ବିଭାଗ ଥିଲା । ଗୋଟିଏ ବିଭାଗରେ ପାଞ୍ଚଶତ ପୁରୁଷ, ଅନ୍ୟ ବିଭାଗରେ ପାଞ୍ଚଶତ ସ୍ତ୍ରୀ କାମ କରୁଥିଲେ । ପ୍ରତି ପଞ୍ଚାଶ ଜଣ ସ୍ତ୍ରୀ ଉପରେ ଜଣେ ଜଣେ କର୍ତ୍ତ୍ରୀ ନିଯୁକ୍ତ ହୋଇଥିଲେ । ମେରିଙ୍କର କାର୍ଯ୍ୟ ଦେଖି ତାଙ୍କ କର୍ତ୍ତ୍ରୀ ସାତିଶୟ ସନ୍ତୁଷ୍ଟ ହୋଇଥିଲେ । ଦୁଇ ତିନି ମାସ ମଧ୍ୟରେ ମେରି ମାସିକ କୋଡିଏ ଫ୍ରାଙ୍କ୍ ପାଇବାକୁ ଲାଗିଲେ ।

କିନ୍ତୁ ମେରିଙ୍କ ଦୁଃଖରେ ମହାବୀ ତ ଆଦ୍ଧର ମୁର୍ଣ୍ଣ ହୋଇ ନାହିଁ ! କାରଖାନାର କେତେକ ଜଣ ସ୍ତ୍ରୀ ମେରିଙ୍କର ପଦୋନ୍ନତି, ବେତନ ବୃଦ୍ଧି ସହ୍ୟ କରି ପାରିଲେ ନାହିଁ—ତାଙ୍କର ଅନ୍ନରେ ଧୂଳି ପକାଇବାକୁ ଚେଷ୍ଟା କଲେ । ଏହି ପରଶ୍ରୀକାତର ସ୍ତ୍ରୀମାନେ ପ୍ରଚାର କଲେ, ମେରି ଦୁଶ୍ଚରିତ୍ରା, ନିଜର କନ୍ୟାକୁ ତ୍ୟାଗ କରି ଆସିଛି । ଏହି ମିଥ୍ୟା ଅପବାଦରେ ମେରିଙ୍କର କର୍ତ୍ତ୍ରୀ ଆସ୍ଥା ସ୍ଥାପନ କରି ତାଙ୍କୁ କାର୍ଯ୍ୟରୁ ଅନ୍ତର କରି ଦେଲେ, ମ୍ୟାଡ଼ାଲିନଙ୍କ ଅଜ୍ଞାତସାରରେ । ଅନାଥିନୀ ମେରି କାନ୍ଦି କାନ୍ଦି କାରଖାନା ଛାଡିଲେ । ଆହା ବର୍ତ୍ତମାନ ସେ କିପରି ପ୍ରତିମାସ କୁସୀ ପାଇଁ ଟଙ୍କା ପଠାଇବେ ?

ଉପକାର କରିବା କଠିନ—ଅପକାର-ସାଧନ ଏକ ମୁହୂର୍ତ୍ତର ବି କାର୍ଯ୍ୟ ନୁହେ । ଜଗତରେ ଯେଉଁ ପରିମାଣରେ ସଦାଶୟତା ଓ ସରଳତା ବିଦ୍ୟମାନ, ତଦ୍ୱାରାହିଁ ଜଗତର କର୍ମ ସୁଚାରୁ ରୂପେ ନିର୍ବାହିତ ହୁଅନ୍ତା, ଯଦି ସ୍ୱାର୍ଥପରତା ଓ ପରଶ୍ରୀକାତରତା ପଦେ ପଦେ ବ୍ୟାଘାତ ଘଟାଉ ନଥାନ୍ତା ।

*

# ପାପାତ୍ମାର ପରିତାପ

୧୮୦୪ ସାଲରେ ଲୁଇଙ୍କୁ ସିଂହାସନରେ ବସାଇବା ପାଇଁ ଯେଉଁ ଭୀଷଣ ଷଡ଼ଯନ୍ତ୍ର ଚାଲିଥିଲା ସେଥିରେ ବେଞ୍ଜାମିନଙ୍କର ନ୍ୟୂନାଧିକ ପଞ୍ଚାଶ ଲକ୍ଷ ଫ୍ରାଙ୍କ୍ ବ୍ୟୟିତ ହୋଇଥିଲା । ସେ ଦିନଠାରୁ ସେ ନିଃସ୍ୱ । ଯେଉଁ ଦିନ ସେ ସୁଇଜରଲଣ୍ଡ୍ ଗଲେ, ସେହି ଦିନ ତାଙ୍କର ସେଇ ଅତୁଳ ଐଶ୍ୱର୍ଯ୍ୟର

ଶତ ଫ୍ରାଙ୍କ୍ ବ ନଥିଲା । ସେ ସେଠାରେ ଯାଇ କ୍ରମଶଃ ଉପଜୀବିକାର ସଂସ୍ଥାନ କରିନେଲେ । ସେ ମେରିଙ୍କ ବିଷୟରେ ନିଶ୍ଚିନ୍ତ ନଥିଲେ । ସେ ସୁଇଜରଲଣ୍ଡରୁ ତାଙ୍କର ପଲ୍ଲୀ ନିବାସକୁ ମେରିଙ୍କ ନାମରେ ଯଥେଷ୍ଟ ଧନ ପଠାଉଥିଲେ । କିନ୍ତୁ ଦୁଃଖର ବିଷୟ, ଯେଉଁ ସମୟରୁ ସେ ଟଙ୍କା ପଠାଇବାର ଆରମ୍ଭ କରନ୍ତି, ତାହା ଆଗରୁ ମେରି ତାଙ୍କ ନିଜ ପଲ୍ଲୀ ତ୍ୟାଗ କରି ଯାଇଥିଲେ । ଗ୍ରାମର କେତେ ଜଣ ଧୂର୍ତ୍ତ ଲୋକ ଜଣେ ବାଳିକାକୁ ମେରି ବୋଲି ପରିଚିତ କରାଇ ବେଞ୍ଜାମିନ୍-ପ୍ରେରିତ ସମସ୍ତ ଟଙ୍କା ଆତ୍ମସାତ୍ କରି ଦିଅନ୍ତି । ସେମାନେ କେବେ କେବେ ବେଞ୍ଜାମିନଙ୍କ ନିକଟକୁ ମେରିଙ୍କର କୁଶଳ ସମ୍ବଳିତ ପତ୍ର ଲେଖନ୍ତି ଏବଂ ନିର୍ବିବାଦରେ ଧନ ଉପଭୋଗ କରନ୍ତି; ଶାସ୍ତ୍ର କହେ, ପାପାତ୍ମାର ଧନ ସନ୍ତାନର ଭୋଗରେ ଲାଗେ ନାହିଁ ।

ଯାହାଙ୍କୁ ସିଂହାସନରେ ବସାଇବା ପାଇଁ ବେଞ୍ଜାମିନ ସର୍ବସ୍ୱାନ୍ତ ହୋଇଥିଲେ ଏବଂ ଯାହାଙ୍କର ହିତକଳ୍ପେ ସେ ଜୀବନ ପର୍ଯ୍ୟନ୍ତ ଦେବାକୁ ପ୍ରସ୍ତୁତ ଥିଲେ, ସେଇ ଲୁଇ ବର୍ତ୍ତମାନ ଫ୍ରାନ୍ସର ରାଜା । ସୁତରାଂ ରାଜାଙ୍କ ନିକଟରେ ସେ ପ୍ରତ୍ୟୁପକାର-ପ୍ରାର୍ଥୀ । ଲୁଇଙ୍କଠାରୁ ପୁରସ୍କାର ଓ ସମ୍ମାନ-ପଦବୀ ପାଇବା ଆଶାରେ ଏବଂ ସ୍ନେହର ପୁତ୍ତଳୀ ମାତୃହୀନା ଏକମାତ୍ର କୁମାରୀ କନ୍ୟାକୁ ଦେଖିବା ଉଦ୍ଦେଶ୍ୟରେ, ବେଞ୍ଜାମିନ୍ ଦଶ ବର୍ଷ ପରେ ସୁଇଜରଲଣ୍ଡ ତ୍ୟାଗ କରି ପାରିସକୁ ଫେରିଲେ । ତାଙ୍କର ଆନନ୍ଦ ଓ ଆଶା ସୀମା ମାନିଲା ନାହିଁ ।

ପ୍ରଥମରେ ସେ ନିଜ ପଲ୍ଲୀକୁ ନଯାଇ ପାରିସରେ ପ୍ରବେଶ କଲେ । ଭାବିଲେ, ପାରିସରେ ତାଙ୍କ ପାଇଁ ଯେଉଁ ସମସ୍ତ ପାରିତୋଷିକ ପ୍ରସ୍ତୁତ ଅଛି ତାହା ନେଇ ଘରକୁ ଯିବେ । ପରେ କୁମାରୀ କନ୍ୟାକୁ ସତ୍ପାତ୍ରସ୍ଥା କରିବେ । କିଛି ଦିନ ପୂର୍ବେ ତ ମେରିଙ୍କର କୁଶଳ-ପତ୍ର ପାଇ ଏକଶତ ଫ୍ରାଙ୍କ୍ ପଠାଇଥିଲେ, ମେରିଙ୍କ ପାଇଁ ତାଙ୍କର ବା ଆଉ କି ଭାବନା ? ଆଗ ପାରିସର କାମଟା ସାରି, ପରେ କନ୍ୟାକୁ ଦେଖିଯିବେ—ଉଦ୍‌ବେଗ କାହିଁକି ?

ଲୁଇଙ୍କର ପ୍ରାଇଭେଟ୍ ସେକ୍ରେଟାରି ବେଞ୍ଜାମିନଙ୍କ ମୁହଁରୁ ସକଳ ବୃତ୍ତାନ୍ତ ଶ୍ରବଣ କଲେ । ବେଞ୍ଜାମିନ୍ ଗୋଟିଏ ପ୍ରାଦେଶିକ ଗଭର୍ଣ୍ଣର-ପଦ ପାଇଁ ପ୍ରାର୍ଥନା କରିବାରୁ, ଏକ ସପ୍ତାହ ପରେ ପୁନର୍ବାର ସାକ୍ଷାତ୍ କରିବା କାରଣ ପ୍ରାଇଭେଟ୍ ସେକ୍ରେଟାରି ଆଦେଶ କଲେ । ଏକ ସପ୍ତାହ ପରେ ସେ ପୁନରାୟ ପ୍ରାଇଭେଟ ସେକ୍ରେଟାରିଙ୍କ ସହିତ ଦେଖା କରିବାରୁ, ସେ କହିଲେ, 'ମନସିଓର ସିଟିଜେନ୍, ଆପଣଙ୍କର ଆବେଦନ ଅଗ୍ରାହ୍ୟ ହୋଇଅଛି । ମ୍ୟାଜେଷ୍ଟି (ଲୁଇ) ତାଙ୍କର ପୈତୃକ ସିଂହାସନ ଲାଭ ନିମିତ୍ତ କୌଣସି ଅବୈଧ ଉପାୟ ଅବଲମ୍ବନ କରି ନାହାନ୍ତି । ଯଦି କେହି ତାଙ୍କ ପକ୍ଷ ନେଇ ସେପରି ଉପାୟ ଅବଲମ୍ବନ କରୁଥାନ୍ତି, ତାହା ହେଲେ ସେଥିପାଇଁ ସେ ଦାୟୀ ନୁହନ୍ତି । ମ୍ୟାଜେଷ୍ଟି ଆପଣଙ୍କର ସାଧୁ ଉଦ୍ଦେଶ୍ୟ, ଆନୁଗତ୍ୟ ଓ କୃତଜ୍ଞତା ପାଇଁ ଅଶେଷ ଧନ୍ୟବାଦ ଦେଇ କହିଅଛନ୍ତି ଯେ, ଆପଣଙ୍କର ସାହାଯ୍ୟ ପାଇଁ ବର୍ତ୍ତମାନ ସରକାର ନିଜ ଧନାଗାରରୁ ଏକ କପର୍ଦ୍ଦକ ବି ବ୍ୟୟ କରି ପାରିବେ ନାହିଁ । ଅଧିକ ପ୍ରାଦେଶିକ ଶାସନ-କର୍ତ୍ତୃତ୍ୱ ପ୍ରଭୃତି ଦାୟିତ୍ୱ ପୂର୍ଣ୍ଣ ପଦ—ଯାହା କେବଳ ବହୁଦର୍ଶୀ ଓ ପାରଦର୍ଶୀ ଲୋକଙ୍କୁ ପ୍ରଦତ୍ତ ହୋଇଥାଏ,—ଆପଣଙ୍କୁ ଦେଇ ନ୍ୟାୟ ଗର୍ହିତ କାର୍ଯ୍ୟ କରିବାକୁ ବି ଗବର୍ଣ୍ଣମେଣ୍ଟଙ୍କର ଇଚ୍ଛା ନାହିଁ ।'

ବେଞ୍ଜାମିନ୍ ଏକାବେଳକେ ସ୍ତମ୍ଭିତ ! ସେ ଲୁଇଙ୍କ ସହିତ ସାକ୍ଷାତ୍ କରିବାର ଇଚ୍ଛା ପ୍ରକାଶ କଲେ, ପ୍ରାଇଭେଟ ସେକ୍ରେଟାରି ତାଙ୍କର ପ୍ରାର୍ଥନା ଅଗ୍ରାହ୍ୟ କରି କହିଲେ ଯେ, ମ୍ୟାଜେଷ୍ଟି ବ୍ୟକ୍ତିଗତ ଉପକାର-ପ୍ରତ୍ୟାଶୀ ଲୋକମାନଙ୍କୁ ପ୍ରାୟ ଦେଖା ଦିଅନ୍ତି ନାହିଁ । ବେଞ୍ଜାମିନଙ୍କ ପରିତାପର ସୀମା ରହିଲା ନାହିଁ । ସେ ବିଷର୍ଣ୍ଣ ବଦନରେ ଛଳଛଳ ନୟନରେ ରାଜଧାନୀ ପରିତ୍ୟାଗ କଲେ । ତାଙ୍କର ପରିତାପରେ କେହି ସମବେଦନା ପ୍ରକାଶ କଲେ ନାହିଁ—ସେ ଅତି ପାପାତ୍ମା, ଦୁରାତ୍ମା ।

ଯେଉଁ ସ୍ଥଳରେ ଉପକାର କରି ପରିଣାମରେ ପରିତାପ କରିବାକୁ ହୁଏ, ସେ ସ୍ଥଳରେ ଉପକାରକୁ ପାପାଚରଣ ଭିନ୍ନ ଆଉ କଣ

କୁହାଯାଇପାରେ ? ଲୋକେ ପରୋପକାର ଭ୍ରମରେ ଏପରି କେତେ ଯେ ପାପାଚରଣ କରିଥାନ୍ତି ତାହାର ଇୟତ୍ତା ନାହିଁ ।

ବେଞ୍ଜାମିନ୍ ହତାଶ ହୋଇ ନିଜ ପଲ୍ଲୀ ପ୍ରତି ଅଗ୍ରସର ହେଲେ । ତାଙ୍କର ଆଗମନ ସମ୍ବାଦ ପାଇବା ମାତ୍ରକେ କୃତ୍ରିମ ମେରି ଓ ସହକାରୀ ଧୂର୍ତ୍ତଗଣ ପଲ୍ଲୀ ତ୍ୟାଗ କରି ଜଙ୍ଗଲକୁ ପଳାୟନ କଲେ । ତାଙ୍କ ପ୍ରତି ଲୋକଙ୍କର ଘୃଣା ଭୟ । ପ୍ରଗାଢ଼ ଅପତ୍ୟ ସ୍ନେହ ବେଞ୍ଜାମିନଙ୍କୁ ତାଙ୍କ ଗ୍ରାମକୁ ଟାଣି ନେଲା । ସନ୍ତାନ ସ୍ନେହର ପ୍ରଭାବବଶତଃ ଘୋର ଦୁରାଚାର, ଏକାନ୍ତ ନୃଶଂସ ବେଞ୍ଜାମିନ୍ ମଧ୍ୟ ମୁହୂର୍ତ୍ତକ ପାଇଁ ବାଳକ ପରି କୋମଳ-ପ୍ରାଣ ହୋଇ ଉଠିଲେ । କନ୍ୟା-ଦର୍ଶନ-ଆଶ୍ୱାସନା ବଳରେ ସେ ସରକାରଙ୍କର ରୁକ୍ଷ ବ୍ୟବହାର ବି ଭୁଲିଗଲେ ।

ପ୍ରାତଃକାଳରେ ସେ ନିଜ ପଲ୍ଲୀରେ ପ୍ରବେଶ କଲେ । ବହୁ ଦିନ ପରେ ପଲ୍ଲୀ ପଥଘାଟ ସବୁ ତାଙ୍କର କିଞ୍ଚିତ ଅପରିଚିତ ଅଥଚ ଭାବମୟ ବୋଧ ହେଲା—କାରଣ ତାହା ଥିଲା ମେରିଙ୍କର ବିଚରଣ-ସ୍ଥଳ । ଗୃହକୁ ଯାଇ ଦେଖିଲେ, ଫାଟକ ଦ୍ୱାର ଅନାବୃତ । ଗୃହରେ ଜନ ପ୍ରାଣୀର ସମାଗମ ନାହିଁ—ଅଥଚ ଚତୁର୍ଦ୍ଦିଗ ପରିଷ୍କାର ପରିଚ୍ଛନ୍ନ; ଗୃହଦ୍ୱାର ରୁଦ୍ଧ । ସେ 'ମେରି ମେରି' ବୋଲି ଉଚ୍ଚ ସ୍ୱରରେ ଚିତ୍କାର କଲେ । କେହି ଦ୍ୱାର ଖୋଲି ବାହାରିଲା ନାହିଁ । ବେଞ୍ଜାମିନ ପ୍ରମାଦ ଗଣିଲେ । ପରେ ବ୍ୟଥିତ ହୃଦୟରେ ଚତୁଃପାର୍ଶ୍ୱସ୍ଥ ଉଦ୍ୟାନରେ ପାଦଚାରଣ କଲେ ।

ଦଶଟା ବାଜିଲା—ମେରିଙ୍କ ସହିତ ଦେଖା ହେବାର ସକଳ ଆଶା ଅନ୍ତର୍ହିତ ହେଲା । ବେଞ୍ଜାମିନ୍ ଭାବିଲେ, ମେରି ଆଉ ଇହଜଗତରେ ନାହାନ୍ତି । ସେ ଗୋଟିଏ ବୃକ୍ଷ ତଳେ ବସି ବିଳାପ କରୁଛନ୍ତି, ଏହି ସମୟରେ ତାଙ୍କର ଜଣେ ପରିଚିତା ବୁଢ଼ୀ ତାଙ୍କ ନିକଟକୁ ଆସି କୁଶଳ ପ୍ରଶ୍ନାଦି କଲା । ମେରି ବିଷୟ ପଚାରିବାରୁ ବୁଢ଼ୀ କହିଲା—'ତୁମେ ସୁଇଜରଲାଣ୍ଡ ଯିବାର ଏକ ବର୍ଷ ପରେ ମେରି ଏ ପଲ୍ଲୀ ଛାଡ଼ି ଚାଲିଗଲା ।' ପରେ ବୁଢ଼ୀ କୃତ୍ରିମ ମେରି ଓ ଧୂର୍ତ୍ତମାନଙ୍କର ଷଡ଼ଯନ୍ତ୍ର ଜଣାଇଲା ।

ବେଞ୍ଜାମିନ ବଜ୍ରାହତ ପଥିକ ପରି ସ୍ତମ୍ଭିତ ହୋଇଗଲେ । ତାଙ୍କ ଅପତ୍ୟ ସ୍ନେହର ଅଧ୍ୟାୟ ସମାପ୍ତ ହେଲା । ସେ କନ୍ୟାକୁ ଭୁଲି ଯିବାକୁ ଚେଷ୍ଟା କଲେ ।

*

## ପୁତ୍ରୀପୃଷ୍ଠରେ ପିତାର ବେତ୍ରାଘାତ

ବେଞ୍ଜାମିନଙ୍କର ଆବେଦନ ଅଗ୍ରାହ୍ୟ କରିଦେଇ ଲୁଇ ଚିନ୍ତାନ୍ୱିତ ହୋଇ ପଡ଼ିଲେ । ଭାବିଲେ, ଷଡ଼୍‌ଯନ୍ତ୍ର ଓ ଗୁପ୍ତ ହତ୍ୟାରେ ସିଦ୍ଧହସ୍ତ, ନିଷ୍ଠୁରତାର ଅବତାର ବେଞ୍ଜାମିନଙ୍କୁ ବିମୁଖ କରି ଭଲ କରି ନାହାନ୍ତି । ବେଞ୍ଜାମିନଙ୍କର ଅସାଧ୍ୟ ବ୍ୟାପାର କିଛି ନଥିଲା । ଏଣୁ ଲୁଇ ତାଙ୍କୁ କର୍ତ୍ତୃତ୍ୱଶୀଳ ପଦରେ ରଖିବାର ସ୍ଥିର କଲେ । ବେଞ୍ଜାମିନଙ୍କ ନିଯୋଗରେ ଲୁଇଙ୍କର ଆଉ ଗୋଟିଏ ମତଲବ ଥିଲା । ଲି-ବନ୍ଦରରେ ଯେଉଁ ସକଳ ବୋନାପାର୍ଟିଷ୍ଟ ବାସ କରୁଥିଲେ, ସେମାନଙ୍କର ଉଚ୍ଛେଦ ସାଧନ କରିବା ଦରକାର । ସେତେବେଳେ ସମଗ୍ର ଫ୍ରାନ୍‌ସରେ ବେଞ୍ଜାମିନ୍ ବ୍ୟତୀତ ଅନ୍ୟ କେହି ବିନା ଅପରାଧରେ ଧର୍ମପ୍ରବଣ ନିରୀହ ସ୍ୱଜାତିବତ୍ସଳ ବୋନାପାର୍ଟିଷ୍ଟମାନଙ୍କ ଉପରେ ଅତ୍ୟାଚାର ଚଳାଇବାକୁ ସମର୍ଥ ନଥିଲେ । ଅତଏବ ବେଞ୍ଜାମିନଙ୍କୁ ପୁଲିସକର୍ତ୍ତା ପଦରେ ନିଯୁକ୍ତ କରିବା କାରଣ ଲୁଇ ପ୍ରାଇଭେଟ ସେକ୍ରେଟାରିଙ୍କି ଆଦେଶ କଲେ ।

ଏଣେ ବେଞ୍ଜାମିନ ନିଜ ମୂର୍ତ୍ତି ଧାରଣ କରିଛନ୍ତି । ପଲ୍ଲୀର ଧର୍ମ-ଦଳର ସର୍ବନାଶ କରିବା ପାଇଁ ଏବଂ କୃତଘ୍ନ ଲୁଇଙ୍କୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ ସେ ବଦ୍ଧପରିକର । ଅର୍ଥାଭାବରେ ତ କିଛି ହୋଇ ନପାରେ । ବେଞ୍ଜାମିନ୍ ଉଭୟ ମନ୍ତ୍ର ସାଧନ ପାଇଁ ନିଜର ଘର ଖଣ୍ଡିକ ବିକ୍ରୟ କରି ଦେଲେ । ବିକ୍ରୟଲବ୍ଧ ଧନ ଧରି ପାରିସକୁ ଯିବାକୁ ଉଦ୍ୟତ ହୋଇଅଛନ୍ତି ଏପରି ସମୟରେ ଜଣେ ରାଜଦୂତ ଆସି ତାଙ୍କୁ ଜଣାଇଲା ଯେ, ମ୍ୟାଜେଷ୍ଟି ତାଙ୍କୁ ଲି-ବନ୍ଦରର ପୁଲିସ-କର୍ତ୍ତା ପଦରେ ନିଯୁକ୍ତ କରିଛନ୍ତି । ବେଞ୍ଜାମିନଙ୍କର ଦମ୍ଭ, ଆନନ୍ଦ ଫେରି ଆସିଲା । ନିଷ୍ଠୁର

ପ୍ରକୃତ ଲୋକ ପକ୍ଷରେ ପୂଲସ୍ କାର୍ଯ୍ୟ ଅବଶ୍ୟ ପ୍ରୀତିକର, ଆଶାପ୍ରଦ ! ନୂତନ ପୁଲିସକର୍ତ୍ତା ଲି-ନଗରରେ ଯାଇ ପହଞ୍ଚିଲେ ।

ବେଞ୍ଜାମିନଙ୍କର ନିଯୋଗ ସମ୍ବାଦରେ ଲି-ବାସିମାନେ ସନ୍ତସ୍ତ ହେଲେ । ରାଜପଥରେ 'ଅର୍ଡ଼ର୍ ଅର୍ଡ଼ର୍' ଧ୍ୱନି ଉତ୍‌ଥିତ ହେଲା । 'ଧର ମାର' ଶବ୍ଦରେ ଚତୁର୍ଦ୍ଦିଗ କମ୍ପମାନ । ପୁରବାସିଗଣଙ୍କର ସର୍ବପ୍ରକାର ଶାନ୍ତିର ତିରୋଭାବ ହେଲା । ସମସ୍ତେ ରାଜମାର୍ଗରେ ସ୍ୱାଧୀନ ଓ ସ୍ୱଚ୍ଛନ୍ଦ ବିହାର ଆଶାରେ ଜଳାଞ୍ଜଳି ଦେଲେ । ତଥାପି ଭଗବାନ୍ ନିରୂପାୟ ଲୋକମାନଙ୍କର ଗୋଟାଏ ଆଶ୍ରୟ ଖଞ୍ଜି ଦେଲେ । ଏହି ସମୟରେ ପରମ କୃପାଳୁ ଫାଦାର୍ ମ୍ୟାଡ଼ାଲିନ୍ ଲି'ର ନଗରପାଳକ (Mayor) ନିର୍ବାଚିତ ହେଲେ ।

ଏହି ସମୟରେ ମେରି କୌଣସି ସ୍ଥାନରେ ଚାକିରି ନପାଇ ସାତିଶୟ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ । ଲୋକେ ତାଙ୍କ ଚରିତ୍ରରେ ସନ୍ଦିହାନ ହୋଇ କିଛି କାମ ଦେଲେ ନାହିଁ । ତାଙ୍କର ଗୃହ ନାହିଁ, ଆଶ୍ରୟ ନାହିଁ, ଦେହରେ ବସ୍ତ୍ର ନାହିଁ, ଉଦରରେ ଆହାର ନାହିଁ । କିନ୍ତୁ ସେ ନିଜ ପାଇଁ ବିନ୍ଦୁମାତ୍ର ଚିନ୍ତିତ ବା ଦୁଃଖିତ ନୁହନ୍ତି—ତାଙ୍କର ଏକମାତ୍ର ଭାବନା, ସେ କିପରି ମାସକୁ ମାସ କନ୍ୟା ପାଇଁ ଦଶ ଫ୍ରାଙ୍କ୍ ପଠାଇବେ । ଏହି କର୍ତ୍ତବ୍ୟ ସାଧନ ନିମିତ୍ତ ସ୍ନେହମୟୀ ଜନନୀଙ୍କୁ ଯେଉଁ ପରିମାଣରେ କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା, ତାହା ସ୍ମରଣ କଲେ ପାଷାଣ ହିଁ ବିଦୀର୍ଣ୍ଣ ହୋଇଯିବାର କଥା । ସେ ଭିକ୍ଷା କରନ୍ତି, ଘର ବାହି, ଜଳ ଆଣି ଏବଂ ନର୍ଦ୍ଦମା ସଫା କରି ଯାହା ପା'ନ୍ତି, ସବୁ କୁସୀ ପାଇଁ ରଖି ଦିଅନ୍ତି—ନିଜ ପାଇଁ ଏକ ପଇସା ହିଁ ଖର୍ଚ୍ଚ କରନ୍ତି ନାହିଁ । କ୍ଷୁଧା ହେଲେ ହୋଟେଲ ନିକଟରେ ବୁଲନ୍ତି, କେହି ଦୟା କରି ତାଙ୍କ ଆଡ଼କୁ ରୋଟି ଖଣ୍ଡିଏ ଫିଙ୍ଗି ଦେଲେ ତାହା ଉଦରସ୍ଥ କରି ତୃପ୍ତ ହୁଅନ୍ତି ।

ଏପରି କଷ୍ଟ ସମୟରେ ଦିନେ ମେରି ରାଜପଥର ଠିକ୍ ମଧ୍ୟ ଭାଗରେ ଯାଉଥିଲେ । ଏହି ସମୟରେ ପୁଲିସ ସାହେବଙ୍କର ଗାଡ଼ି ଆସିଲା । ଚିନ୍ତା-ନିମଗ୍ନା ମେରି ପୃଷ୍ଠଭାଗରୁ ଶକଟ ଆସିବାର କଥା ଜାଣି

ନାହାନ୍ତି । ରାସ୍ତାରେ ଉଭୟ ପାର୍ଶ୍ୱର ଲୋକେ ଯେତେବେଳେ ଏକ କଣ୍ଠରେ 'ଉଠ ଉଠ' ବୋଲି ଚିତ୍କାର କରି ଉଠିଲେ, ସେତେବେଳେ ହତବୁଦ୍ଧି ମେରି ଅଧିକ ହତବୁଦ୍ଧି ହୋଇ, ଥରେ ଏ ଦିଗକୁ ଥରେ ସେ ଦିଗକୁ ଆଡ଼େଇ ହୋଇଯିବାକୁ ଚେଷ୍ଟା କରୁ କରୁ ଗାଡ଼ିର ଧକ୍କା ଖାଇ ପଡ଼ିଗଲେ । ନିର୍ଦ୍ଦୟ ପୁଲିସ ସାହେବ ମେରିଙ୍କ ପୃଷ୍ଠରେ ଜୋରରେ ଦୁଇ ଥର ବେତାଘାତ କଲେ । ମେରି ଦେଖିଲେ, ପୁଲିସ ସାହେବ ଆଉ କେହି ନୁହନ୍ତି—ତାଙ୍କର ସେହି ପିତା, ଯାହାଙ୍କୁ ଦିନେ ସେ ଆତ୍ମବଳୀଦାନ କରି ଶ୍ମଶାନରୁ ଫେରାଇ ଆଣିଥିଲେ । ପିତା କିନ୍ତୁ କନ୍ୟାଙ୍କୁ ଚିହ୍ନି ପାରିଲେ ନାହିଁ । ସେ ଯେ ମଦଗର୍ବିତ, ଭିଖାରିଣୀ ତନୟାକୁ ଚିହ୍ନିବେ ବା କିପରି ?

*

## ଦାରିଦ୍ର୍ୟର କଷାଘାତ

ମେରି ଆଜଯାଏ ଭାବିଥିଲେ, ପିତାଙ୍କ ନିକଟରେ ପରିଚୟ ଦେବେ ଏବଂ ତାଙ୍କରି ଆଶ୍ରୟରେ ନିଦାରୁଣ ଦାରିଦ୍ର୍ୟ ହାତରୁ ଅବ୍ୟାହତି ପାଇବେ । ବେଞ୍ଜାମିନଙ୍କ ଆଚରଣରେ ମେରି ସେ ସଂକଳ୍ପ ତ୍ୟାଗ କଲେ—ତାଙ୍କର ଶେଷ ଆଶା ଦୂରୀଭୂତ ହେଲା ।

ଏହି ସମୟରେ ଦାରୁଣ ଶୀତ ପଡ଼ିଥିଲା । ମେରିଙ୍କ କନ୍ୟାଟିର ଶୀତବସ୍ତ୍ର ନଥିଲା । ମଣ୍ଟ ଫାର୍ମିଲର ସରାଇସ୍ୱାମୀ ପତ୍ର ଦେଇଥିଲା ଯେ, ଗରମ ଜାମା ଅଭାବରେ କୁସୀ ଅତ୍ୟନ୍ତ କଷ୍ଟ ପାଉଛି । ସମ୍ବାଦ ପାଇ ମେରି ସାତିଶୟ ଚିନ୍ତାନ୍ୱିତ ହୋଇ ପଡ଼ିଲେ । ଦଶ ଫ୍ରାଙ୍କ୍ ନହେଲେ ଗୋଟାଏ ଶୀତଜାମା ମିଳିବ ନାହିଁ । ସେ ତାହା କେଉଁଠାରୁ ପାଇବେ ? ସେ ମାସେକାଳ ପରିଶ୍ରମ କରି ଯାହା କିଛି ପାଇଥିଲେ, ଦୁଇ ତିନି ଦିନ ପୂର୍ବେ କୁସୀର ଖୋରାକ ବାବତ ସବୁ ପଠାଇ ଦେଇଥିଲେ । ବର୍ତ୍ତମାନ ସେ କପର୍ଦ୍ଦକ ଶୂନ୍ୟା । ପିତାଙ୍କ ନିକଟକୁ ଗଲେ ଭିକ୍ଷୁକା ବୋଲି ସେ

ପ୍ରତ୍ୟାଖ୍ୟାନ କରି ପାରନ୍ତ ଏବଂ କନ୍ୟା ଥିବାର ଶୁଣି ତାଙ୍କୁ କୁଳଟା ବୋଲି ଘୃଣା କରି ପାରନ୍ତ ଏହି ଆଶଙ୍କାରେ ମେରି ବେଞ୍ଜାମିନଙ୍କ ନିକଟକୁ ଆଉ ଗଲେ ନାହିଁ ।

ଫ୍ରାନ୍ସରେ ସ୍ତ୍ରୀମାନଙ୍କର ମସ୍ତକ-କେଶ ବିକ୍ରି ହୁଏ । ଦରିଦ୍ର ରମଣୀମାନେ ପାଞ୍ଚଟାରୁ ଦଶ ଫ୍ରାଙ୍କ୍ ପର୍ଯ୍ୟନ୍ତ ପାଇଲେ ଏହି ଦୁର୍ଲ୍ଲଭ ମନୋହର ପଦାର୍ଥ ଅନିଚ୍ଛା ସତ୍ତ୍ୱେ ପରିତ୍ୟାଗ କରିଥାନ୍ତି । କେଶ ସ୍ତ୍ରୀର ଅତି ଆଦରର ବସ୍ତୁ । ଶିରଚ୍ଛେଦ ବା ଶିରୋମୁଣ୍ଡନ ଏ ଦୁଇ ମଧ୍ୟରୁ ଯେ କୌଣସି ଦଣ୍ଡର ବ୍ୟବସ୍ଥା ହେଲେ, ରମଣୀମାନେ ଶିରଚ୍ଛେଦକୁହିଁ ଶ୍ରେୟସ୍କର ମନେ କରିବା ସ୍ୱାଭାବିକ । କିନ୍ତୁ ଦାରିଦ୍ର୍ୟର ପ୍ରତାପ ପ୍ରବଳ— ସେଇ ପ୍ରତାପରେ ପ୍ରାଣ ଅପେକ୍ଷା ପ୍ରିୟତର ଏହି ପଦାର୍ଥକୁ ବି ପାଞ୍ଚ ଫ୍ରାଙ୍କ୍ ମୂଲ୍ୟରେ ବିକ୍ରୟ କରିବାକୁ ପଡେ ।

ମେରି ନିଜର କେଶ ବିକ୍ରି କରିବା ପାଇଁ ଗୋଟିଏ କେଶ-ବ୍ୟବସାୟୀର ଦୋକାନକୁ ଗଲେ । କେଶ ଖୋଲିବା ପାଇଁ ଦୋକାନୀ କହିଲା । ମେରି ତା ହାର ଆଦେଶ ପାଳନ କଲେ । ତାଙ୍କର ଅନନ୍ୟ ସାଧାରଣ ସୁଦୀର୍ଘ ସୁନ୍ଦର କେଶଗୁଚ୍ଛ ଏଇ ଶେଷ ଥର ତାଙ୍କର ପୃଷ୍ଠଦେଶ ଅଳଂକୃତ କଲା । ଦୋକାନଦାର କେଶ ମାପି କହିଲା ଯେ, ତାହାର ମୂଲ୍ୟ ଦଶ ଫ୍ରାଙ୍କ୍ ହୋଇ ପାରେ । ମେରି ସେହି ମୂଲ୍ୟ ଗ୍ରହଣ କରିବାକୁ ରାଜି ହେଲେ । କେଶ ବ୍ୟବସାୟୀ କଇଞ୍ଚି ଧରି ଅଗ୍ରସର ହେଲା । ଆହା ! ସେଇ ସମୟରେ ଫ୍ରାନ୍ସରେ ଏପରି କଣ କେହି ଧନୀ ମହାତ୍ମା ନଥିଲେ, ଯେ ଦଶଗୋଟି ଫ୍ରାଙ୍କ୍ ଦେଇ ଏହି ଦରିଦ୍ରା-ଦୁଃଖିନୀ ଫରାସୀ ଯୁବତୀର ଅତି ଯତ୍ନ ଓ ଆଦରର ସାମଗ୍ରୀ, ପ୍ରକୃତିର ଶ୍ରେଷ୍ଠ ଉପହାର, ମନୋହର କେଶଗୁଚ୍ଛ ରକ୍ଷା କରି ପାରିଥାନ୍ତେ ? ଥିଲେ ଅବଶ୍ୟ, କିନ୍ତୁ ଭଗବାନଙ୍କର ଲୀଳା ଯେ ବିଚିତ୍ର !

ଦୋକାନଦାର ମେରିଙ୍କ ହାତରେ ଦଶ ଗୋଟି ଫ୍ରାଙ୍କ୍ ଦେଇ ତାଙ୍କର କେଶଗୁଚ୍ଛ କାଟି ଦେଲା । ମେରି ସେହି ଧନରେ ଗୋଟିଏ ଗରମ ଜାମା କିଣି କୁସୀ ପାଇଁ ପଠାଇଲେ । ଦାରିଦ୍ର୍ୟର କଶାଘାତ ବାସ୍ତବିକ ଭୟଙ୍କର ଯାତନାପ୍ରଦ ।

*

# ସନ୍ତାନ-ସ୍ନେହ

ଏହି ଘଟଣାର କେତେକ ଦିନ ପରେ ମଣ୍ଟ ଫାର୍ମିଲୋର ସରାଇଁଓସ୍ୱେଲ-ଠାରୁ ମେରି ଖଣ୍ଡିଏ ପତ୍ର ପାଇଲେ । ସେ ଲେଖିଥିଲା—'କୁସୀର ଜ୍ୱର ହୋଇଅଛି, ଜ୍ୱର ଦିନୁ ଦିନ ବୃଦ୍ଧି ପାଉଛି । ତୁମେ ଅତି ଶୀଘ୍ର ଚିକିତ୍ସା ପାଇଁ କୋଡ଼ିଏ ଫ୍ରାଙ୍କ୍ ନପଠାଇଲେ ତାହାର ପ୍ରାଣ ରକ୍ଷା କରିବା ସୁକଠିନ ।' ଏହି ସମ୍ବାଦରେ ମେରି ଏକାବେଳକେ ପାଗଳିନୀ ପରି ହୋଇଗଲେ । କେଉଁଆଡ଼େ ଯିବେ, କଣ କରିବେ ! କୋଡ଼ିଏ ଫ୍ରାଙ୍କ୍ ପାଇବେ କିପରି ? ତେବେ କୁସୀ କଣ ଚିକିତ୍ସା ଅଭାବରେ ମରିଯିବ ! ତାଙ୍କ ମସ୍ତିଷ୍କରେ ଯେପରି ବିଦ୍ୟୁତ୍ ଖେଳିଗଲା—ହୃଦୟରେ ପ୍ରବଳ ଝଡ଼ ବହିଗଲା । ଉନ୍ମାଦିନୀ ପରି ରାଜପଥରେ ଯାଉଛନ୍ତି, ଏହି ସମୟରେ ତାଙ୍କର ଦୃଷ୍ଟି ଏକ ଦନ୍ତ-ବ୍ୟବସାୟୀର ଦୋକାନରେ ପତିତ ହେଲା । ସାଇନ୍ ବୋର୍ଡ଼ (Sign Board) ରେ ଲେଖାଥିଲା, 'ଜୀବନ୍ତ ମନୁଷ୍ୟର ଆଗ ଦାନ୍ତ ଦିଓଟିର ମୂଲ୍ୟ ଦଶଠାରୁ କୋଡ଼ିଏ ଫ୍ରାଙ୍କ୍ ପର୍ଯ୍ୟନ୍ତ ଦିଆଯାଇ-ଥାଏ ।' ବିଜ୍ଞାପନ ପଢ଼ିବା କ୍ଷଣି ଶୋକାକୁଳା ମେରିଙ୍କ ଦେହରେ ଯେପରି ଜୀବନ ଆସିଲା ।

ମେରି ଦୋକାନଦାର ପାଖରେ ଯାଇ କହିଲେ—'ଡେଣ୍ଟିଷ୍ଟ୍ ମହାଶୟ, ମୁଁ ମୋର ସମ୍ମୁଖ ଦନ୍ତ ଦିଓଟି ବିକ୍ରୟ କରିବାକୁ ଆସିଛି ।'

ଡେଣ୍ଟିଷ୍ଟ—କି ମୂଲ୍ୟରେ ବିକ୍ରି କରିବ ?

ମେରି—କୋଡ଼ିଏ ଫ୍ରାଙ୍କ୍ ଦେଇ ପାରିବେ ? ମୋର କୋଡ଼ିଏ ଫ୍ରାଙ୍କ୍ ଦରକାର—ମୋର ପୀଡ଼ିତା କନ୍ୟାର ଚିକିତ୍ସା ପାଇଁ ପଠାଇବାକୁ ହେବ ।

ମେରିଙ୍କ ସୁନ୍ଦର ମୁକ୍ତା-ବିନିନ୍ଦୀ ଦନ୍ତ ପାଇଁ ସେହି ମୂଲ୍ୟ ଦେବାକୁ ସ୍ୱୀକୃତ ହେଲା । ସେ କ୍ଲୋରୋଫର୍ମ୍ ପ୍ରୟୋଗରେ ମେରିଙ୍କର ଦନ୍ତ ବାହାର କରିନେଲା । ବହୁ ପରିମାଣରେ ରକ୍ତ ନିଃସରଣ ହେବାରୁ ମେରି ସାତିଶୟ ଦୁର୍ବଳ ହୋଇ ପଡ଼ିଲେ । ଡେଣ୍ଟିଷ୍ଟ ତାଙ୍କୁ ଈଷଦୁଷ୍ଣ ଦୁଗ୍ଧ

ପାନ କରାଇ ପୁଷ୍ଟିକାରକ ଔଷଧ ଦେଲା । ସେହିପରି ଏପରି ଅସହନୀୟ ଯନ୍ତ୍ରଣା ସହ୍ୟ କରି ଅବଳମ୍ବେ ପୀଡ଼ିତା ଜନନୀର ଚିକିତ୍ସା ପାଇଁ ମନ୍ଦ ଫାର୍ମେଲୋକୁ କୋଡ଼ିଏ ଫ୍ରାଙ୍କ୍ ପଠାଇ ଅପତ୍ୟ ସ୍ନେହର ପରାକାଷ୍ଠା ପ୍ରଦର୍ଶନ କଲେ ।

ସନ୍ତାନ-ସ୍ନେହ ସଂସାର ଚକ୍ରର କେନ୍ଦ୍ର ସ୍ୱରୂପ । ଏହି କେନ୍ଦ୍ରରୁ ଜଗତର ଯାବତୀୟ ଶୁଭାଶୁଭ କର୍ମର ଉଦ୍ଭବ ହୋଇଥାଏ । ଅପତ୍ୟ ସ୍ନେହର ବଶୀଭୂତ ହୋଇ ଲୋକେ ଦାନଯଜ୍ଞାଦି ସତ୍କର୍ମ ଅନୁଷ୍ଠାନ କରନ୍ତି, ପରଧନହରଣାଦି ଅବୈଧ କର୍ମରେ ବି ଲିପ୍ତ ହୁଅନ୍ତି । ପାପ ଓ ପୁଣ୍ୟ ଉଭୟର ଫଳରେ ସନ୍ତାନ-ଦେବତା ଆବିର୍ଭୂତ ହୋଇଥାନ୍ତି ।

*

## ସତ୍ସାହସ ଓ ପ୍ରତିଭା

୧୭୯୮ ଖ୍ରୀଷ୍ଟାବ୍ଦରେ ମହାବୀର ନେପୋଲିୟନ ଏଲ୍ ଓରିୟେଣ୍ଟ ନାମକ ଅର୍ଣ୍ଣବଯାନରେ ମିଶର ଦେଶ ପ୍ରତି ସମରାଭିଯାନ ଚଳାଇଥିଲେ । ତିନ ମାଇଲ ବ୍ୟାପୀ ନଦୀ ମୁଖରେ ରଣତରୀସମୂହ ରଖି ମିଶରରେ ପ୍ରବେଶ କରିବା କ୍ଷଣି, ଇଂରାଜ ନୌ-ସେନାଧ୍ୟକ୍ଷ ନେଲସନ୍ କୌଶଳ କ୍ରମେ ସେ ସବୁ ବିଧ୍ୱସ୍ତ କରି ଦେଇଥିଲେ । ସେହି ଜଳ ଯୁଦ୍ଧରେ ଅନ୍ୟତମ ଫରାସୀ କ୍ୟାପ୍ଟେନ୍ ଫର୍ଣ୍ଣୁ ଧୃତ ହୋଇ ଇଂଲଣ୍ଡକୁ ନୀତ ହେଲେ । ସେ ସେଠାରେ ଛ' ବର୍ଷକାଳ କାରାବାସ ଭୋଗ କରି ମୁକ୍ତି ପାଇଲେ । ପରେ ସେ ଜନୈକ ଧନାଢ୍ୟ ଇଂରେଜ ମହିଳାଙ୍କୁ ବିବାହ କରି ଇଂଲଣ୍ଡରେ ବାସ କରିବାକୁ ଲାଗିଲେ ।

ନେପୋଲିୟନ୍ ସେଣ୍ଟ୍ ହେଲେନାକୁ ପ୍ରେରିତ ହେବା ପରେ, ବୀର ଫର୍ଣ୍ଣୁଙ୍କ ହୃଦୟରେ ଗଭୀର ସ୍ୱଜାତିପ୍ରେମ ପୁଣି ଉଦ୍ଦୀପିତ ହୋଇ ଉଠିଲା । ପତିତ ଫରାସୀ ଜାତିର ଶୋଚନୀୟ ଅବସ୍ଥା ଦେଖି

ସଙ୍କଳ୍ପ କଲେ, 'ଜୀବନର ପ୍ରଥମ ଭାଗ ଯେପରି ସ୍ୱଜାତି ପାଇଁ ଉତ୍ସର୍ଗ କରିଥିଲି, ଜୀବନର ଶେଷଭାଗ ବି ସେପରି ତାହା ପାଇଁ ବିନିଯୁକ୍ତ କରିବି । ମୁଁ ସେଣ୍ଟ୍ ହେଲେନାରୁ ନେପୋଲିୟନଙ୍କୁ ଆଣି ପତିତ ଫରାସୀ ଜାତିକୁ ପୁନର୍ବାର ଉଠାଇବି ।'

ଫର୍ଣ୍ଣ ତାଙ୍କର ଏହି ସଙ୍କଳ୍ପ କୌଣସି ଫରାସୀ ନିକଟରେ ବ୍ୟକ୍ତ କରିବାକୁ ସାହସୀ ହେଲେ ନାହିଁ । ସେ ବହୁକାଳ ଫ୍ରାନ୍ସ ତ୍ୟାଗ କରିଥିଲେ; ସୁତରାଂ ସେଠାରେ ଶତ୍ରୁ କିଏ, ମିତ୍ର ବା କିଏ ତାହା ବୁଝିବାର ସମ୍ଭାବନା ତାଙ୍କର ସାମାନ୍ୟ ଥିଲା । ସେ ଅଚିରେ ନିର୍ବାସିତ ନେପୋଲିୟନଙ୍କର ମହିଷୀ, ଅଷ୍ଟ୍ରିୟା ରାଜକନ୍ୟା ମେରୀ ଲୁଇସାଙ୍କ ସହିତ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ଭିଏନା ଯାତ୍ରା କଲେ । ଓ୍ୱାଟର୍ଲୁ ଯୁଦ୍ଧ ପରେ ଲୁଇସା ବି ଏକ ପ୍ରକାର ବନ୍ଦୀଭାବରେ ବାସ କରୁଥିଲେ ତାଙ୍କର ପିତୃଭବନରେ । କୌଣସି ଫରାସୀ ଭଦ୍ରଲୋକ ସହିତ ତାଙ୍କର ସାକ୍ଷାତ୍ କରିବାର ଅଧିକାର ନଥିଲା । ଫର୍ଣ୍ଣ ଇଂରେଜୀ ବୋଲି ପରିଚୟ ଦେଇ ଲୁଇସାଙ୍କ ସହିତ ସାକ୍ଷାତ୍ କରିବାର ଅନୁଜ୍ଞା ପ୍ରାପ୍ତ ହେଲେ ।

ମହାମତି ଫର୍ଣ୍ଣ ଲୁଇସାଙ୍କୁ ଯଥାବିଧି ନମସ୍କାର କରି କହିଲେ, 'ମା, ମୁଁ ଇଂରେଜ ନୁହେଁ—ମୁଁ ଫରାସୀ, ବୋନାପାର୍ଟିଷ୍ଟ । ମୁଁ ସମ୍ରାଟଙ୍କୁ ଆଣିବାକୁ ଯିବି । ଫ୍ରାନ୍ସରେ ଆପଣଙ୍କର ଏପରି ବିଶ୍ୱସ୍ତ ଓ ଅତିସାହସୀ ବନ୍ଧୁ କିଏ ଅଛନ୍ତି, ଯେ ମୋ ସଙ୍ଗେ ସେଣ୍ଟ୍ ହେଲେନା ଯାତ୍ରା କରିବାକୁ ପ୍ରସ୍ତୁତ ହେବେ ? ଏହା ବୁଝିବା ପାଇଁ ଆପଣଙ୍କ ନିକଟକୁ ଆସିଛି ।'

ସାମ୍ରାଜ୍ଞୀ ବିସ୍ମିତ ହୋଇଗଲେ । କହିଲେ, 'ଆଗେ ଆପଣ ନିଜର ପରିଚୟ ଦିଅନ୍ତୁ, ପରେ ସବୁ କହିବି ।' ଫର୍ଣ୍ଣ ଆତ୍ମ ପରିଚୟ ପ୍ରଦାନ କରି କହିଲେ, ମୁଁ ଗୋଟାଏ ପ୍ରକାଣ୍ଡ ଜାହାଜର ଅଧ୍ୟକ୍ଷ । ମୁଁ ବାଣିଜ୍ୟ ସମ୍ପର୍କରେ ପ୍ରତି ବର୍ଷ ଆଫ୍ରିକାର ଗିନି-ଉପକୂଳ ପର୍ଯ୍ୟନ୍ତ ଯାଏ । ସେଠାରୁ ସେଣ୍ଟ୍ ହେଲେନା ଅଧିକ ଦୂର ନୁହେଁ, ବାରଶତ ମାଇଲ ମଧ୍ୟରେ । କେତେ ଜଣ ସାହସୀ, ବିଶ୍ୱସ୍ତ ଫରାସୀଙ୍କର ସାହାଯ୍ୟ ପାଇଲେ, ମୁଁ ଆଶା କରେଁ, ସହଜରେ ସମ୍ରାଟଙ୍କୁ ଫ୍ରାନ୍ସ-ଉପକୂଳରେ ପହଞ୍ଚାଇ ପାରିବି ।'

ଏହି କଥା ଶୁଣି ମେରିୟା ଲୁଇସା ଆଶା-ଦୃପ୍ତ ପ୍ରାଣରେ ପ୍ରୀତି-ଗଦ୍‌ଗଦ କଣ୍ଠରେ କହିଲେ, 'କ୍ୟାପ୍‌ଟେନ୍ ମହାଶୟ, ଆପଣଙ୍କ ସାଧୁ ପ୍ରସ୍ତାବ ନିମନ୍ତେ ମୁଁ ଆପଣଙ୍କୁ ଶତସହସ୍ର ଧନ୍ୟବାଦ ଦେଉଅଛି । ଫ୍ରାନ୍‌ସରେ ଆଜ ସୁଦ୍ଧା ଆମର ଏପରି ଅନେକ ବିଶ୍ୱସ୍ତ ବନ୍ଧୁ ଅଛନ୍ତି, ଯେଉଁମାନେ ପ୍ରସ୍ତାବିତ କାର୍ଯ୍ୟରେ ଆପଣଙ୍କୁ ସହାୟତା କରିପାରିବେ—ସେମାନଙ୍କ ମଧ୍ୟରେ କର୍ଣ୍ଣେଲ୍ ଜିରାର୍ଡ଼ଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ତେବେ ଜିରାର୍ଡ଼ ଆଜକାଲି କେଉଁଠାରେ କିପରି ଭାବରେ ଅଛନ୍ତି, ତାହା ମୁଁ ଜାଣିନାହିଁ । ଓୟାଟାର୍ଲୁ'ରୁ ସମ୍ରାଟଙ୍କର ପାରି-ପ୍ରତ୍ୟାବର୍ତ୍ତନ ସମୟରେ ସାହସୀ ଜିରାର୍ଡ଼ ଯେପରି ଯୋଗ୍ୟତା ଓ ବନ୍ଧୁତାର ପରିଚୟ ଦେଇଥିଲେ, ତାହା ମୁଁ ଜୀବନରେ କେବେ ଭୁଲି ପାରିବି ନାହିଁ । ସେ ସମ୍ରାଟଙ୍କୁ ପ୍ରାଣାପେକ୍ଷା ବି ପ୍ରିୟତର ଜ୍ଞାନ କରନ୍ତି । ସମ୍ରାଟଙ୍କର ପରିଚାଳିତ ଫରାସୀ ସେନାର ବିକ୍ରମରେ ଜଗତ୍ ସ୍ତମ୍ଭିତ ହୋଇଥିଲା ସତ; କିନ୍ତୁ ଜିରାର୍ଡ଼ଙ୍କର ସାହସ ଓ ପ୍ରତିଭା ଦିନେ ଫରାସୀ ସେନାକୁ ବି ସ୍ତମ୍ଭିତ କରିଥିଲା । ଉପସ୍ଥିତ ବିପଦ୍‌ସଙ୍କୁଳ ବିଷୟରେ ଆପଣ ତାଙ୍କର ସାହାଯ୍ୟ ଅବଲମ୍ବନ କରନ୍ତୁ ।'

ଫର୍ଣ୍ଣ ଇତିପୂର୍ବେ କେବେ ଜିରାର୍ଡ଼ଙ୍କର ନାମ ଶୁଣି ନଥିଲେ, ବିଦେଶରେ ରହି କେତେକ ଜଣ ଜେନାରେଲଙ୍କର ନାମ ମାତ୍ର ଶୁଣିଥିଲେ । ସେ ବିସ୍ମିତ ଭାବରେ ପଚାରିଲେ, "ମାତଃ, ଯେଉଁ ସକଳ ଲବ୍‌ଧପ୍ରତିଷ୍ଠ ଜେନାରେଲଙ୍କର ବାହୁବଳରେ ସମ୍ରାଟ୍ ସମଗ୍ର ଇଉରୋପ ଜୟ କରିଥିଲେ, ଆପଣ ସେମାନଙ୍କର ନାମ କହିଲେ ନାହିଁ କାହିଁକି ?"

ସାମ୍ରାଜ୍ଞୀ କହିଲେ,—'କ୍ୟାପ୍‌ଟେନ୍, ଆପଣ ତ ଯୁଦ୍ଧ କରିବାକୁ ଯାଉ ନାହାନ୍ତି—ଜେନାରେଲମାନେ କଣ କରିବେ ? ଆପଣ ଜିରାର୍ଡ଼ଙ୍କର ସାହସ ଓ ପ୍ରତିଭା ବିଷୟରେ କିଛି ଜାଣି ନାହାନ୍ତି, ଏଣୁ ଏପରି କହୁଛନ୍ତି । ଜିରାର୍ଡ଼ଙ୍କର ସାହସିକତା ସମ୍ବନ୍ଧେ କହୁଛି, ମନୋଯୋଗ ପୂର୍ବକ ଶ୍ରବଣ କରନ୍ତୁ । ଶୁଣିଲେ ବୁଝି ପାରିବେ, ପ୍ରସ୍ତାବିତ କାର୍ଯ୍ୟରେ ଜିରାର୍ଡ଼ଙ୍କର କେତେଦୂର ସ୍ପୃହଣୀୟ ହୋଇପାରେ ।

'୧୮୧୦ ଖ୍ରୀଷ୍ଟାବ୍ଦରେ ସମ୍ରାଟ୍ ସ୍ପେନ୍ ଓ ପର୍ତ୍ତୁଗାଲ ଜୟ କଲେ । ଟରେସ୍ ନୋଭାସ୍ ଓ ସିଉ ଡ ଓସ ନାମକ ଦୁଇ ସ୍ଥାନରେ ଫରାସୀ ଶିବିର ସନ୍ନିବେଶିତ ହେଲା । ଉଭୟ ମଧ୍ୟରେ ବ୍ୟବଧାନ ପାଞ୍ଚଶ ମାଇଲ । ପ୍ରଥମୋକ୍ତ ସ୍ଥାନରେ ସେନାପତି ମେଶିନା ତିରିଶି ସହସ୍ର ଏବଂ ଶେଷୋକ୍ତ ସ୍ଥାନରେ ସେନାପତି କ୍ଲଜେଲ୍ ଚତୁର୍ଦ୍ଦଶ ସହସ୍ର ସୈନ୍ୟ ନେଇ ଅବସ୍ଥିତ କରିବାକୁ ଲାଗିଲେ । ସର୍ବତ୍ର ଫ୍ରାନ୍ସର ବିଜୟ-ପତାକା ଉଡ୍ଡୀନ ହେଲା ଏବଂ ଅଧିବାସିଗଣ କ୍ରମେ ଆମମାନଙ୍କର ବଶୀଭୂତ ହେଲେ । ତେବେ ଦୁର୍ଦ୍ଦାନ୍ତ ସ୍ପେନବାସିଗଣ ବ୍ରିଟିଶ୍ ପ୍ରଶ୍ରୟ ପାଇ ପୁନରୁତ୍ତେଜିତ ହୋଇ ଉଠିଲେ ।

'ସମଗ୍ର ଅନ୍ତରୀପ ବିଦ୍ରୋହ-ବହ୍ନିରେ ଜଳି ଉଠିଲା । ଦଳଭ୍ରଷ୍ଟ ଫରାସୀଗଣ ଦେଶ ମଧ୍ୟରେ ଯଥା ତଥା ନିହତ ହେବାକୁ ଲାଗିଲେ । ସ୍ପେନ୍‌ବାସିମାନଙ୍କ ନୃଶଂସତାର ସୀମା ରହିଲା ନାହିଁ । ସେମାନଙ୍କର ଅଧ୍ୟକ୍ଷ ମ୍ୟାନୁଏଲ୍ ନାନା ସ୍ଥାନରେ ଏପରି କୌଶଳରେ ସୈନ୍ୟ ସମାବେଶ କଲେ ଯେ, ଫରାସୀଗଣଙ୍କର ଶିବିରରୁ ଶିବିରାନ୍ତରକୁ ସମ୍ବାଦାଦି ପ୍ରେରଣ ବି ଏକାବେଳକେ ଅସମ୍ଭବ ହୋଇ ଉଠିଲା । ସୈନ୍ୟବ୍ୟୂହ ଛାଡ଼ି କୋଡ଼ିଏ ଗଜ ଭୂମି ଅତିକ୍ରମ ନ କରୁଣୁ ଫରାସୀମାନେ ନିଦାରୁଣ ସ୍ପ୍ୟାନିସ୍ ଗୁଳିରେ ବିଦ୍ଧ ହେବାକୁ ଲାଗିଲେ । ଅନେକ ମୂଲ୍ୟବାନ୍ ଜୀବନ ବିନଷ୍ଟ ହେଲା । ଖାଦ୍ୟାଦିର ଏକାନ୍ତ ଅସଦ୍ଭାବ ହେଲା । ଖାଦ୍ୟାଭାବରେ ଆମର ସୁନ୍ଦର ଅଶ୍ୱସେନା ଧ୍ୱଂସ ମୁଖରେ ପତିତ ହେଲେ । ଦଳବଦ୍ଧ ହୋଇ ସ୍ୱଦେଶ-ପ୍ରତ୍ୟାବର୍ତ୍ତନ ବ୍ୟତୀତ ଫରାସୀମାନଙ୍କର ଉପାୟାନ୍ତର ରହିଲା ନାହିଁ । ତାହା ବି ନିତାନ୍ତ ସହଜ ନୁହେ । ମେଶିନା ପ୍ରତ୍ୟାବର୍ତ୍ତନ କଲେ କ୍ଲଜେଲଙ୍କର ଉପାୟ କଣ ? ଯଦି ଉଭୟ ସେନାପତି ପ୍ରତ୍ୟାବର୍ତ୍ତନ ମୂବକ ନିର୍ଦ୍ଦିଷ୍ଟ ସମୟ ଓ ସ୍ଥାନରେ ପରସ୍ପର ମିଳିତ ହୋଇ ପାରନ୍ତି, ତାହା ହେଲେ ରକ୍ଷା—ନଚେତ୍ ଜଣକର ପ୍ରତ୍ୟାବର୍ତ୍ତନରେ ଅନ୍ୟ ଜଣକର ବିନାଶ ଅପରିହାର୍ଯ୍ୟ । କି ଉପାୟରେ ଦୁହେଁ ମିଳିତ ହୋଇ ପାରିବେ ? ସେତେବେଳେ ଶିବିରଠାରୁ କେତେକ ଗଜ ମାତ୍ର ଗମନ କଲେ କୌଣସି ଫରାସୀର ଆଉ ଫେରି ଆସିବାର ଉପାୟ ନାହିଁ, ସେପରି

ଅବସ୍ଥାରେ ମେଣିନା ବା କପରି ପଞ୍ଚାଶ ମାଇଲ ଦୂରକୁ ସମ୍ବାଦ ପଠାଇବେ ? ମେଣିନା ଘୋର ବିପଦଗ୍ରସ୍ତ ହୋଇ ପଡ଼ିଲେ ।

ମେଣିନାଙ୍କର ତିନି ଜଣ ଅତି ବିଶ୍ୱସ୍ତ ଅନୁଚର (ଏଡଙ୍କ) ଥିଲେ,—କର୍ଟେ, ଡ଼ିଉଟ୍ପ୍ଲେସିସ୍ ଓ ଜିରାର୍ଡ । ପ୍ରଥମ ଦିନ ମେଣିନା କର୍ଟେଙ୍କୁ କେଉଁଠାକୁ ପଠାଇଲେ, କର୍ଟେ ଅଶ୍ୱପୃଷ୍ଠରେ ଶିବିର ବାହାରକୁ ଗଲେ, କିନ୍ତୁ ଆଉ ବାହାରୁ ଫେରି ଆସିଲେ ନାହିଁ । ଦ୍ୱିତୀୟ ଦିନ ଡ଼ିଉପ୍ଲେସିସ୍ ପ୍ରେରିତ ହେଲେ—ତାଙ୍କର ବି ସେଇ ଗତି ହେଲା । ତୃତୀୟ ଦିନ ମେଣିନା ଅଶ୍ରୁଭାରାକ୍ରାନ୍ତ ନୟନରେ ଜିରାର୍ଡଙ୍କର ହାତ ଧରି କହିଲେ, 'ଜିରାର୍ଡ, ମୁଁ ତୁମକୁ ମରିବାକୁ ପଠାଇବି, ଯିବ ? ଏହା କହି ସେ ତାଙ୍କୁ କଟିକି ପାଖକୁ ନେଇ ମୁହାଭିମୁଖରେ ନିରୀକ୍ଷଣ କରିବାକୁ ଲାଗିଲେ । ସେଠାରୁ ଦେଖା ଯାଉଥିଲା କେବଳ ଗୋଟାଏ ପର୍ବତଚୂଡ଼ା । ସେହି ସ୍ଥାନର ନାମ 'ସିବ୍ରା ଡ଼ି ମୋନ୍ଟେରାଡାଲ' । ମେଣିନା ନିଜର ଦୂରବୀକ୍ଷଣ ଯନ୍ତ୍ରଟି ଜିରାର୍ଡଙ୍କ ହାତରେ ଦେଇ ଉକ୍ତ ପର୍ବତର ଉପରିଭାଗ ପ୍ରତି ଦୃଷ୍ଟିପାତ କରିବାକୁ ଆଦେଶ ଦେଲେ । ଜିରାର୍ଡ଼ ନିରୀକ୍ଷଣ କରି କହିଲେ ଯେ, ସେ ପର୍ବତ ଶୃଙ୍ଗର ଉପରି ଭାଗରେ ଗୋଟାଏ କାଷ୍ଠ ସ୍ତୂପ ଦେଖୁଛନ୍ତି ।

ମେଣିନା କହିଲେ, 'ଆଜି ନିଶୀଥରେ ତୁମକୁ ଏ କାଷ୍ଠ-ସ୍ତୂପରେ ଅଗ୍ନିସଂଯୋଗ କରିବାକୁ ହେବ । କାରଣ ଆମମାନଙ୍କର ପ୍ରତ୍ୟାବର୍ତ୍ତନ କରିବାର ସମୟ ଆସିଛି । ଏ ସ୍ଥାନର ପଞ୍ଚାଶ ମାଇଲ ଦକ୍ଷିଣରେ, ଟେଗସ୍ ନଦୀର ଅପର ପାରରେ ସେନାପତି କ୍ଲଜେଲ ତିରିଶ ହଜାର ସୈନ୍ୟ ସଙ୍ଗେ ଅବସ୍ଥାନ କରୁଛନ୍ତି । ତାହାଙ୍କୁ ସମ୍ବାଦ ଦେବା ଆବଶ୍ୟକ । ସେହି କାଷ୍ଠ ସ୍ତୂପର ମର୍ମ ସେ ଜାଣନ୍ତି । ଏ ସମସ୍ତ ସ୍ଥାନ ଆମ ଅଧିକାରରେ ଥିବା ବେଳେ, ମୁଁ ତାଙ୍କ ସହିତ ଏକମତ ହୋଇ ଏପରି ବ୍ୟବସ୍ଥା କରି-ଥିଲି—ଯଦି କେବେ ଆମମାନଙ୍କୁ ହଠାତ୍ ପ୍ରତ୍ୟାବର୍ତ୍ତନ କରିବାକୁ ହୁଏ ଏବଂ ଲୋକଦ୍ୱାରା ସମ୍ବାଦ ପ୍ରେରଣ ଅସମ୍ଭବ ହୋଇ ଉଠେ, ତାହା ହେଲେ ନିଶୀଥ ସମୟରେ ଏଇ କାଷ୍ଠରାଶି ଜଳାଇ ଦିଆଯିବ । କ୍ଲଜେଲ ଥିବା ସ୍ଥାନରେ ସିବ୍ରା ଡି ଓସା ନାମକ ପର୍ବତ ଶିଖରରେ ବି ଏପରି ଅଗ୍ନି-

ପ୍ରଜ୍ୱଳନର ବ୍ୟବସ୍ଥା ହୋଇଅଛି । ଆଜି ନିଶୀଥରେ ତୁମେ ଏହି ସ୍ତୂପରେ ଅଗ୍ନି ସଂଯୋଗ କରିବାକ୍ଷଣି, ଯଦି ପ୍ରତ୍ୟୁତ୍ତରରେ କ୍ଲଜେଲ୍ ସେହି ସ୍ତୂପ ପ୍ରଜ୍ୱଳିତ କରନ୍ତି, ତାହା ହେଲେ ମଙ୍ଗଳ—ନଚେତ୍ ବିପତ୍ପାତର ଆଉ ଅଧିକ ବିଳମ୍ବ ନାହିଁ ।'

ଜିରାର୍ଡ କାର୍ଯ୍ୟର ଗୁରୁତ୍ୱ ବୁଝି ପାରିଲେ, ତାଙ୍କ ମୁଖ ପ୍ରଫୁଲ୍ଲ ହୋଇ ଉଠିଲା । ମେଶିନା ପୁଣି କହିଲେ,--'ଏ ସ୍ଥାନରୁ ଏ ପର୍ବତଚୂଡ଼ାର ଦୂରତା ଦଶ ମାଇଲରୁ କମ୍ ନୁହେ । ପ୍ରଥମ ଦୁଇମାଇଲ ଫରାସୀ ଶିବିର ଅଛି, ଏଣୁ କୌଣସି ଭୟ ନାହିଁ । କିନ୍ତୁ ଅବଶିଷ୍ଟ ଆଠ ମାଇଲ ପଥ ଘୋର ବିପଦ୍ସଙ୍କୁଳ । ସେହି ପଥ ଅତିକ୍ରମ କରି ପାରିଲେ ସୁଦ୍ଧା, ତୁମେ ଯେ ସିରାଡ଼ ମେରାଡ଼ାଲର ଦୁର୍ଦ୍ଧର୍ଷ ମ୍ୟାନୁୟେଲଙ୍କର ଦୃଷ୍ଟି ଏଡ଼ାଇ ପାରିବ, ଏପରି ଆଶା କରି ନାହିଁ । ତଥାପି ତୁମକୁ ପଠାଇବା ଭିନ୍ନ ମୋତେ ଅନ୍ୟ ଉପାୟ ଦିଶୁ ନାହିଁ । ତୁମେ ଆଜି ରାତି ଏ କାଷ୍ଠରାଶି ଜାଳି ପାରିଲେ, ଫ୍ରାନ୍ସର ଢେର ଉପକାର ହେବ ।' ଏହା କହି ମେଶିନା ସଜଳ ନୟନରେ ଜିରାର୍ଡ଼ଙ୍କର କରମର୍ଦ୍ଦନ କଲେ ।

ଜିରାର୍ଡ଼ ଯାତ୍ରା କଲେ । ସେ ଇଉରୋପର ଅଦ୍ୱିତୀୟ ଅଶ୍ୱାରୋହୀ ହେଲେହେଁ ଅଶ୍ୱପୃଷ୍ଠରେ ଗଲେ ନାହିଁ । ଏକାକୀ ପଦବ୍ରଜରେ ଅଗ୍ରସର ହେଲେ । ଦୁଇ ମାଇଲ ମାର୍ଗ ଅତିକ୍ରମ କରି ଦେଖିଲେ ଚତୁର୍ଦ୍ଦିଗରେ ସ୍ପାନିଷ୍ ପ୍ରହରୀଗଣ ଏପରି ଘନ ସନ୍ନିବିଷ୍ଟ, ସତର୍କ ଓ ସଶସ୍ତ୍ର ହୋଇ ଠିଆ ହୋଇଛନ୍ତି ଯେ, ମନୁଷ୍ୟର କଥା ଦୂରେ ଥାଉ, ସେ ପ୍ରାନ୍ତରରେ ଗୋଟାଏ ମୂଷିକ ବି ଅଦୃଶ୍ୟ ଭାବରେ ସଞ୍ଚରଣ କରିବାର ସାଧ ନାହିଁ । ଜିରାର୍ଡ଼ ବୁଝିପାରିଲେ, ସମ୍ମୁଖବର୍ତ୍ତୀ ଯେଉଁ ରାଜପଥ ସରଳ ରେଖାକ୍ରମେ ଗନ୍ତବ୍ୟ ପର୍ବତ ଆଡ଼କୁ ଯାଇଛି, ଅଶ୍ୱାରୋହୀ କର୍ଟେ ଓ ଡିଉକ୍ଲେସିସ୍ ସମ୍ଭବତଃ ସେହି ପଥରେ ଯାଇଥିଲେ । ଜିରାର୍ଡ଼ ସେହି ପଥ ଯଥାସମ୍ଭବ ପରିହାର କରି ଦ୍ରାକ୍ଷାବନ ଅନ୍ତରାଳରେ କେତେକ ଦୂର ଗମନ କଲେ । ଆଗରେ ଗୋଟାଏ ଦୋକାନ । ସେଠାରେ କେତେକ ଜଣ ସ୍ପାନିୟାର୍ଡ଼ ଠିଆ ହୋଇଥିଲେ । ଆପାତତଃ ସେମାନଙ୍କର ଦୃଷ୍ଟି ଏଡ଼ାଇବା ଅତି-

ପ୍ରାୟରେ ଜବର୍ଡ଼ ସମୀପବର୍ତ୍ତୀ ଗର୍ତ୍ତରେ ପ୍ରବେଶ କଲେ ଏବଂ ସେଠାରୁ ଲୁଚି ଦେଖିଲେ ଯେ, ଦୋକାନ ନିକଟରେ ଦୁଇଗୋଟି ବଳଦ ଗାଡ଼ି ଠିଆ ହୋଇଛି, ତହିଁରେ ଖାଲି ମଦ-ପିପା ଲଦା ହେଉଛି ଏବଂ ସେ ଯେଉଁ ବାଗରେ ଯିବାର କଥା ସେହି ବାଗକୁ ହିଁ ମୁଖ କରି ବଳଦମାନେ ଗାଡ଼ିରେ ଯୋଜିତ ହୋଇଛନ୍ତି । ପିପାଗୁଡ଼ିକର ଏକ ମୁଖ ଆବୃତ, ଅନ୍ୟ ମୁଖ ଖୋଲା ଥିଲା । କୌଣସି ପ୍ରକାରେ ସେଥିରୁ ଗୋଟାଏ ପିପା ଭିତରେ ପଶି ପାରିଲେ, ନିର୍ବିଘ୍ନରେ କିଛି ଦୂର ଅଗ୍ରସର ହେବାର ସୁବିଧା ହେବ— ଏହା ଭାବି ଜବର୍ଡ଼ ଗାଡ଼ି ପ୍ରତି ସତୃଷ୍ଣ ଦୃଷ୍ଟିପାତ କଲେ । ଦେଖୁଁ ଦେଖୁଁ ଗାଡ଼ିରେ ଲଦିବା କାମ ଶେଷ ହେଲା, ଗାଡ଼ିୱାଲାମାନେ ଦୋକାନ ଭିତରକୁ ଜଳ ଆଣି ଗଲେ । ଏହି ସୁଯୋଗ ପାଇ ଜବର୍ଡ଼ ଦ୍ରୁତ ଲଘୁ ପଦରେ ଯାଇ ଗୋଟିଏ ପିପା ମଧ୍ୟରେ ପ୍ରବେଶ କଲେ । ଶକଟ ଚାଳକ-ମାନେ ତାଙ୍କର ଏ କାର୍ଯ୍ୟ ଦେଖି ପାରିଲେ ନାହିଁ । ସେମାନେ ଆସି ଅତର୍କିତ ଭାବରେ ଗାଡ଼ି ଛାଡ଼ି ଦେଲେ । ଜବର୍ଡ଼ ପିପା ଭିତରେ ଅପେକ୍ଷାକୃତ ନିରାପଦ ଓ ସ୍ୱଚ୍ଛନ୍ଦ ବୋଧ କରିବାକୁ ଲାଗିଲେ ।

ଏହି ଭାବରେ ତିନି ଚାରି ମାଇଲ ପଥ ଅତିକ୍ରମ ହେଲା । ଜିବର୍ଡ଼ ପିପା ଭିତରୁ ଅଦୂରରେ ଶତ୍ରୁମାନଙ୍କର ଗୋଟାଏ ଆଡ୍‌ଡା ଦେଖି ପାରିଲେ । ସେଠାରେ କେତେକ ଜଣ ଅସ୍ତ୍ରଧାରୀ ଲୋକଙ୍କୁ ଦେଖି ସେ କମ୍ପିତ ଭୀତ ହେଲେ । ସନ୍ଧ୍ୟା ହେବାକୁ ଆଉ ଦୁଇ ତିନି ଦଣ୍ଡ ମାତ୍ର ବାକି ଅଛି; ଏହି ସମୟରେ ଗାଡ଼ି ଥାନାରେ ଉପସ୍ଥିତ ହେଲା । ସେଠାରେ ଶକଟ ଚାଳକମାନେ ଶକଟରୁ ଓହ୍ଲାଇ ପରସ୍ପର ହସି ହସି କଣ କଥୋପକଥନ କରିବାକୁ ଲାଗିଲେ । ଜବର୍ଡ଼ଙ୍କର ଆଉ ପଳାୟନର ଉପାୟ ନାହିଁ । ଶକଟ ଚାଳକମାନଙ୍କର ଇଙ୍ଗିତରେ ଥାନାର ଲୋକେ ଧାଇଁ ଆସି ଗାଡ଼ି ଚତୁର୍ଦ୍ଦିଗରେ ଠିଆ ହେଲେ । ଜବର୍ଡ଼ ଅଦୃଷ୍ଟ ଉପରେ ନିର୍ଭର କରି ନିଶ୍ଚେଷ୍ଟ ଭାବରେ ପିପା ମଧ୍ୟରେ ବସି ରହିଲେ । ପ୍ରହରୀମାନେ କହିଲେ, 'ମହାଶୟ, ଦୟାକରି ବାହାରକୁ ଆସିବେ କି ?'

ଜବର୍ଡ଼ ଧୀରେ ଧୀରେ ପିପା ଭିତରୁ ବାହାରିଲେ । ପ୍ରହରୀଦଳ ତାଙ୍କୁ ଜୋରରେ ଧରି ଜିଲାଧିପତିଙ୍କ ସମ୍ମୁଖକୁ ନେଲେ । ଜବର୍ଡ଼ ଅବାକ୍ ।

ସର୍ଦ୍ଦାର ତାଙ୍କୁ ପଚାରିଲେ, ଫରାସୀ ଭଦ୍ରଲୋକ ! କପରି ମୃତ୍ୟୁ ଆପଣ ପସନ୍ଦ କରିବେ ?' ଜବାର୍ଡ୍ ଭୀତ ବା ଅପ୍ରତିଭ ହେବାର ପାତ୍ର ନୁହନ୍ତି । ପ୍ରତ୍ୟୁତ୍ତରରେ ସେ ମଧ୍ୟ ପ୍ରଶ୍ନ କଲେ,—'ଆପଣମାନଙ୍କ ଦଳବଳରେ କେତେ ପ୍ରକାର ମୃତ୍ୟୁ ନିର୍ଦ୍ଦିଷ୍ଟ ଅଛି ?'

ସର୍ଦ୍ଦାର—ନିରୀହ ଫରାସୀମାନଙ୍କୁ ଆମେମାନେ ଗୁଳି କରି ମାରୁଁ । ଗୁପ୍ତଚରମାନଙ୍କୁ କରତରେ ଚିରୁଁ ଅଥବା ଫାସ-ବନ୍ଧ କରୁଁ । ଯେଉଁମାନେ କଦାଚାରୀ, ସେମାନଙ୍କ ମୁଣ୍ଡ ଉପରେ ପ୍ରକାଣ୍ଡ ସମତଳ ପାଷାଣ-ଖଣ୍ଡ ନିକ୍ଷେପ କରି ଅପୂର୍ବ ଫରାସୀ-ପିଷ୍ଟକ ପ୍ରସ୍ତୁତ କରୁଁ । ଆପଣ କି ଭାବରେ ଆସିଛନ୍ତି, ସତ କହନ୍ତୁ—ତଦନୁସାରେ ଦଣ୍ଡ ଗ୍ରହଣ କରିବେ ।'

ଏପରି କଥାବାର୍ତ୍ତା ଚାଲିଥିବା ବେଳେ ପ୍ରହରୀମାନେ ଜବାର୍ଡ୍ଙ୍କ ପକେଟ୍ରୁ ପିସ୍ତଲ, ଛୁରୀ, ନିଆଁ ଜାଳିବାର ସରଞ୍ଜାମ ଇତ୍ୟାଦି ବାହାର କରି ନେଲେ । ପରେ ତାଙ୍କୁ ବଧ୍ୟ-ଭୂମିକୁ ଟାଣି ନେବାକୁ ଅଗ୍ରସର ହେଲେ । ପ୍ରକୃତ ସାହସୀ ବ୍ୟକ୍ତି ଶ୍ମଶାନରେ ବି ହତାଶ ହୁଏ ନାହିଁ । ଯେ ନିଃସ୍ୱାର୍ଥ-ଭାବରେ ସ୍ୱଜାତିର ଉପକାର ସାଧନରେ ଅଗ୍ରସର ହୁଏ, ସେ ବିପଦ ବେଳେ କେବଳ ଈଶ୍ୱରଙ୍କର ରକ୍ଷଣଶୀଳ ହସ୍ତ ଦର୍ଶନ କରିଥାଏ । ଜବାର୍ଡ୍ ବଧଭୂମିର ସ୍ୱାଭାବିକ ଶୋଭା ସନ୍ଦର୍ଶନ କରିବାକୁ ଲାଗିଲେ । ସେହି ଉଚ୍ଚସ୍ଥାନରୁ ଗୋଟାଏ ରମଣୀୟ ଭୂମି ସମାନ ଗଡ଼ନ୍ତି ଭାବରେ ଦୁଇ ତିନି ମାଇଲ ପର୍ଯ୍ୟନ୍ତ ଯାଇ ଏକାବେଳକେ 'ସିଗ୍ର ଡ ମେରୋଡ଼ାଲ'ର ପାଦଦେଶରେ ଫଳପ୍ରଦ ହୋଇଅଛି । ଜବାର୍ଡ୍ ସେହି ନବଦୂର୍ବାଦଳ-ସମାଚ୍ଛାଦିତ ଢ଼ାଲୁ ପ୍ରାନ୍ତରଟି ଦେଖି ମୁଗ୍ଧ ହୋଇଗଲେ ।

ଏହି ସମୟରେ ପୂର୍ବୋକ୍ତ ଶକଟ ଚାଳକମାନେ ମଦପିପାଗୁଡିକ ଆଣି ସେଠାରେ ସଜାଇ ରଖିଥିଲେ । ପ୍ରହରୀମାନେ ଜବାର୍ଡ୍ଙ୍କୁ ବଧଭୂମି ଆଡ଼କୁ ଟାଣିବାକ୍ଷଣି ସେ କହିଲେ, 'ମୁଁ ଯେଉଁ ପିପାଟିରେ ଆସିଥିଲି, ତହିଁରେ କିଛି ଅର୍ଥ ରଖି ଆସିଛି, ଆପଣମାନେ ତାହା ଆଣିବାକୁ ଅନୁମତି ଦେବେ କି ?' ପ୍ରହରୀମାନେ ଧନ ଲୋଭରେ କିଛିକ୍ଷଣ ଜବାର୍ଡ୍ଙ୍କର ହାତ

ଛୁଡ଼ି ଦେଲେ । ଜରାର୍ଡ଼ ଅର୍ଥାହରଣ ବ୍ୟପଦେଶରେ ଢ଼ାଲୁ ସ୍ଥାନର ଧାରରେ ଅବସ୍ଥିତ ଗୋଟାଏ ପିପା ନିକଟକୁ ଯାଇ, ତହିଁରେ ତାଙ୍କର ଧନ ଅଛି ବୋଲି କହି ହଠାତ୍ ତହିଁ ମଧ୍ୟରେ ପ୍ରବେଶ କରି ଏପରି ଆବର୍ତ୍ତନ ଦେଲେ ଯେ, ପିପାଟି ଧାରରୁ ଢ଼ାଲୁ ସ୍ଥାନକୁ ଖସି ଯାଇ ଦ୍ରୁତ ବେଗରେ ଗଡ଼ିବାକୁ ଲାଗିଲା । ପ୍ରହରୀମାନେ ଧାଇଁ ଗଲେ କିନ୍ତୁ କରିବେ କଣ ? ପିପାଟି ସେତେବେଳେ ଘଣ୍ଟାରେ କୋଡ଼ିଏ ମାଇଲ ବେଗରେ ଗଡ଼ି ଯାଉଥିଲା । ପ୍ରହରୀମାନେ ପୁନଃ ପୁନଃ ଗୁଳି କରିବାକୁ ଲାଗିଲେ; କିନ୍ତୁ ଗୁଳି ପିପାର ସୁଦୃଢ଼ କାଷ୍ଠାବରଣ ଭେଦ କରି ପାରିଲା ନାହିଁ । ଦେଖୁଁ ଦେଖୁଁ ଜରାର୍ଡ଼ ପିପା ସହିତ ଅଦୃଶ୍ୟ ହୋଇଗଲେ ।

ଦଶ ମିନିଟ ମଧ୍ୟରେ ତିନି ମାଇଲ ପଥ—ଅଗ୍ନିବର୍ଷୀ ଗନ୍ତି, ଅଚିନ୍ତ୍ୟପୂର୍ବ ପରିଣାମ ଅବଶ୍ୟ ! ସନ୍ଧ୍ୟାର ପ୍ରାକ୍‌କାଳରେ ଜରାର୍ଡ଼ ସିବ୍ରା ଓ ମେରେଭାଲ୍‌ର ପ୍ରାନ୍ତଭାଗରେ ଉପନୀତ ହେଲେ । ତାଙ୍କର ହୃଦୟ ଆହ୍ଲାଦ-ପୂର୍ଣ୍ଣ, ଅଥଚ ଅଙ୍ଗ ପ୍ରତ୍ୟଙ୍ଗ ଅତିଶୟ ଅବସନ୍ନ । ସେହି ବାଧ୍ୟ ପ୍ରେରିତ 'ପୁଷ୍ପକ ରଥ'ର ଆଭ୍ୟନ୍ତରିକ ଉତ୍ପାତରେ ତାଙ୍କର ଅସ୍ଥି ସବୁ ଯେପରି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଛି ଅନବରତ ବମନ-ପ୍ରବୃତ୍ତି, ଦେଖୁଁ ଦେଖୁଁ ଦୁଇ ଥର ରକ୍ତ-ବମନ ହୋଇଗଲା ।

*

## ସତ୍‌ସାହସ ଓ ପ୍ରତିଭା (୨)

ଜରାର୍ଡ଼ ପିପାରେ ଠେସ ଦେଇ ବସି ବିଶ୍ରାମ-ଲାଭର ପ୍ରୟାସ କରୁଛନ୍ତି, ଏପରି ସମୟରେ ସେ ମୁଣ୍ଡ ଉପରେ ମନୁଷ୍ୟର ଗତିବିଧି-ଶବ୍ଦ ଶୁଣି ପାରିଲେ । ତାଙ୍କର ଆଉ ବିଶ୍ରାମ କରିବାର ହେଲା ନାହିଁ । ସେ ଅତ୍ୟନ୍ତ ଉଦ୍‌ବେଗରେ ସମୀପବର୍ତ୍ତୀ ନିବିଡ଼ ଅରଣ୍ୟରେ ପ୍ରବେଶ କଲେ । ଏହି ସ୍ଥାନରୁ ମେରେଭାଲର ଶିଖର ଦେଶ ଅଧିକ ଦୂର ନୁହେ, ଏକ ମାଇଲ ମଧ୍ୟରେ । ଜରାର୍ଡ଼ ବନର ଗହନାଂଶ ମାର୍ଗରେ ଯିବାକୁ ଲାଗିଲେ ଏବଂ

ରଜନୀର ଅନ୍ଧକାର ତାଙ୍କର ଢେର ସାହାଯ୍ୟ କଲା; ତଥାପି ନିମେ ଚତୁର୍ଦ୍ଦିଗ ଘୋର ଶବ୍ଦେ ସଙ୍କୁଳ ବୋଧ ହେଲା । କେଉଁ ସ୍ଥାନରେ ମଶାଲ ଜଳୁଛି, ଦୁର୍ଦ୍ଦାନ୍ତ ପ୍ରହରୀଗଣ ପହରା ଦେଉଛନ୍ତି, କେଉଁଠାରେ ବନ୍ଧୁକ-ଧ୍ୱନି ଶୁଣା ଯାଉଛି, କେଉଁଠାରେ ବା କମାଣ ଗର୍ଜ୍ଜନ କରୁଅଛି । ଉଚ୍ଚ ବୃକ୍ଷଚୂଡ଼ାରେ ପେଚକର ଗମ୍ଭୀର ରବ ଯେପରି ଆସନ୍ନ-ମରଣ ଫରାସୀ ବୀରଙ୍କର ଅନ୍ତ୍ୟେଷ୍ଟି-କାଳ ଘୋଷଣା କରୁଅଛି ।

ବନ ପ୍ରାୟ ଅତିକ୍ରାନ୍ତ ହେବା ସମୟରେ ଗୋଟିଏ ଅଭିନବ ଶବ୍ଦ ଜେରାର୍ଡଙ୍କର କର୍ଣ୍ଣଗୋଚର ହେଲା—'ମନଡିଉ' (ହା ଜଗଦୀଶ୍ୱର) ଜେରାର୍ଡ ସେହି ଦିଗ ପ୍ରତି ଅଗ୍ରସର ହୋଇ ଦେଖିଲେ, ଶୁଷ୍କ ପତ୍ର ଉପରେ ଜଣେ ଲୋକ ନିଃଶ୍ରୁ-ବଦ୍ଧ ଭାବରେ ଶାୟିତ । ସେ ଆହତର ପାଖକୁ ଯାଇ ବୁଝିଲେ, ସେହି ବ୍ୟକ୍ତି ହିଁ ଡିଉପ୍ଲେସିସ୍, ମାର୍ଶାଲ୍ ମେସିନା ଯାହାଙ୍କୁ ତତ୍ପୂର୍ବଦିବସ ସେହି ଦୁଃସାଧ୍ୟ ସାଧନ ପାଇଁ ପଠାଇଥିଲେ । ତାଙ୍କର ଅଙ୍ଗପ୍ରତ୍ୟଙ୍ଗରୁ ରୁଧିରଧାରା ନିର୍ଗତ ହେଉଥିଲା । ଡିଉପ୍ଲେସିସ୍ ଜେରାର୍ଡଙ୍କୁ ଦେଖିବା ମାତ୍ରକେ କ୍ଷୀଣ କଣ୍ଠରେ କହିଲେ, 'ଭାଇ ଜେରାର୍ଡ, ମୁଁ ତ ଗଲି—ଭରସା କରେଁ ତୁମେ ସେ କାର୍ଯ୍ୟ ସାଧନ କରିବ ।' ଜେରାର୍ଡ, କହିଲେ, 'ତୁମର ପଥର ଓ ବାଣ ଥିଲେ ମତେ ଦିଅ । ଯଦି ନିଶୀଥ ପର୍ଯ୍ୟନ୍ତ ଧୃତ ନହୁଏଁ, ତାହା ହେଲେ ଅବଶ୍ୟ ଅଗ୍ନି ସଂଯୋଗ କରିବ ।

ଡିଉପ୍ଲେସିସ୍ କହିଲେ, 'ତୁମ ନିକଟରେ ପିସ୍ତଲ ଅଛି ତ ? ଧୃତ ହେଲେ, ମୋର ଅନୁରୋଧ, ଆତ୍ମହତ୍ୟା କର । ନିଦାରୁଣ ଶତ୍ରୁ ଶିବିରରେ ଡି ପମ୍ବ୍ୟାଲ୍ ହିଁ ଆମର ଏକମାତ୍ର ବନ୍ଧୁ—ତାଙ୍କୁ ବିଶ୍ୱାସ କର ।' ଏହା କହୁଁ କହୁଁ ଡିଉପ୍ଲେସିସ୍‌ଙ୍କର ପ୍ରାଣବାୟୁ ବହିର୍ଗତ ହେଲା ।

ଏହି ସମୟରେ ଜେରାର୍ଡଙ୍କର ପଶ୍ଚାଦ୍‌ଭାଗରେ ଜଣେ କୃଷ୍ଣକାୟ ବ୍ୟକ୍ତି ଠିଆ ହୋଇଥିଲା । ଜେରାର୍ଡ ଡିଉପ୍ଲେସିସ୍‌ଙ୍କ ସହିତ କଥାବାର୍ତ୍ତାରେ ବ୍ୟାପୃତ ଥିବାରୁ ସେ ତାହାକୁ ଲକ୍ଷ୍ୟ କରିପାରି ନଥିଲେ । ବନ୍ଧୁଙ୍କ ମୃତ୍ୟୁରେ ସେ ଦୀର୍ଘ ନିଶ୍ୱାସ ତ୍ୟାଗ କରି ଉଠି ଠିଆ ହେବାକ୍ଷଣି, ପାର୍ଶ୍ୱ

ଘରରେ ସେହି କୃଷ୍ଣକାୟ ପୁରୁଷଙ୍କୁ ଦେଖି ଚମକି ପଡ଼ିଲେ । ସେ କହିଲା, 'ଫରାସୀ ଭଦ୍ରଲୋକ ! ଭୟ ନାହିଁ, ମୁଁ ଡି ଚମ୍ବ୍ୟାଲ୍ । ଆପଣଙ୍କର ବନ୍ଧୁ ମୋତେ ହିଁ ବିଶ୍ୱାସ କରିବାକୁ କହି ଯାଇଛନ୍ତି । ମୁଁ ସେ ଚ୍ଛରମୁଖ ମ୍ୟାନୁଏଲେଙ୍କର ପ୍ରଧାନ କର୍ମଚାରୀ ହେଲେହେଁ ଆପଣଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବ ।' ଏହା କହି ଡି ଚମ୍ବ୍ୟାଲ୍ ଆରକ୍ତ ଚକ୍ଷୁରେ ତର୍ଜନ ଗର୍ଜନ କରି କହିଲେ, 'ରେ ଦୁର୍ମତି ଫରାସୀ, ମୁଁ ତୋତେ କେବେ କ୍ଷମା କରିବ ନାହିଁ । ତୁ ନିଶ୍ଚୟ ଗୁପ୍ତଚର, ଆମର ରହସ୍ୟ ଉଦ୍ଭେଦ କରିବାକୁ ଆସିଛୁ । ଏହି ଶାଣିତ ଖଡ୍‌ଗର ଆଘାତରେ ଏଇକ୍ଷଣି ତୋର ଶିରଚ୍ଛେଦ କରିବ ।'

ଜିରାର୍ଡ ଅବାକ୍ ! ଦେଖୁଁ ଦେଖୁଁ କେତେକ ଜଣ ପ୍ରହରୀ ଆସି ଜିରାର୍ଡଙ୍କୁ ବନ୍ଧନ କଲେ । ସେମାନେ ଡଉଲ୍ଲେପିସଙ୍କର ମୃତ ଦେହଟି ଉଠାଇ ନେଲେ । ସମସ୍ତେ ଆନନ୍ଦ-ଧ୍ୱନି କରି କରି ମ୍ୟାନୁଏଲେଙ୍କର ଶିବିରକୁ ଗମନ କଲେ । ମ୍ୟାନୁଏଲେ ଜିରାର୍ଡଙ୍କୁ ବିକଟ ହାସ୍ୟ କରିବାକୁ ଲାଗିଲେ, କହିଲେ, 'ଆମମାନଙ୍କ ପ୍ରତି ଫରାସୀ ବନ୍ଧୁମାନଙ୍କର ବେଶ ଦୟା । ସେମାନେ ପ୍ରାୟ ପ୍ରତି ଦିନ ଆମମାନଙ୍କ ସହିତ ଦେଖା କରିବାକୁ ଆସନ୍ତି ଏବଂ ସ୍ୱ ସ୍ୱ ମର୍ଯ୍ୟାଦା ଅନୁସାରେ ଚତୁର୍ବିଧ ଆତିଥ୍ୟ ଲାଭ କରନ୍ତି । ଆପଣ ବୋଧହୁଏ ନିଶୀଥ ଆଗନ୍ତୁ ଶର-ନିଦ୍ରାରେ ଅଭିଭୂତ ହେବେ । କିନ୍ତୁ କର୍ଣ୍ଣେଲ ଜିରାର୍ଡ, ଆପଣ ଯଦି ମୋ ପ୍ରଶ୍ନଗୁଡ଼ିକର ଯଥାଯଥ ଉତ୍ତର ଦେବେ, ତାହା ହେଲେ ମୁଁ ଆପଣଙ୍କୁ ଅନାୟାସ ମରଣରେ ଆପ୍ୟାୟିତ କରିବ-- ଅନ୍ୟଥା ଆପଣଙ୍କ ଦୁର୍ଗତିର ସୀମା ରହିବ ନାହିଁ, ହି ହି-ହି ।'

ଜିରାର୍ଡ--ଆପଣ ଯଦି ମୋତେ ସ୍ୱାଭାବିକ ଭାବରେ ମରିବାକୁ ଦିଅନ୍ତି, ତାହା ହେଲେ ମୁଁ ସମସ୍ତ ସତ୍ୟ କହିବି, କିଛି ଗୋପନ ରଖିବି ନାହିଁ ।

ମ୍ୟାନୁଏଲେ—କିପରି ମୃତ୍ୟୁ ଚାହାନ୍ତି ?

ଜିରାର୍ଡ—ତାହା ଦେବେ କି ନା ଆଗେ ଶପଥ କରନ୍ତୁ । ଫରାସୀ ଶିବିରର ଗୋପନୀୟ କଥା ଜାଣିବାକୁ ଇଚ୍ଛା କଲେ ଆପଣଙ୍କୁ ଅବଶ୍ୟ ମୋ ନିକଟରେ ଶପଥ କରିବାକୁ ହେବ—ନଚେତ୍ ମୁଁ ଆଉ ବାକ୍ୟ-

ବ୍ୟସ୍ତ କରିବି ନାହିଁ । ଆପଣଙ୍କ ଇଚ୍ଛା ଅନୁସାରେ ମୋ ଜୀବନ ନେଇ ପାରନ୍ତି, ସେଥିରେ ମୋର କୌଣସି ଆପତ୍ତି ନାହିଁ ।

ସାହସପୂର୍ଣ୍ଣ ବାକ୍ୟର ଶକ୍ତି ଅପରିସୀମ । ଦୁର୍ଦ୍ଧର୍ଷ ମ୍ୟାନୁଏଲ୍ ପାର୍ଶ୍ୱସ୍ଥିତ କ୍ରୁସ୍ ସ୍ପର୍ଶ କରି ଶପଥ କଲେ, 'କର୍ଣ୍ଣେଲ ଜର୍ଜ, ମୁଁ ଆପଣଙ୍କର ସତ୍ୟବାଦିତାର ପୁରସ୍କାର ସ୍ୱରୂପ ଆପଣଙ୍କୁ ସ୍ୱାଭିଳଷିତ ମୃତ୍ୟୁହିଁ ଦାନ କରିବି । କିନ୍ତୁ ଆପଣଙ୍କୁ ବି ଶପଥ କରିବାକୁ ହେବ ଯେ, ଆପଣ ନିରବଚ୍ଛିନ୍ନ ସତ୍ୟ କଥା କହିବେ ।'

ଜର୍ଜ ଶପଥ କଲେ । ମ୍ୟାନୁଏଲ୍ ଫରାସୀ ସେନା ସମ୍ବନ୍ଧରେ ନାନା ପ୍ରଶ୍ନ କରିବାକୁ ଲାଗିଲେ । ଯେତେବେଳେ ତାଙ୍କର ପ୍ରତୀତ ହେଲା ଯେ, ଜର୍ଜ ସବୁ ସତ୍ୟ କହିଛନ୍ତି, ସେତେବେଳେ ସେ ଉଚ୍ଚ ସ୍ୱରରେ ହାସ୍ୟ କରି କହିଲେ, "ଫରାସୀ ଭଦ୍ରଲୋକ ! ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଛି, ଆପଣ ମୋତେ ପ୍ରତାରିତ କରି ନାହାନ୍ତି । ଆପଣଙ୍କର ଦତ୍ତ ବିବରଣ ପ୍ରତ୍ୟୁଷରେ ଲର୍ଡ ଓ୍ୱେଲିଂଟନଙ୍କ ନିକଟକୁ ପ୍ରେରିତ ହେବ । ବର୍ତ୍ତମାନ ମୁଁ ନିଜ ଶପଥ ପାଳନ କରିବି । ଆପଣ କିପରି ମରିବାକୁ ଚାହାନ୍ତି ?'

ଜର୍ଜ—ଆପଣ ଆଦେଶ କରିଛନ୍ତି, ମୋତେ ରାତି ବାରଟା ଆଗରୁ ସମାଧି କରିବେ । ଏବେ ଆଠଟା ବାଜୁଛି । ମୁଁ ଆପଣଙ୍କ ଆଜ୍ଞାନୁସାରେ ବାର ଘଣ୍ଟାର ଏକ ମିନଟ୍ ପୂର୍ବ ପର୍ଯ୍ୟନ୍ତ ଜୀବିତ ରହିବାକୁ ଇଚ୍ଛା କରେଁ ।

ମ୍ୟାନୁଏଲ୍—ପ୍ରାଣ ପ୍ରତି ଏତେ ମମତା ଫରାସୀ ବୀରର ଉପଯୁକ୍ତ ନୁହେ । ତଥାପି ଆପଣଙ୍କର ଇଚ୍ଛା ପୂର୍ଣ୍ଣ କରିବାରେ ମୋର ଆପତ୍ତି ନାହିଁ ।

ଜର୍ଜ—ମୁଁ ଏପରି ଭାବରେ ମରିବାକୁ ଇଚ୍ଛା କରେଁ, ଯେପରି ଚତୁର୍ଦ୍ଦିଗସ୍ଥ ଦୂରବର୍ତ୍ତୀ ଜନମଣ୍ଡଳୀ ବି ମୋର ମରଣ ଦେଖି ପାରିବେ । ମେରେଡ଼ାଲ-ଶିଖରରେ ଏଇ ଯେଉଁ କାଷ୍ଠରାଶି ସୁସଜ୍ଜିତ ରହି-

ଅଛୁ, ମୋତେ ତର୍ଦ୍ଦି ଉପରେ ରଖି ଅଗ୍ନି ସଂଯୋଗ କରାଯାଉ, ମୋତେ ଜୀଅନ୍ତା ଦାହ କରି ବଧ କରାଯାଉ । ପୂର୍ବ କାଳରେ ସାଧୁ ସନ୍ନ୍ୟାସୀମାନେ ଏପରି ମରୁଥିଲେ । ମୁଁ ସେମାନଙ୍କର ପଦଚିହ୍ନ ଅନୁସରଣ କରିବାକୁ ଇଚ୍ଛୁକ ।

ମ୍ୟାନୁଏଲେ—ସେଥିରେ ଆମର ଆପତ୍ତି ବା କଣ ? ଫାଦର ସୀହାର, ଆପଣ ବର୍ତ୍ତମାନ ବିଶ୍ରାମ କରନ୍ତୁ, ମୁଁ ଆପଣଙ୍କ ପାଇଁ ଛାଗ ମାଂସ ଓ ମଦିରା ପଠାଉଛୁ । ମନେ ରଖିବେ ଆପଣଙ୍କ ଜୀବନର ଆଉ ଦୁଇ ଘଣ୍ଟା କାଳ ଅବଶିଷ୍ଟ ନାହିଁ—ହା, ହା, ହା ।

ଯେଉଁ ଗୃହରେ ଭିଜକ୍ଲେସିସଙ୍କର ମୃତ ଶରୀର ରକ୍ଷିତ ହୋଇଥିଲା, ସେଇ ଗୃହରେ ଜର୍ଭାର୍ଡ଼ଙ୍କର ବିଶ୍ରାମ ସ୍ଥାନ ନିର୍ଦ୍ଦିଷ୍ଟ ହେଲା । ସାରାଦିନର ପରିଶ୍ରମରେ, ବିଶେଷତଃ ଅନାହାରରେ ଜର୍ଭାର୍ଡ ସାତିଶୟ କାତର ହୋଇଥିଲେ—ଗୃହରେ ପ୍ରବେଶ କରିବାକ୍ଷଣି ଶୋଇ ପଡିଲେ । ଅନେକ ଚିନ୍ତା ତାଙ୍କ ମନରେ ଖେଳିଗଲା ସତ, କିନ୍ତୁ ମୃତ୍ୟୁ-ଭୟ ତାଙ୍କୁ କିଞ୍ଚିନ୍ମାତ୍ର ଉତ୍ପୀଡିତ କରି ପାରିଲା ନାହିଁ । ପରନ୍ତୁ ତାଙ୍କ ଦ୍ୱାରା ଯେଉଁ ମହତ୍ କର୍ମ ସାଧିତ ହେବାକୁ ଯାଉଛି, ସେଥିପାଇଁ ସେ ପରମେଶ୍ୱରଙ୍କୁ ଭୂୟୋଭୂୟଃ ଧନ୍ୟବାଦ ଦେବାକୁ ଲାଗିଲେ ।

କ୍ଷଣକାଳ ପରେ ଡ଼ ପମ୍ଫାଲ ଛାଗ ମାଂସ ଓ ମଦିରା ନେଇ ସେଠାରେ ଉପସ୍ଥିତ ହେଲେ । କ୍ଷୁତ୍‌ପିପାସା-କାତର ଜର୍ଭାର୍ଡ ସେଇକ୍ଷଣି ଭୋଜନରେ ବସିଲେ । ଆସନ୍ନ-ମୃତ୍ୟୁ ଫାଦର ସୀହାରଙ୍କର ଭୋଜନରେ ଲେଶମାତ୍ର ଶୈଥିଲ୍ୟ ଦୃଷ୍ଟି ହେଲା ନାହିଁ । ସେ ଡ଼ ପମ୍ଫାଲଙ୍କର ଚରିତ୍ର ମୋଟେ ବୁଝି ପାରି ନଥିଲେ । ସେ ତାଙ୍କ ମୁଖରେ ବନ୍ଧୁତା ଓ ବୈରିତାର କଥା ଶୁଣିଥିଲେ । ସେ ତାଙ୍କ ନିକଟରୁ କୌଣସି ଉପକାର-ପ୍ରତ୍ୟାଶା କଲେ ନାହିଁ; କିନ୍ତୁ ଏହି ଆସନ୍ନ ସମୟରେ କିଞ୍ଚିତ୍ ଭୟ ସହିତ ଗୋଟିଏ ଅନୁରୋଧ ନକରି ରହିପାରିଲେ ନାହିଁ । କହିଲେ, 'ମହାଶୟ, ଆପଣ ଅନୁଗ୍ରହ କରି ମୋର ମରଣ-ଖବରଣୀ ଲେଖି ଫାଦର ଶିବରଙ୍କୁ ପଠାଇ ପାରିବେ ?'

ଡ ଟମ୍ୟାଲ୍ ନିରୁତ୍ତର ରହିଲେ । ବାରଟାର କେତେକ ମିନଟ୍ ପୂର୍ବେ ମ୍ୟାନୁଏଲେ ସେଠାରେ ଉପସ୍ଥିତ ହୋଇ ଆଦେଶ କଲେ, 'ତୁମେମାନେ ଅତି ଶୀଘ୍ର କର୍ଣ୍ଣେଲ୍ ଜିରାର୍ଡ଼ଙ୍କୁ ନେଇ ଏହି କାଷ୍ଠରାଶି ଉପରେ ସ୍ଥାପନ କର ଏବଂ ଡ଼ିଉପ୍ଲେସିସଙ୍କର ଶବଟି ତଳକୁ ଫୋପାଡ଼ି ଦିଅ ।' ମ୍ୟାନୁଏଲେ ଚାଲିଯିବା ପରେ, ଡ ଟମ୍ୟାଲ୍ ପ୍ରୀତି-ପ୍ରଫୁଲ୍ଲ ମୁଖରେ ଜିରାର୍ଡ଼ଙ୍କୁ କହିଲେ, 'ଆପଣ ଅବିଳମ୍ବେ ଡିଉପ୍ଲେସିସଙ୍କର ମୃତ ଦେହଟି ଆପଣଙ୍କର ସ୍ଥାନରେ ରଖି, ସ୍ୱୟଂ ତାଙ୍କ ସ୍ଥାନରେ ମୃତବତ୍ ପଡ଼ି ରହନ୍ତୁ ।'

ଜିରାର୍ଡ଼ ତାଙ୍କର ଉପଦେଶ ପାଳନ କଲେ । ପ୍ରହରୀଗଣ ଜିରାର୍ଡ଼ ଭ୍ରମରେ ଡିଉପ୍ଲେସିସଙ୍କର ମୃତ ଦେହ ନେଇ କାଷ୍ଠସ୍ତୂପ ଉପରେ ରଖି ଅଗ୍ନି ସଂଯୋଗ କରି ଦେଲେ । ଏଣେ ଡ ଟମ୍ୟାଲ୍ ଜିରାର୍ଡ଼ଙ୍କର କଟି-ଭାଗରେ ଦଉଡ଼ି ବାନ୍ଧି ପର୍ବତ ଶିଖରରୁ ତଳକୁ ଛାଡ଼ି ଦେଲେ ।

ଜିରାର୍ଡ଼ ସମତଳ ଭୂମିରେ ଅବତରଣ କରି ଫରାସୀ ଶିବିର ପ୍ରତି ଅଗ୍ରସର ହେବାବେଳେ ଦୂରବର୍ତ୍ତୀ ଦିଙ୍ମଣ୍ଡଳରେ ଆଲୋକ ଦେଖିଲେ । ସେ ବୁଝି ପାରିଲେ ଯେ, ମେସେଣ୍ଡାଲ ଚଡ଼ାରେ ଆଲୁଅ ଦେଖି ପ୍ରତ୍ୟୁତ୍ତରରେ ମାର୍ଶାଲ୍ କ୍ଲଜେଲ ସିଦ୍ଧ ଓ ଓପାରେ ବି ଅଗ୍ନି ଜାଳିଛନ୍ତି । ଅତଏବ ସେ ଅତିଶୟ ଆହ୍ଲାଦ ଓ ଆଶ୍ୱାସନାରେ ଅଧୀର୍ ହୋଇଗଲେ ।

ସେ ପ୍ରଭାତ ପର୍ଯ୍ୟନ୍ତ ନିରୁଦ୍ବେଗ ଭାବରେ ଅଗ୍ରସର ହୋଇ, ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ଚତୁର୍ଦ୍ଦିଗରେ ଶତ୍ରୁ ସେନା ଦେଖିବାକୁ ପାଇଲେ । ଜଣେ ଅଶ୍ୱାରୋହୀ ଜିରାର୍ଡ଼ଙ୍କର ନିକଟବର୍ତ୍ତୀ ହେଲା । ଜିରାର୍ଡ଼ ତାହାକୁ ଦେଖିବା ମାତ୍ରକେ ବସି ପଡ଼ିଲେ, ପରେ ରୋଗୀପରି ଅଭିନୟ କରି ଏକାବେଳକେ ଶୋଇ ପଡ଼ିଲେ । ଅଶ୍ୱାରୋହୀ ତାଙ୍କୁ ଧରିବା ନିମନ୍ତେ ଅଶ୍ୱପୃଷ୍ଠରୁ ଓହ୍ଲାଇ ନିକଟକୁ ଆସିବାକ୍ଷଣି, ଜିରାର୍ଡ଼ ହଠାତ୍ ଉଠି ଠିଆ ହେଲେ, ଅସ୍ଫୁଟ ସ୍ୱରରେ କିଛି କହି କହି ବିଦ୍ୟୁଦ୍ବେଗରେ ଲମ୍ଫ ଦେଇ ଉକ୍ତ ଅଶ୍ୱ ଉପରେ ବସିଲେ । ସ୍ପ୍ୟାନିୟାର୍ଡ଼ ତାଙ୍କୁ ଧରିବାକୁ ଅଗ୍ରସର

ହେଲା । କିନ୍ତୁ ଜିରାର୍ଡ଼ କଶାଘାତ କରି କରି ବାୟୁବେଗରେ ଧାଇଁବାକୁ ଲାଗିଲେ ଏବଂ କିଛିକ୍ଷଣରେ ଫରାସୀ ଶିବିରରେ ଯାଇ ଉତ୍ତୀର୍ଣ୍ଣ ହେଲେ ।

ମେରିଆ ଲୁଇସାଙ୍କ ମୁଖରୁ ଜିରାର୍ଡଙ୍କର କଥା ଶୁଣି କ୍ୟାପ୍‌ଟେନ୍ ଫର୍ଣ୍ଣ କହିଲେ, 'ମାତଃ, ଜୀବନରେ ଏଭଳି ସତ୍‌ସାହସ ଓ ପ୍ରଭୁଭକ୍ତିର କଥା ମୁଁ ଆଉ କେବେ ଶୁଣି ନାହିଁ । ଆପଣ ଅନୁଗ୍ରହ କରି ମୋତେ ଖଣ୍ଡିଏ ଅଭିଜ୍ଞାନ-ପତ୍ର ଦିଅନ୍ତୁ, ମୁଁ ଥରେ ଜିରାର୍ଡଙ୍କ ସହିତ ସାକ୍ଷାତ୍ କରି ତାଙ୍କର ମତ ନେଇ ସମସ୍ତ କାର୍ଯ୍ୟ କରିବି ।

ମହାରାଣୀ ଫର୍ଣ୍ଣଙ୍କର ଅନୁରୋଧ ରକ୍ଷା କଲେ । ଯଥା ସମୟରେ ଜିରାର୍ଡ଼ ଓ ଫର୍ଣ୍ଣ ମିଳିତ ହେଲେ—ଭରତ ଓ ଶତ୍ରୁଘ୍ନ ମିଶି ରାଜ୍ୟଚ୍ୟୁତ ରାମଚନ୍ଦ୍ରଙ୍କୁ ବନବାସରୁ ଫେରାଇ ଆଣିବାକୁ ତତ୍ପର ହେଲେ ।

*

## ସ୍ୱଜାତିପ୍ରେମ

ସେଣ୍ଟ୍ ହେଲେନାରୁ ନେପୋଲିୟନଙ୍କୁ ଆଣିବା ସକାଶେ ଭିତରେ ଭିତରେ ଷଡ଼୍‌ଯନ୍ତ୍ର ହେଉଅଛି ବୋଲି ଫ୍ରାନ୍ସର କର୍ତ୍ତାମାନେ ଶୁଣି ପ୍ରମାଦ ଗଣିଲେ । ତେବେ ସେ ଗଭୀର ରହସ୍ୟର ଉଦ୍ଭେଦ କରୁଛି କିଏ ? ସେ ମନ୍ତ୍ରଣା ତ ପୃଥିବୀ-ପୃଷ୍ଠରେ ହୁଏ ନାହିଁ । ସେ ସମିତିର ଅଧିବେଶନ ହୁଏ ପଞ୍ଚଶ ଫୁଟ ମୃତ୍ତିକାନିମ୍ନରେ । ଭୂଗର୍ଭରେ ଯେତେବେଳେ ରାଜନୈତିକ ଆନ୍ଦୋଳନ ଚାଲିଛି, ବୋଧନ-ରାଜ କରି ପାରିବେ କିଏ ?

ଧୂର୍ତ୍ତ ବେଞ୍ଜାମିନ୍ ଟିକିଏ ଗନ୍ଧ ପାଇଲେ ଯେ, କ୍ୟାପ୍‌ଟେନ୍ ଫର୍ଣ୍ଣ ଓ କର୍ଣ୍ଣେଲ୍ ଜିରାର୍ଡ ଏହି ଷଡ଼୍‌ଯନ୍ତ୍ରରେ ଲିପ୍ତ ଅଛନ୍ତି । କିନ୍ତୁ ସେ ଏକଥା କାହାକୁ କହିଲେ ନାହିଁ । ସ୍ୱୟଂ ରାଜା ତାଙ୍କୁ ପଚାରିଲେ, ତଥାପି ସେ କାହାର ନାମ ଦେଲେ ନାହିଁ । ଏତିକି ମାତ୍ର କହିଲେ ଯେ, ସେ ଷଡ଼୍‌ଯନ୍ତ୍ର-କାରୀଗଣଙ୍କୁ ବନ୍ଧନ କରି ଅଚିରେ ମ୍ୟାଜେଷ୍ଟିଙ୍କର ଚରଣ ତଳେ ଅର୍ପଣ କରିବେ । ବେଞ୍ଜାମିନ ଅନନ୍ତ ବଳମ୍ୱେ ଲି ନଗରରେ ଉପସ୍ଥିତ ହେଲେ ।

ତାଙ୍କର ହୃଦୟ ଆନନ୍ଦରେ ପରିପୂର୍ଣ୍ଣ । ଜିରର୍ଡ଼ ଓ ଫର୍ଣ୍ଣଙ୍କୁ ଧରି ଟିଲେଷ୍ଟିନରେ ଚଢ଼ାଇ ପାରିଲେ ତାଙ୍କର ଯେ ପଦବୃଦ୍ଧି ହେବ, ତଦ୍‌ବିଷୟରେ ସନ୍ଦେହ ନାହିଁ । ଅଧିକନ୍ତୁ ନେପୋଲିଅନ ତାହାଙ୍କୁ ଅନେକ ଟଙ୍କା ପୁରସ୍କାର ଦେବାକୁ ବି ପ୍ରତିଶ୍ରୁତ ହୋଇଥିଲେ । ଷଡ଼ଯନ୍ତ୍ରକାରୀମାନଙ୍କୁ ଧରିବା ପାଇଁ ବିପୁଳ ଆୟୋଜନ କରାଗଲା । ବେଞ୍ଜାମିନ କାଳ ବିଳମ୍ବ ନକରି ଏକ ଶତ ଅଶ୍ୱାରୋହୀ ଓ ପାଞ୍ଚଶତ ପଦାତିକ ସୈନ୍ୟ ନେଇ ସ୍ୱଜାତିବତ୍ସଳ ଜିରାର୍ଡଙ୍କର ପଲ୍ଲୀନିବାସ ଅବରୋଧ କରିବାକୁ ମନସ୍ଥ କଲେ ।

ଏଣେ ଫର୍ଣ୍ଣ ଓ ଜିରର୍ଡ଼ ସେଣ୍ଟ୍ ହେଲେନା ଯାତ୍ରା କଲେ । ଯେଉଁ ସ୍ଥାନରେ ବ୍ରିଟେନର ନୌ-ସେନାପତିଗଣ ଅହରହଃ ପହରା ଦେଉଥିଲେ, ସେହି ଅଶେଷ ବିପଦ-ସଙ୍କୁଳ ଭୂମଧ୍ୟସାଗରେ ଅତିକ୍ରମ କରି ଉଭୟ ବୀର ଯାତ୍ରା ଆରମ୍ଭ କଲେ । ଆଫ୍ରିକାର ନିକଟକୂଳରୁ ଅପାର ମହାଜଳଧିର ଉତ୍ତାଳ ତରଙ୍ଗ ଭେଦ କରି ସେମାନଙ୍କର କ୍ଷୁଦ୍ର ତରଣୀ ଦକ୍ଷିଣାଭିମୁଖରେ ଧାବିତ ହେବାକୁ ଲାଗିଲା । ଦୁହେଁ ପରିଣତ ବୟସରେ ପରିବାରବର୍ଗଙ୍କର ସୁକୋମଳ ବାହୁବଲ୍ଲୀକୁ ତୁଚ୍ଛ ଜ୍ଞାନ କରି, ଆଟଲାଣ୍ଟିକର ଭୀଷଣ ତରଙ୍ଗ-ମାଳା ଆଲିଙ୍ଗନ କଲେ । ସେମାନଙ୍କର ଆରୋଗ୍ୟ ସ୍ୱାସ୍ଥ୍ୟ ନାହିଁ, ଆତ୍ମରକ୍ଷାର କୌଣସି ଉପାୟ ନାହିଁ- ଅଛି କେବଳ ଈଶ୍ୱରଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ । ଅପାପବିଦ୍ଧ ବିବେକ ସେମାନଙ୍କର ସହାୟ, ସ୍ୱଜାତିପ୍ରେମ ସେମାନଙ୍କର ଅସ୍ତ୍ର । ସ୍ୱଦେଶ-ପ୍ରୀତି ସେମାନଙ୍କୁ ଭୌତିକ ପିଣ୍ଡ ପ୍ରତି ଏକାନ୍ତ ଉଦାସୀନ କରି ଉଠାଇଲା ।

ଯେଉଁ ସ୍ଥାନରେ ଶତ୍ରୁପକ୍ଷର ଭୀଷଣ ନୌ-ବାହିନୀ ଆସି ସ୍ୱଦେଶ ବତ୍ସଳ ବୀର ଦମ୍ପତିଙ୍କର ଏଇ ପ୍ରେମ-ତରଣୀ ଖଣ୍ଡିକ ବୁଡ଼ାଇ ଦେବ, ସେହି ସ୍ଥାନ ଆଜି 'ଆଟ୍‌ଲାଣ୍ଟିକ ମହାସାଗର' ନାମରେ ଅଭିହିତ ହେବ ନାହିଁ —ତାହାର ନାମ ରହିବ 'ଫରାସୀ-ପ୍ରେମ-ସାଗର ।' ସେମାନଙ୍କୁ ଦେଖି ସେମାନଙ୍କର ସ୍ୱଚ୍ଛ ସରଳ ସ୍ୱଜାତିପ୍ରେମ ହୃଦୟଙ୍ଗମ କରି, ମହାନ୍ ଆଟ୍‌ଲାଣ୍ଟିକ୍ ଅତିଶୟ ଆହ୍ଲାଦରେ ସ୍ୱକୀୟ ତରଙ୍ଗ-କର ଉତ୍ତୋଳନ କରି ନୃତ୍ୟ କରିବାକୁ ଲାଗିଲା ।

ଶେଷରେ ଫର୍ଣ୍ଣ ଓ ଜବର୍ଡ଼ ସେଣ୍ଟ୍ ହେଲେନାରେ ଉପନୀତ ହେଲେ । କିନ୍ତୁ ସେମାନଙ୍କର କଷ୍ଟ ସାର ହେଲା—ସେମାନେ ଫରାସୀ ରମଚନ୍ଦ୍ ନେପୋଲିୟନଙ୍କୁ ଆଉ ଫେରାଇ ଆଣି ପାରିଲେ ନାହିଁ । ଯେଉଁ ଦିନ ସମ୍ରାଟ୍ ପ୍ରାଣତ୍ୟାଗ କଲେ, ସେଦିନ ନିଶୀଥରେ ଦୁଇ ବୀର ଲଙ୍ଗଉଡ୍‌ରେ ପହଞ୍ଚିଲେ । ଫରାସୀ-ଭାସ୍କରଙ୍କର ଅସ୍ତ ପରେ ଜବର୍ଡ଼ ଫରାସୀ ଭଦ୍ରଲୋକମାନଙ୍କ ସଙ୍ଗେ ସ୍ୱଦେଶକୁ ପ୍ରତ୍ୟାବୃତ୍ତ ହେଲେ । ଫର୍ଣ୍ଣ କିନ୍ତୁ ନିରୁଦ୍ଦିଷ୍ଟ ।

ଦୁଇ ବୀର ସଫଳକାମ ହୋଇ ପାରିଲେ ନାହିଁ ସତ; କିନ୍ତୁ ସେମାନେ ସ୍ୱଜାତିପ୍ରେମର ଯେଉଁ ବିମଳ ଆଦର୍ଶ ଦେଖାଇଲେ ତାହା ଜଗତ କେବେ ଭୁଲିବ ନାହିଁ ।

*

## କଟାଘାଟରେ ଚୂନ

ସମ୍ମାନ ରକ୍ଷା ନିମିତ୍ତ ମନୁଷ୍ୟ ଯାହା କରିପାରେ, ମେଶ ସବୁ କରିଛନ୍ତି—ଆଉ କିଛି ବାକି ନାହିଁ । ଭୀଷଣ ଦାରିଦ୍ର୍ୟ-ସଂଗ୍ରାମରେ ତାଙ୍କର ଆଉ ତିଷ୍ଠିବାର ସାଧ ନାହିଁ । ପୁନର୍ବାର ମଣି ଫାର୍ମିଲିକୁ ଟଙ୍କା ପଠାଇବାର ଦିନ ଆସିଲା, ତାଙ୍କର ସେ ଭାବନା ନାହିଁ । ସେ ଆତ୍ମ-ସମର୍ପଣ କରି ସାରିଛନ୍ତି—ଦୀନା ଦୀନନାଥଙ୍କ କୃପା ଉପରେ ନିର୍ଭର କରି ରହିଛି । ସେ ରାଜପଥରେ ବିଚରଣ କରୁଛନ୍ତି, ଗୁଣୁଗୁଣୁ ସ୍ୱରରେ ଗାନ କରୁଛନ୍ତି । ତାଙ୍କ ଦେହର ଜାମାଟି ଜୀର୍ଣ୍ଣ ଶୀର୍ଣ୍ଣ । ପ୍ରତ୍ୟେକ ପଦ ବିକ୍ଷେପରେ କେତେ-ବେଳେ ତାଙ୍କର ପୃଷ୍ଠଦେଶ, କେତେବେଳେ ବା ବକ୍ଷଃସ୍ଥଳର କିୟଦଂଶ ପ୍ରକାଶିତ ହୋଇ ପଡୁଛି । ଲଜ୍ଜାବତୀ ନେରି ଯୌବନ-ଦୃପ୍ତ ପୀନପୟୋଧର ଯୁଗଳର ଆଚ୍ଛାଦନ କଲ୍ଲେ ବାମ ହସ୍ତରେ ଜାମାଟି ଭିଡ଼ି ଧରି ଧୀରେ ଧୀରେ ପାଦଚାରଣ କରୁଛନ୍ତି ।

ପଥରେ ବରଫ । ଅନଭ୍ୟସ୍ତ ପରିଶ୍ରମ, ଅପକୃଷ୍ଟ ସ୍ଥାନରେ ବାସ, ଶୀତବସ୍ତ୍ରର ଅଭାବ, ଅନାହାର, ଅଳ୍ପାହାର ଇତ୍ୟାଦି କାରଣରୁ ମେରିଙ୍କ ଏଥିପୂର୍ବେ କାଶରୋଗ ଆକ୍ରମଣ କରିଅଛି । ତହିଁରେ ପୁଣି ନଗ୍ନପଦରେ ବରଫ ଉପରେ ଗମନ ଏବଂ ଅନାବୃତ ପୃଷ୍ଠରେ ଦାରୁଣ ଉତ୍ତର ବାୟୁର ଅବିଶ୍ରାନ୍ତ ଦଂଶନ ! ମର-ଦେହରେ ଯେତେ ସମ୍ଭବ ସ୍ତାର ଶେଷ ପରୀକ୍ଷା !

ଗୋଟିଏ ହୋଟେଲ ପାର୍ଶ୍ୱରେ ଯିବାବେଳେ, ଜଣେ (Royalist) ଯୁବକ ମେରିଙ୍କି ବିଦ୍ରୂପ କରି କହିଲା—'ସୁନ୍ଦରି, ଜାମାଟି ଧରିଛ କିଆଁ, ଗୁଡ଼ି ଦେଲେ ଭଲ ହୁଅନ୍ତା ।' ପରନ୍ତୁ ମେରିଙ୍କ ମନରେ ଏହି କୁତ୍ସିତ ବିଦ୍ରୂପ ଶାନ୍ତି ଯାତନା ଢାଳି ଦେଲା । ସେ କିନ୍ତୁ ତାହା ନୀରବରେ ସହ୍ୟ କରି ନେଲେ । ଯୁବକ ଏଥିରେ ସନ୍ତୁଷ୍ଟ ନହୋଇ, ରାସ୍ତାରୁ ଏକ ଅଞ୍ଜଳି ବରଫ ଉଠାଇ ଜୋରରେ ମେରିଙ୍କ ପୃଷ୍ଠ ଉପରକୁ ନିକ୍ଷେପ କଲା । ମେରି ଆଉ ସହ୍ୟ କରି ପାରିଲେ ନାହିଁ—କ୍ଷୁଧାର୍ତ୍ତ ବ୍ୟାଘ୍ରୀ ପରି ଧାଇଁ ଯାଇ ସେହି ପାଷଣ୍ଡ ଯୁବକର ବସ୍ତ୍ର ଛିନ୍ନ ବିଚ୍ଛିନ୍ନ କରି ହାତ କାମୁଡ଼ି ଦେଲେ । ପୁଲିସ ଇନ୍‌ସପେକ୍ଟର ଜେଭେରସ୍ ସେତେବେଳେ ସେ ମାର୍ଗରେ ଯାଉଥିଲେ । ରୟାଲିଷ୍ଟ ଯୁବକର ଚିତ୍କାର ଶୁଣି ଘଟନା ସ୍ଥଳରେ ଯାଇ ଠିଆ ହେଲେ । ବୋନାପାର୍ଟିଷ୍ଟ କର୍ତ୍ତୃକ ରୟାଲିଷ୍ଟର ଅବମାନନା ସେ ପଞ୍ଚମହାପାତକର ଅନ୍ୟତମ । ମେରିଙ୍କି ଗ୍ରେପ୍ତାର କରି ନେବା ସକାଶେ ଇନ୍‌ସପେକ୍ଟର ମହାଶୟ ନିକଟସ୍ଥ ପୁଲିସ ପ୍ରହରୀମାନଙ୍କୁ ଆଦେଶ କଲେ । ମେରି ନିଜର ନିର୍ଦ୍ଦୋଷିତା ବୁଝାଇଲେ, କେତେ କାକୁତି ମିନତି କଲେ —ସବୁ ବିଫଳ ହେଲା । ପ୍ରହରୀଗଣ ତାଙ୍କୁ ଥାନାକୁ ନେଇଗଲେ । ଥାନାକୁ ଯିବା ସମୟରେ ଜେଭେରସ୍ ଦେଖିଲେ, ମେରିଙ୍କର ଶ୍ୱେତ-ପଙ୍କଜ-ପ୍ରତିମା ପୀନପୟୋଧର ପ୍ରତି ଲୋକମାନଙ୍କର ଦୃଷ୍ଟି ଆକୃଷ୍ଟ ହେଉଅଛି । ଏଣୁ ସେ ମେରିଙ୍କ ଉପରକୁ ଗୋଟିଏ ଜାମା ଫିଙ୍ଗିଲେ । ମେରି କିନ୍ତୁ ତାଙ୍କୁ ଧନ୍ୟବାଦ ପ୍ରଦାନ କରି ଜାମାଟି ଦୂରରେ ନିକ୍ଷେପ କରିଦେଲେ । ଏହା ଦେଖି ପୁଲିସ ପ୍ରହରୀଦଳ କହିଲେ—'ଲଜ୍ଜାହୀନା ବାରନାରୀ' । ମୂର୍ଖ-ମାନେ ବୁଝି ପାରିଲେ ନାହିଁ ଯେ, ଯେଉଁ ନାରୀ ଲଜ୍ଜା-ନିବାରକ ଭଗବାନଙ୍କୁ ଆତ୍ମସମର୍ପଣ କରିଛି, ତାହାର ବା ଲଜ୍ଜା କଣ ! ସେମାନେ

ଭାବନ୍ତେ ନାହିଁ, ସେମାନଙ୍କର ଅତ୍ୟାଗ୍ରହ ଓ ଅବସ୍ଥାର ଦେଖି ମେରି ସେମାନଙ୍କୁ ଏକ ଦଳ ପଶୁ ମନେ କରିଛନ୍ତି ।

ଥାନାରେ ମେରିଙ୍କର ବିଚାର ହେଲା । ପୁଲିସ ଇନସପେକ୍ଟର ବିଚାରକ । ଜଣେ ବୋନାପାର୍ଟିଷ୍ଟ ରମଣୀ ରାଜମାର୍ଗରେ ଜଣେ ରୟାଲିଷ୍ଟଙ୍କୁ ଆକ୍ରମଣ କରିଅଛି ! ଜଗତରେ ଏହା ଅପେକ୍ଷା ଗୁରୁତର ଅପରାଧ ଆଉ କଣ ହୋଇପାରେ ? ଫଳତଃ ହୁକୁମ ହେଲା, ମେରି ଛ'ମାସ ସଶ୍ରମ କାରାବାସ ଭୋଗ କରିବେ ! ମେରିଙ୍କ ମସ୍ତକରେ ବଜ୍ରାଘାତ ! ସେ ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ—'ଆହା ମୋ ପ୍ରାଣଧନ କୁସୀର ଦଶା କଣ ହେବ ! ଇନସପେକ୍ଟର ମହାଶୟ, ମୁଁ ମିନତି କରୁଛି, ଆପଣ ଆଉ ଥରେ ବିଚାର କରନ୍ତୁ—ଦୟା ପ୍ରକାଶ କରନ୍ତୁ ।' କେତେଭରୟ ତାଙ୍କ କାତର ପ୍ରାର୍ଥନାରେ ଆଦୌ କର୍ଣ୍ଣପାତ କଲେ ନାହିଁ—ତାଙ୍କୁ ଶୀଘ୍ର ଜେଲକୁ ନେଇଯିବାକୁ ପ୍ରହରୀମାନଙ୍କୁ ଆଦେଶ କଲେ ।

ପ୍ରହରୀଗଣ ମେରିଙ୍କୁ ଜେଲକୁ ଟାଣି ନେବାକୁ ଉଦ୍ୟତ ହୋଇଛନ୍ତି, ଏପରି ସମୟରେ ଫାଦାର୍ ମ୍ୟାଡ଼ାଲାନ୍ ଜନୈକ ଡ଼ାକ୍ତରଙ୍କ ସଙ୍ଗେ ହଠାତ୍ ସେଠାରେ ପ୍ରବେଶ କଲେ । ମେରି ବୁଝିଛନ୍ତି, ମ୍ୟାଡ଼ାଲାନହିଁ ତାଙ୍କର ସକଳ ଦୁର୍ଗତିର କାରଣ, ସେହି ତାଙ୍କୁ କାରଖାନାରୁ ତଡ଼ିଛନ୍ତି । ଫାଦାର୍‌ଙ୍କ ମୁଖ ପ୍ରତି ମେରି ବିସ୍ଫାରିତ ନେତ୍ରରେ ଚାହିଁ ରହିଲେ । ଡାକ୍ତର ଷ୍ଟେଥସ୍କୋପ ସାହାଯ୍ୟରେ ମେରିଙ୍କର ହୃତ୍ପିଣ୍ଡ ପରୀକ୍ଷା କରି ମ୍ୟାଡ଼ାଲାନଙ୍କ କାନରେ କଣ କହିଲେ । ପରେ ମ୍ୟାଡ଼ାଲାନ୍ ଗମ୍ଭୀର ସ୍ୱରରେ କହିଲେ, 'ମନସିଓର୍ ଇନ୍‌ସପେକ୍ଟର ! ଏହି ନିରପରାଧିନୀ ସ୍ତ୍ରୀକୁ ଛାଡ଼ି ଦିଅନ୍ତୁ ।'

ମେରି ବିସ୍ମିତ ! ଭାବିଲେ - 'ଯେଉଁ ମେୟର୍ ମୋର ସମସ୍ତ ଦୁଃଖ କଷ୍ଟର ମୂଳ, ସେ ମୋର ମୁକ୍ତି ପାଇଁ କହୁଛନ୍ତି ! ଏହା କଣ ସମ୍ଭବ ?' ସେ ବୁଝିଥିଲେ, ମ୍ୟାଡ଼ାଲାନ୍‌ଙ୍କର ଆଜ୍ଞାଧାରରେ ସେ କର୍ମ-ଚ୍ୟୁତ ହୋଇ ପଡ଼ିଛନ୍ତି । ପ୍ରକୃତରେ କିନ୍ତୁ ମ୍ୟାଡ଼ାଲାନ୍ ତାହା ଜାଣି ନଥିଲେ । ଜାଣିଥିଲେ ମେରିଙ୍କର ଏପରି ଦୁରବସ୍ଥା ହୋଇ ନଥାନ୍ତା ।

ଇନ୍‌ସପେକ୍ଟର—ମେୟର୍ ମହାଶୟ, ଆଗେ ଅବସ୍ଥା ଶୁଣନ୍ତୁ, ପରେ ସେପରି ଅନୁରୋଧ କରିବେ ।

ମେୟର୍—ମୁଁ ଘଟଣାସ୍ଥଳ ବାଟେ ଆସିଛି, ଅବସ୍ଥା ମୋର ଅଜ୍ଞାତ ନୁହେ । ବ୍ୟାପାରଟି ଅତି ତୁଚ୍ଛ । ଯୁବତୀଟି ବାସ୍ତବରେ କୌଣସି ଅପରାଧ କରି ନାହିଁ । ଆପଣ ନିରର୍ଥକ ତିଳକୁ ତାଳ କରୁଛନ୍ତି । ଦୟା କରି ଏହାକୁ ଛାଡ଼ି ଦିଅନ୍ତୁ ।

ବର୍ତ୍ତମାନ ମ୍ୟାଡ୍‌ଲିନ୍ ଓ ଜେଭେରୀୟଙ୍କ ମଧ୍ୟରେ ପ୍ରକାଶ୍ୟ ରୂପେ ବିବାଦ ସଙ୍ଘଟିତ ହେଲା । ମେରିଙ୍କି ଜେଲକୁ ପଠାଇବାକୁ ଇନ୍‌ସପେକ୍ଟର ସ୍ଥିର ପ୍ରତିଜ୍ଞ—ତାଙ୍କୁ ମୁକ୍ତ କରିବାକୁ ମେୟର୍ ବଦ୍ଧପରିକର । ଶେଷରେ ଇନ୍‌ସପେକ୍ଟରଙ୍କର ପରାଜୟ ହେଲା । ମ୍ୟାଡ୍‌ଲିନ୍ ନିଜର ଲମ୍ବା କୋଟରେ ମେରିଙ୍କି ଆଚ୍ଛାଦିତ କରି ସ୍କନ୍ଧରେ ଉଠାଇ ବସାଇଲେ । ପ୍ରହରୀମାନେ ମେୟରଙ୍କୁ ଧରିବା ପାଇଁ ଅଗ୍ରସର ହେଲେ । ମ୍ୟାଡ୍‌ଲିନ୍ ରୋଷ କଷାୟିତ ଚକ୍ଷୁରେ ସେମାନଙ୍କ ପ୍ରତି ତୀର୍ଯ୍ୟକ୍ ଦୃଷ୍ଟି ନିକ୍ଷେପ କରି କହିଲେ—'ସାବଧାନ ପ୍ରହରିଗଣ ! ମୋ କାର୍ଯ୍ୟରେ କେହି ବାଧା ଦିଅ ନାହିଁ—ମୁଁ ଅନ୍ୟାୟ କରୁ ନାହିଁ । ତୁମେମାନେ ଏହି ନିଃସ୍ୱ, ନିରାଶ୍ରୟ, ରୁଗ୍ଣ ଯୁବତୀ ଉପରେ ଅତ୍ୟାଚାର କରୁଥିଲ, ମୁଁ ଏହାକୁ ଶୁଶ୍ରୂଷା ପାଇଁ ଚିକିତ୍ସାଳୟକୁ ନେଇ ଯାଉଛି । ଈଶ୍ୱର ମୋର ସହାୟ । ତୁମେମାନେ ଦୁର୍ବୁଦ୍ଧି ବଶତଃ ମୋର ଦେହରେ ହାତ ଦେଲେ, ଏଇ ବଜ୍ର ମୁଷ୍ଟି ଆଘାତରେ ତୁମମାନଙ୍କର ମସ୍ତକ ଚୂର୍ଣ୍ଣ କରି ଦେବ, ସାବଧାନ !' ଏହା କହି ସେ ମେରିଙ୍କି ଧରି ଥାନ ତ୍ୟାଗ କଲେ ।

*

## ହାସପିଟଲ୍‌ରେ ମେରି

ପ୍ରାଗୁକ୍ତ ଘଟଣାର କିଛି ସମୟ ପରେ ଜେଭେରୀୟଙ୍କ ସହିତ ବେଞ୍ଜାମିନଙ୍କର ସାକ୍ଷାତ୍ ହେଲା । ଜେଭେରୀୟ ବେଞ୍ଜାମିନଙ୍କୁ ମେରିକନ୍ଥିକ ଉପୁଲିସ୍ଥ ଯୁବକ

ଆକ୍ରାନ୍ତ ହେବା, ମେରିଙ୍କର ଦଣ୍ଡବିଧାନ ହେବା ଏବଂ ମ୍ୟାଡ଼ାଲିନ ମେରିଙ୍କୁ ସ୍କୁଲରେ ନେଇଯିବା ଇତ୍ୟାଦି ବର୍ଣ୍ଣନ କରି ପ୍ରତିବିଧାନ ପ୍ରାର୍ଥନା କଲେ । ବେଞ୍ଜାମିନଙ୍କର ଚକ୍ଷୁଦ୍ୱୟ ରକ୍ତବର୍ଣ୍ଣ ହୋଇ ଉଠିଲା, କ୍ରୋଧରେ ତାଙ୍କର ସର୍ବାଙ୍ଗ କମ୍ପିତ ହେଲା । କହିଲେ, 'ଜେଭେରିୟୁ, କାଲି ସକାଳେ ମ୍ୟାଡ଼ାଲିନ୍ ଓ ତାଙ୍କର ଉପପତ୍ନୀଙ୍କୁ ଗ୍ରେପ୍ତାର କରିବ ।'

ପରଦିନ ପ୍ରାତଃକାଳରେ ବେଞ୍ଜାମିନ ଓ ଜେଭେରିୟୁ ମ୍ୟାଡ଼ାଲିନ୍ଙ୍କ ଭବନରେ ଯାଇ ପହଞ୍ଚିଲେ । ବେଞ୍ଜାମିନ ପଚାରିଲେ—'ମେୟର୍ ମହାଶୟ, ସେହି ଦଣ୍ଡାଧୀନା ଆପଣଙ୍କର ଉପପତ୍ନୀ ମେରି କେଉଁଠି ଅଛି ?'

ମ୍ୟାଡ଼ାଲିନ—ମନେରଖନ୍ତୁ, ମେରି ବାରବନିତା ନୁହନ୍ତି—ପ୍ରକୃତ ପତିବ୍ରତା । ମୁଁ ବିଶ୍ୱସ୍ତ ସୂତ୍ରରେ ଜାଣି ପାରିଛି, ତାଙ୍କର ଏକ କନ୍ୟା ଅଛି ଏବଂ ତାହାର ଭରଣପୋଷଣ ପାଇଁ ତାଙ୍କୁ କେଶ ଓ ଦନ୍ତ ପର୍ଯ୍ୟନ୍ତ ବିକ୍ରୟ କରିବାକୁ ହୋଇଅଛି । ଆପଣମାନେ ତାଙ୍କ ଚରିତ୍ରରେ ସନ୍ଦିହାନ ହୋଇ ବିଷମ ଭ୍ରମରେ ପଡ଼ିଛନ୍ତି । ବର୍ତ୍ତମାନ ସେ ପୀଡ଼ିତା । ଇଚ୍ଛା କଲେ ଆପଣ ଏଥର ତାଙ୍କୁ ଦେଖି ପାରନ୍ତି ।

ଏହା କହି ଫାଦାର୍ ବେଞ୍ଜାମିନଙ୍କୁ ସଙ୍ଗେ ନେଇ ଚିକିତ୍ସାଳୟରେ ପ୍ରବେଶ କଲେ । ସେତେବେଳେ ପୀଡିତା ମେରି ପଲଙ୍କ ଉପରେ ନିଦ୍ରିତା ଥିଲେ । ବେଞ୍ଜାମିନ ଅତ୍ୟନ୍ତ ଉତ୍କଣ୍ଠା ସହକାରେ ମେରିଙ୍କ ମୁଖ ପ୍ରତି ଦୃଷ୍ଟିପାତ କଲେ । ତନୟାର ମ୍ଳାନକୁସୁମୋପମ ମୁଖମଣ୍ଡଳରୁ ବଜ୍ରାହତ ପ୍ରାୟ ପିତାର ଉତ୍ସୁକ ଦୃଷ୍ଟି ଫେରିଲା ନାହିଁ । ବେଞ୍ଜାମିନ କ୍ଷୀଣ କଣ୍ଠରେ ପଚାରିଲେ, 'ମେୟର୍ ମହାଶୟ, ମୁଁ ବାଳିକା ପାଖକୁ ଯାଇ କିଛି ପ୍ରଶ୍ନ କରି ପାରିବ ?' ଫାଦାର୍ ଉତ୍ତର କଲେ ଯେ, ରୋଗିର ନିଦ୍ରାଭଙ୍ଗ କରିବାକୁ ଚିକିତ୍ସକ ନିଷେଧ କରିଛନ୍ତି ।

ବେଞ୍ଜାମିନ ସ୍ପଷ୍ଟ ବୁଝି ପାରିଲେ, ବାଳିକାଟି ତାଙ୍କର କନ୍ୟା, ମେରି । ତଥାପି ଯଥାସମ୍ଭବ ଭାବ ଗୋପନ ରଖି ମ୍ୟାଡାଲିନଙ୍କୁ ମେରି ସମ୍ବନ୍ଧରେ ଅନେକ କଥା ଜିଜ୍ଞାସା କଲେ । ମ୍ୟାଡ଼ାଲିନ୍ ମେରିଙ୍କ ମୁଖରୁ

ତାଙ୍କର ଜୀବନ ବୃତ୍ତାନ୍ତ ଯେତେଦୂର ଶୁଣିଥିଲେ, ସେ ସମସ୍ତ ବିଷୟ ବିବୃତ କଲେ । ବେଞ୍ଜାମିନ ସଚ୍ଚା ପୁଲିସ କର୍ମଚାରୀ ପରି ଫାଦାର୍-କଥିତ ସକଳ ବୃତ୍ତାନ୍ତ ଲେଖି ନେଇ ଏକ ସପ୍ତାହ ପରେ ପୁନର୍ବାର ମୋକଦ୍ଦମାର ଶୁଣାଣି ହେବ ବୋଲି ଆଦେଶ କଲେ । ଏହା କହି ପଦ-ମଦ-ଗର୍ବିତ ପୁଲିସ-ଚୂଡ଼ାମଣି ସଦଳ ସେଠାରୁ ଅନ୍ତର୍ହିତ ହେଲେ ।

ମ୍ୟାଲ୍କାଲନ୍ ମେରିଙ୍କ ନିକଟରେ ପ୍ରସ୍ତାବ କଲେ ଯେ, ସେ ପିତାଙ୍କୁ ନିଜର ପରିଚୟ ଦେଇ ତାଙ୍କ ଗୃହରେ ରହି ଚିକିତ୍ସିତ ହେଲେ ଭଲ ହେବ । ନୈରାଶ୍ୟ ଓ ବିଷାଦରେ ମେରିଙ୍କର ମସ୍ତିଷ୍କ ବିଘୂର୍ଣ୍ଣିତ ହୋଇ ଉଠିଲା । ସେ ମୃଦୁମନ୍ଦ ସ୍ୱରରେ କହିଲେ, 'ଫାଦାର୍, ଆପଣ ମୋତେ ବିଦାୟ ଦେଲେ ବି ମୁଁ ଆପଣଙ୍କ ନିକଟରୁ ଯିବି ନାହିଁ । ମୁଁ ଆପଣଙ୍କ ପାଖରେ ରହିବି, ଆପଣଙ୍କ ପାଖରେ ହିଁ ମରିବି । ମୋ ସ୍ୱାସ୍ଥ୍ୟ ପ୍ରତି ପିତାଙ୍କର ଆଦର ଆଉ ନାହିଁ । ଦୟାମୟ ପିତଃ ! ମୋର ବର୍ତ୍ତମାନ ଅବସ୍ଥାରେ ମୁଁ କେବଳ ଭବାଦୃଶ ନିଃସଙ୍ଗ ତ୍ୟାଗୀଙ୍କ ନିକଟରୁ ଆଦର ପାଇବି—ପିତାଙ୍କ ନିକଟରୁ ନୁହେ ।'

ମ୍ୟାଲ୍କାଲନଙ୍କ ଚକ୍ଷୁ ଅଶ୍ରୁ ପୂର୍ଣ୍ଣ ହୋଇଗଲା । ମେରିଙ୍କି ପ୍ରବୋଧ ଦେଇ କହିଲେ, 'ତୁମର ଯେପରି କୌଣସି ଅଭାବ ନ ହୁଏ, ତାହାର ବନ୍ଦୋବସ୍ତ କରିଦେବି । ଧୈର୍ଯ୍ୟ ଧର । ତୁମ କନ୍ୟାକୁ ତୁମ ନିକଟକୁ ଆଣି ଦେବି—ତୁମେ ସୁଖରେ ରହିବ ।' ମେରିଙ୍କର ସନ୍ତପ୍ତ ପ୍ରାଣରେ ଶୀତଳ ସାନ୍ତ୍ୱନା ସଲିଳ ପ୍ରବାହିତ ହେଲା ।

*

## ଭୀଷଣ ପ୍ରାୟଶ୍ଚିତ୍ତ

ବେଞ୍ଜାମିନ ପଦ-ଗୌରବ ବଳରେ ଯାହା ଲୁଚାଇ ରଖିଥିଲେ, ସର୍ବିର ଅନ୍ଧକାରରେ ତାହା ପୁଣି ଜାଗି ଉଠିଲା । ସେ ଏକାକୀ ନିଭୃତ ସ୍ଥାନରେ

ବସି ଚିନ୍ତା କଲେ, "ଉଃ ପାପର କି ଭୟାବହ ପରିଣାମ ! ଉପପ୍ଲବ ସମୟରେ ମୁଁ ପ୍ରାଣଦଣ୍ଡାଧୀନ ରମଣୀଗଣଙ୍କର ଶିରୋମୁଣ୍ଡନ କରୁଥିଲି, ମୋ ମେରିର ଶିରୋମୁଣ୍ଡନ ହୋଇଅଛି । ମୁଁ ବିନା ଅପରାଧରେ ଜଣେ ସ୍ତ୍ରୀର ଦାନ୍ତ ଭାଙ୍ଗି ଦେଇଥିଲି, ମୋ ମେରିକୁ ଉଦରାନ୍ନ ପାଇଁ ଦନ୍ତ ବିକ୍ରୟ କରିବାକୁ ହୋଇଅଛି । ମେରି ଯେପରି ମତ୍କୃତ ସକଳ ପାପର ପ୍ରାୟଶ୍ଚିତ୍ତ କରୁଅଛି । କିଏ କହେ ଈଶ୍ୱର ନାହାନ୍ତି ? ମୁଁ ମନେ କରିଥିଲି, ଜଗତରେ ସବୁ ଅଛି—କେବଳ ଈଶ୍ୱର ନାହାନ୍ତି । ବର୍ତ୍ତମାନ ଦେଖୁଛି, ଜଗତରେ କେବଳ ଈଶ୍ୱର ଅଛନ୍ତି—ଆଉ କିଛି ନାହିଁ ।"

ଏପରି ଭାବି ଭାବି ବେଞ୍ଜାମିନ ରାତ୍ରରେ ପୁନର୍ବାର ମ୍ୟାଡ଼ାଲିନଙ୍କ ଭବନରେ ଉପସ୍ଥିତ ହେଲେ । ସେଠାରେ ନିଃଶବ୍ଦ ପଦସଞ୍ଚାରରେ ମେରିଙ୍କର କକ୍ଷଦ୍ୱାରକୁ ଯାଇ ଦେଖିଲେ, ମେରିଙ୍କର ଅବସ୍ଥା ଅତିଶୟ ଶୋଚନୀୟ, ଜଣେ ଚିକିତ୍ସକ ତାଙ୍କ ନିକଟରେ ଉପବିଷ୍ଟ, ଦୁଇଜଣ ଧାତ୍ରୀ ଅତି ସାବଧାନତାପୂର୍ବକ ରୋଗୀର ଶୁଶ୍ରୂଷାରେ ନିଯୁକ୍ତ । ମେରିଙ୍କର ରକ୍ତ-ବମନ ହେଉଅଛି । ଏହା ଦେଖି ଅନୁତପ୍ତ ପିତାର ହୃଦୟ କାନ୍ଦି ଉଠିଲା । ତାଙ୍କ ଚକ୍ଷୁରୁ ଧାର ଧାର ଲୋତକ ଗଡ଼ିବାକୁ ଲାଗିଲା । ସେ ଭାବିଲେ, "ଆହା, ମୋ ପ୍ରାଣର ମେରିକି ଏତେ କଷ୍ଟ କିଏ ଦେଇଛି । ମୁଁ ବହୁଦିନ ଧରି ଯେଉଁ ସମସ୍ତ ପାପାଚରଣ କରିଥିଲି, ପ୍ରାଣଦଣ୍ଡ ତାହା ପକ୍ଷରେ ଯଥେଷ୍ଟ ନୁହେ । ସଂସାରାଶ୍ରମର ସାରଭୂତ ଅପତ୍ୟ-ଧନର ଈଦୃଶ ନିଗ୍ରହ-ଦର୍ଶନହିଁ ବୋଧହୁଏ ମୋ ଭଳି ପାଷଣ୍ଡର ପ୍ରକୃତ ଦଣ୍ଡ । ଏଣୁ ସୁଚତୁର ନେପୋଲିୟନ ମୋତେ ପ୍ରାଣ ଦଣ୍ଡରୁ ଅବ୍ୟାହତି ଦେଇ ଏହି ଭୀଷଣ ପ୍ରାୟଶ୍ଚିତ୍ତର ଭାଗୀ କରି ରଖିଛନ୍ତି ।

"ଯେଉଁ ସମାଜରେ ମୁଁ ଜନ୍ମ ଗ୍ରହଣ କରିଥିଲି, ଯେଉଁ ବର୍ବର ସମାଜ ମୋତେ କେବଳ ରକ୍ତପାତ ଶିକ୍ଷା ଦେଇଥିଲା, ସେହି ଅଭିଶପ୍ତ ସମାଜକୁ ଧିକ୍ ! ପିତୃପାପ ସନ୍ତାନଠାରେ ସଂକ୍ରମିତ ହୁଏ, ଏହି ନୀତିଶିକ୍ଷା ଯଦି ସମାଜ ଦେଇଥାନ୍ତା, ତାହା ହେଲେ ମୁଁ କେବେ ଯେପରି ସ୍ୱେଚ୍ଛାଚାର କରି ମୋ ସର୍ବନାଶ ବରଣ କରି ଆଣି ନଥାନ୍ତି । ହାୟ, ପାପର କି

ଭୟଙ୍କର ପ୍ରସ୍ତାବ ! କି ବିଦ୍ୟା, କି କୁଳମର୍ଯ୍ୟାଦା, କି ଐଶ୍ୱର୍ଯ୍ୟ, କି ଖ୍ୟାତି, ପ୍ରଭୃତି—କିଛି ହେଲେ ତାହାର ଭୟାବହ ପରିଣାମ ରକ୍ଷାକରି ନପାରେ । ମୁଁ ଅର୍ଦ୍ଧ କୋଟୀ ଫ୍ରାଙ୍କ୍‌ର ମାଲିକ, ସମ୍ଭ୍ରାନ୍ତ ବଂଶୀୟ, ଉଚ୍ଚ-ପଦସ୍ଥ ଓ ଲୋକ ସମାଜରେ ବିଚକ୍ଷଣ ବୋଲି ପରିଗଣିତ, ତଥାପି କି ଦୁର୍ଜ୍ଞେୟ ଚକ୍ରରେ ପଡି ମୋ ସନ୍ତାନଟି ଦୁର୍ଗତିର ଅତଳ ଗହ୍ୱରକୁ ଖସୁଅଛି ! ତେବେ ଆଶ୍ୱାସନା ଏତିକି—ମୁଁ ମେରିକୁ ବର୍ତ୍ତମାନ ପୂର୍ବ ପେକ୍ଷା ଅଧିକ ସୁନ୍ଦରୀ ଦେଖି ପାରୁଛି । ସେଇ ମେରିକୁ ମୁଁ ନଦେଖି ରହି ପାରୁଥିଲି, କିନ୍ତୁ ମୋର ଏଇ ମେରିକୁ ଯେତିକି ଦେଖୁଛି ସେତିକି ଦେଖିବାକୁ ଇଚ୍ଛା ହେଉଛି । ଆଗେ ମେରିକୁ ଅନାଇଲେ ଦେଖୁଥିଲି କେବଳ ମେରି—ଆଜି ଦେଖୁଛି ମେରି ଓ ଈଶ୍ୱର ।”

ବେଞ୍ଜାମିନ୍ ମ୍ୟାଡ୍‌ଲିନ-ଭବନରୁ ଚାଲିଯିବା ପରେ ସଙ୍କଳ୍ପ କଲେ, କୌଣସି ଧର୍ମ୍ମ-ମନ୍ଦିରକୁ ଯାଇ ମେରିଙ୍କର ଆରୋଗ୍ୟ ଓ ଦୀର୍ଘଜୀବନ ପ୍ରାର୍ଥନା କରିବେ । କିନ୍ତୁ ସେ କେଉଁ ଗିର୍ଜାକୁ ଯିବେ ? ସକଳ ଗିର୍ଜାର ଲୋକେ ଯେ ତାଙ୍କୁ ନାସ୍ତିକ ବୋଲି ଜାଣନ୍ତି । ସେ ଫ୍ରାନ୍‌ସର ସେହି ଦଳର ଲୋକ, ଯେଉଁମାନେ ଈଶ୍ୱରଙ୍କର ଅସ୍ତିତ୍ୱ ଆଦୌ ସ୍ୱୀକାର କରନ୍ତି ନାହିଁ ।

ଆଜି ବେଞ୍ଜାମିନଙ୍କ ଚରିତ୍ରରେ କି ପରିବର୍ତ୍ତନ ! ସମ୍ଭବତଃ ମଙ୍ଗଳ ପାଇଁ ନୁହେ । ପରିବର୍ତ୍ତନ ମାତ୍ରକେ ଭୟାବହ ବ୍ୟାପାର । ଦୀର୍ଘକାଳ-ବ୍ୟାପୀ ଜ୍ୱର ପରିତ୍ୟାଗ ସମୟରେ ଅନେକ ରୋଗୀଙ୍କର ଭବଲୀଳା ସାଙ୍ଗ ହୋଇଥାଏ କିନା ! ଚରିତ୍ର ତ୍ୟାଗ ବିଷମ ସଙ୍କଟ । ଅତ୍ୟଳ୍ପ ଲୋକହିଁ ଏହି ସଙ୍କଟରେ ପରିତ୍ରାଣ ପାଇଥାନ୍ତି । ରତ୍ନାକର, ଜଗାଇ, ମାଧାଇ ପ୍ରଭୃତି ଯେ ଏହି କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ, ତାହାର କାରଣ ଥିଲା । ସେମାନେ ପୂର୍ବ ପ୍ରବୃତ୍ତିକୁ ସମ୍ପୂର୍ଣ୍ଣ ରୂପେ ବିଦାୟ କରି ହୃଦୟରେ ନବାନୁଭୂତିକୁ ସ୍ଥାନ ଦେଇଥିଲେ । ସେମାନେ ଜଳୌକା ପରି ଏକ ସ୍ଥାନ ଅବଲମ୍ବନ କରି ଅନ୍ୟ ସ୍ଥାନ ଗ୍ରହଣ ନଥିଲେ—ଭେକ ଭଳି ଲମ୍ଫ ଦେଇ ଗନ୍ତବ୍ୟ ସ୍ଥାନରେ ଯାଇ ପଡିଥିଲେ । ହତଭାଗ୍ୟ

ବେଞ୍ଜାମିନଙ୍କର କିନ୍ତୁ ସେପରି ଘଟିଲା ନାହିଁ । ସେ ଅନନ୍ତ ସାମ୍ୟ, ଶାନ୍ତି ଓ ପ୍ରୀତି ପ୍ରତି ଅଗ୍ରସର ହେଲେ ସତ, କିନ୍ତୁ ମୂଢ ସ୍ମୃତି, ଅଭିମାନ ଓ ଘୃଣ୍ୟକୁ କେଉଁଠି ରଖି ଯାଇ ପାରିଲେ ନାହିଁ—ସେମାନଙ୍କୁ ପ୍ରିୟ ବନ୍ଧୁସ୍ୟ ପରି ସଙ୍ଗେ ନେଇ ଗଲେ ।

ସେ କେଉଁ ଚିର୍ଜାକୁ ଯିବେ ? ସେ ବଡ ଲୋକ, ପ୍ରସିଦ୍ଧ ପରମାଣୁ-ବାଦୀ—ତାଙ୍କୁ ଉପାସନା କରିବାର ଦେଖି ଲୋକେ ବା କଣ ମନେ କରିବେ ? ସେ ତ ସାମାନ୍ୟ ପାପାଚରଣ କରି ନାହାନ୍ତି ! ସେ ନିଷ୍ଠୁରତାର କଥା ସ୍ମରଣ କଲେ ସେ ନିଜେ ନିଜକୁ କ୍ଷମା କରି ପାରିବେ ନାହିଁ—ଈଶ୍ୱର କଣ ତାଙ୍କୁ କ୍ଷମା କରିବେ ?

ଯାହା ହେଉ ବେଞ୍ଜାମିନ୍ ଗୋଟାଏ ପରିତ୍ୟକ୍ତ ମନ୍ଦିରକୁ ଗଲେ । ସେଠାରେ କିଛି ବର୍ଷ ପୂର୍ବେ ଧର୍ମଯାଜକ ଜନ୍‌ସନ୍ ନିହତ ହୋଇଥିଲେ । ପ୍ରବାଦ ଥିଲା, ସେ ସମୀପାଗତ ଲୋକମାନଙ୍କ ନିକଟରେ ଜଳଭିକ୍ଷା କରନ୍ତି ଭୟଙ୍କର ପିପାସାରେ ପୀଡ଼ିତ ହୋଇ । ତେବେ ବେଞ୍ଜାମିନଙ୍କର କୌଣସି ଭୟର କାରଣ ନଥିଲା, ସେ ଭୂତ ମାନୁ ନଥିଲେ ।

ଆଶ୍ଚର୍ଯ୍ୟର ବିଷୟ, ସେ ରାତି ବେଞ୍ଜାମିନ୍ ମନ୍ଦିର ମଧ୍ୟରେ ପ୍ରାଣ ତ୍ୟାଗ କଲେ । ସେ ବୋଧହୁଏ ଅନେକ ବିଭୀଷିକା ଦେଖି ଲୀଳା ସାଙ୍ଗ କଲେ । ପ୍ରାତଃକାଳରେ ଯେତେବେଳେ ପୁଲିସ ଦଳ ଆସି ତାଙ୍କର ମୃତ ଦେହ ଦେଖନ୍ତି, ସେତେବେଳେ ପାର୍ଶ୍ୱବର୍ତ୍ତୀ ଲୋକେ ଜଣାଇଲେ ଯେ, ବେଞ୍ଜାମିନଙ୍କ ଆକସ୍ମିକ ମୃତ୍ୟୁ ସମ୍ବନ୍ଧେ ସେମାନେ ବିଶେଷ କିଛି ଜାଣନ୍ତି ନାହିଁ, ତେବେ ସେ ରାତି ବାରଟାରୁ ତିନିଟା ପର୍ଯ୍ୟନ୍ତ ମନ୍ଦିର ଭିତରେ ଅଟ୍ଟହାସ୍ୟ ଧ୍ୱନି, ଏ ଦ୍ୱାରରୁ ସେ ଦ୍ୱାର ପର୍ଯ୍ୟନ୍ତ ଧାଇଁବାର ଶବ୍ଦ ଶୁଣିଥିଲେ ।

ଭୂତ ବିଶ୍ୱାସ ନକଲେ ସୁଦ୍ଧା, ଶରୀରରେ ପଞ୍ଚଭୂତର ଅସ୍ତିତ୍ୱ ଅସ୍ୱୀକାର କରିବାର ଉପାୟ ନାହିଁ । କେବଳ ପାପ ଦୃଷ୍ଟ ହେଲେ, ଦୈବିକ ଭୂତସକଳ ଯେ ସହାର-ମୂର୍ତ୍ତି ଧରି ଉଠନ୍ତି, ଏହା ଏକ ପ୍ରକାର ସ୍ୱତଃସିଦ୍ଧ ।

*

# ସତ୍ୟର ସମ୍ମାନ

ଦିନେ ପ୍ରାତଃକାଳରେ ମ୍ୟାଡ୍ରାଲିନ୍ ସମ୍ବାଦପତ୍ରରେ ପଢ଼ିଲେ, "ଜିନ୍ ନାମରେ ଜଣେ ପ୍ରସିଦ୍ଧ ଚୋର ଅଠର ବର୍ଷ କାରାବାସ କରିଥିଲା, ପରେ ଜେଲ୍ ଭାଙ୍ଗି ବାହାରି ଯାଇଥିଲା । ତଥାପି ଅସତ୍ ସ୍ୱଭାବ ନିମନ୍ତେ କୌଣସି ବିଶପଙ୍କ ଗୃହରେ ଅତିଥି ହୋଇ ନାନାବିଧ ରୌପ୍ୟ ବାସନ ଚୋରି କରିଥିଲା । ନ' ସାତ ବର୍ଷ କାଳ ସେ ନିରୁଦ୍ଦିଷ୍ଟ ହୋଇଥିଲା । ବର୍ତ୍ତମାନ ଜିନ୍ ଧୃତ ହୋଇଅଛି । ଦୁଇ ଦିନ ପରେ 'ଆରା' ନଗରରେ ତାହାର ବିଚାର ହେବ ।"

ଏ ସମ୍ବାଦ ପାଠ କରି ମ୍ୟାଡ୍ରାଲିନ୍ କିୟତ୍କାଳ ଗମ୍ଭୀର ଭାବ ଧାରଣ କଲେ । ନିଜେ ସେ ଜିନ୍ । ପୁଲିସ ଯେଉଁ ଜିନ୍‌କୁ ଧରିଛନ୍ତି, ସେ ଅବଶ୍ୟ ପ୍ରକୃତ ଜିନ୍ ନୁହେଁ । ସେ ଭାବିଲେ, "ମୋ ଲାଗି ଜଣେ ନିରପରାଧ ବ୍ୟକ୍ତି ଦଣ୍ଡ ପାଇବ, ଏହା କଦାପି ବାଞ୍ଛନୀୟ ନୁହେଁ । ମୁଁ ଅବଶ୍ୟ ସତ୍ୟର ଉଦ୍‌ଘାଟନ କରି ସେହି ବ୍ୟକ୍ତିକୁ ମୁକ୍ତିଦାନ କରିବି ।"

ସେ ଜାଣିଥିଲେ ଯେ, ବର୍ତ୍ତମାନ କ୍ଷେତ୍ରରେ ସତ୍ୟର ଉଦ୍‌ଘାଟନ ଓ ମୃତ୍ୟୁ ମଧ୍ୟରେ ଅଧିକ ପ୍ରଭେଦ ନାହିଁ । ସେ ଜେଲ ଛାଡ଼ି ପୁଣି କାରାବାସ କଲେ ଅନେକ ଲୋକଙ୍କର ଦୁର୍ଗତିର ସୀମା ରହିବ ନାହିଁ । ତାଙ୍କର ଦାତବ୍ୟ ଚିକିତ୍ସାଳୟରେ ଶତାଧିକ ନରନାରୀ ଚିକିତ୍ସିତ ହୁଅନ୍ତି । ତାଙ୍କର ଅବୈତନିକ ବିଦ୍ୟାଳୟରେ ଏକ ସହସ୍ର ବାଳକ ବାଳିକା ବିଦ୍ୟାଭ୍ୟାସ କରନ୍ତି । ତାଙ୍କ କାରଖାନାରେ ସହସ୍ରାଧିକ ଲୋକ ପ୍ରତିପାଳିତ ହୁଅନ୍ତି । ଏହା ବ୍ୟତୀତ, ପ୍ରତ୍ୟହ ସମାଗତ ଶତ ଶତ ଦୀନ, ଦୁଃଖୀ ବି ତାଙ୍କଠାରୁ ଯଥେଷ୍ଟ ପରିମାଣରେ ଅନ୍ନ ବସ୍ତ୍ର ପାଆନ୍ତି । ଜଣେ ବିପନ୍ନ ଲୋକର ଉଦ୍ଧାର ସାଧନ କରିବାକୁ ଗଲେ ଏତେ ଲୋକ ଯେ ବିପଦଗ୍ରସ୍ତ ହେବେ, ଏ କଥା ବି ସେ ପୁନଃ ପୁନଃ ବିବେଚନା କରିବାକୁ ଲାଗିଲେ ।

ଯେଉଁ ଦିନ ବିଚାର ହେବାର କଥା ତାହାର ପୂର୍ବ ଦିନ ସକାଳେ ମ୍ୟାଡ୍ରାଲିନ୍ ଧୀର ପଦସଞ୍ଚାରରେ କ୍ରମଶଃ କାରଖାନା ଗୃହ, ବିଦ୍ୟାଳୟ

ଓ ହାସପିଟାଲ୍ ପରିଦର୍ଶନ କଲେ, କାହାକୁ ଅଧିକ କଥା କହିଲେ ନାହିଁ । ରୋଗୀମାନଙ୍କୁ ଦେଖି ଅଳ୍ପ କେତୋଟି ମାତ୍ର ସାନ୍ତ୍ୱନା ବାକ୍ୟ କହିଲେ । ଶେଷ କାତର କଣ୍ଠରେ ପ୍ରାର୍ଥନା କଲେ, 'ଫାଦାର୍, ମିନତି କରୁଛି, ମୋର ମୃତ୍ୟୁ କାଳରେ ମୋ କ୍ରୁସୀକୁ ଆଣି ଦେଖାଇବେ ।'

ମଧ୍ୟାହ୍ନବେଳେ ମ୍ୟାଡ଼ାଲିନ ନିଜ ଗୃହକୁ ଆସି ଲୌହ ସିନ୍ଦୁକରୁ ଛ' ଲକ୍ଷ ଫ୍ରାଙ୍କ୍‌ର ବ୍ୟାଙ୍କ୍ ନୋଟ ବାହାର କଲେ ଏବଂ ତାଙ୍କର ସୁଦୀର୍ଘ କୋଟ୍‌ର ନାନା ସ୍ଥାନରେ ସମାହିତ କଲେ । ପରେ ମ୍ୟାନେଜରଙ୍କୁ ଡାକି କହିଲେ, 'ମୁଁ ଗୋଟାଏ ଗୁରୁତର କାର୍ଯ୍ୟାନୁରୋଧରେ ସ୍ଥାନାନ୍ତରକୁ ଯାଉଛି । ତୁମେ ମୋର ଅନୁପସ୍ଥିତିରେ ମୋର •ପ୍ରତିନିଧି ସ୍ୱରୂପ ସମସ୍ତ କାର୍ଯ୍ୟ ଚଳାଇବ । ଜଗତରେ ଦୟା ବଳି ପର, ସତ୍ୟ ଓ ମିଥ୍ୟା ରହି-ଅଛି । ପ୍ରଥମଟିରେ ଜାଗରିତ ହିଁ ଶିଷ୍ଟମାନଙ୍କ ... ନାହିଁ ।'

ସେ ଦିନ ରାତିବେଳେ ସେହି ସତ୍ୟପ୍ରିୟ ମହାପୁରୁଷ ସ୍ୱହସ୍ତ ଗଠିତ କୀର୍ତ୍ତିସମୂହ ପରିତ୍ୟାଗପୂର୍ବକ, ପୂର୍ବେ ଯେଉଁ କାରାବାସୀ ଥିଲେ, ସତ୍ୟାନୁରୋଧରେ ପୁନର୍ବାର ସେହି କାରାବାସୀ ହେବାକୁ ଆରା ଯାତ୍ରା କଲେ । ପରଦିନ ସନ୍ଧ୍ୟାର ପ୍ରାକ୍‌କାଳରେ ଆରାରେ ପହଞ୍ଚି ସିଧା ଅଦାଲତକୁ ଗଲେ । ସୌଭାଗ୍ୟକ୍ରମେ ଜନ୍‌ର ବିଚାର ଆହୁରି ଚାଲିଥିଲା । ଏହି ମୋକଦ୍ଦମା ଲୋକଙ୍କର କୌତୂହଳ ଉଦ୍ଦୀପିତ କରିଥିଲା । ଅଦାଲତ ପ୍ରାଙ୍ଗଣରେ ଏବଂ ପ୍ରକାଣ୍ଡ ବିଚାର ଗୃହରେ ଏପରି ଜନତା ହୋଇଥିଲା ଯେ, ସୂଚୀ ପକାଇବାକୁ ବି ସ୍ଥାନ ନାହିଁ । ମ୍ୟାଡ଼ାଲିନ୍ ଜଣେକ ଆସେସର୍‌ଙ୍କୁ ଦେଖି ତାଙ୍କୁ ନିଜର ଖଣ୍ଡିଏ ଭିଜିଟିଂ କାର୍ଡ଼ ଦେଇ, ତାହା ଜଜ ସାହେବଙ୍କୁ ଦେବା କାରଣ ଅନୁରୋଧ କଲେ । ଆସେସର୍ ତାଙ୍କର ଅନୁରୋଧ ରକ୍ଷା କଲେ ।

କାର୍ଡ଼ ପାଇବା ମାତ୍ରକେ ଜଜ୍ ସାହେବ ମ୍ୟାଡ଼ାଲିନଙ୍କୁ ଭିତରକୁ ଆଣିବା ପାଇଁ ହୁକୁମ ଦେଲେ । ଆସେସର୍ ତାଙ୍କୁ ଏଜଲାସରେ ନେଇ

ପହଞ୍ଚାଇ ଦେଲେ । ଜଜ୍ ସାହେବ ଫାଦାରଙ୍କର କରମର୍ଦ୍ଦନ କରି ଆସନ ଦେଲେ । ମ୍ୟାଡ୍ରାଲିନଙ୍କୁ ବିଚାରକଗଣ ଭଲ କରି ଜାଣନ୍ତି—ସମସ୍ତେ ତାଙ୍କ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ । ଆଗମନର କାରଣ ପଚାରିବାକୁ ମ୍ୟାଡ୍ରାଲିନ୍ ଜଜଙ୍କୁ କହିଲେ, 'ବର୍ତ୍ତମାନ ମୋକଦ୍ଦମାରେ ମୋର କିଛି ବକ୍ତବ୍ୟ ଅଛି । ମୋକଦ୍ଦମା ଯେପରି ଚାଲିଛି ଚାଲୁ ।'

ବିଚାର ଚାଲିଲା । ବିଚାରକଗଣ ଆସାମିକୁ ଯେଉଁ ସମସ୍ତ କଥା ପ୍ରଶ୍ନ କଲେ, ତାହାର ଉତ୍ତରରେ ସେ 'ନା' ଭିନ୍ନ ଆଉ କିଛି କହିଲା ନାହିଁ । ସେ ଯେପରି ମୂର୍ତ୍ତିମାନ ଅସ୍ୱୀକାର । ଯେଉଁ ଅପରାଧରେ ସେ ଧୃତ ହୋଇଥିଲା, ତାହା ଅସ୍ୱୀକାର ସେ ନକରି କରିବ କଣ ? ସେ ଯେ ପ୍ରକୃତ ଆସାମୀ ଜନ୍ ନୁହେ । ତାହାର ପ୍ରକୃତ ନାମ ଯୋହନ୍ । ଯେତେବେଳେ ପ୍ରକୃତ ଜନ୍ ଅଠର ବର୍ଷ କାଳ ଜେଲରେ ଥିଲା, ସେତେବେଳେ ଯୋହନ୍ ଦେଶାନ୍ତରରେ ବାସ କରୁଥିଲା—ମୋଟ ଉପରେ ପାଞ୍ଚ ବର୍ଷ ସୁଇଜର-ଲଣ୍ଡରେ, ଛ' ବର୍ଷ ଇଟାଲୀରେ ଏବଂ ସାତ ବର୍ଷ ହଲାଣ୍ଡରେ । ପୁଲିସ୍ ଇନ୍‌ସପେକ୍ଟର ଜେଭେରିୟୁ ଜନ୍‌କୁ ଦେଖିଥିଲେ—ସେ ଜନ୍ ବିରୁଦ୍ଧରେ ସାକ୍ଷ୍ୟ ଦେଲେ । ପରେ ସରକାରୀ ଉକିଲ୍ ଅଦାଲତକୁ ନିଜର ବକ୍ତବ୍ୟ ଶୁଣାଇଲେ ।

ଗଭର୍ଣ୍ଣମେଣ୍ଟ ପ୍ଲିଡ଼ରଙ୍କର ମନ୍ତବ୍ୟ ଶୁଣିବା ପରେ ଜଜ୍ ସାହେବ ରାୟ ଲେଖି ବସିଲେ । କେତେକ ସମୟ ବିସ୍ତୃତ ଅଦାଲତ ଗୃହ ସୁପ୍ତପ୍ରି ନଶୀଥବତ୍ ନୀରବ ଓ ଗମ୍ଭୀର ଭାବ ଧାରଣ କଲା । ରାୟ ଲେଖା ଶେଷ ହେବାକ୍ଷଣି ଜଜ୍ ସାହେବ ନିଜର ଦଣ୍ଡ ଶୁଣାଇବାକୁ ଉଦ୍ୟତ ହୋଇଛନ୍ତି, ଏପରି ସମୟରେ ମ୍ୟାଡ୍ରାଲିନ୍ ଉଠି ଗମ୍ଭୀର କଣ୍ଠରେ କହିଲେ, 'ଜଜ୍ ମହୋଦୟ, ଯେଉଁ ଲୋକକୁ ଆପଣ ଜନ୍ ବୋଲି ଦଣ୍ଡ ଦେବାକୁ ଉଦ୍ୟତ ହୋଇଅଛନ୍ତି ସେ ଜନ୍ ନୁହେ—ମୁଁ ପ୍ରକୃତ ଜନ୍ । ତାହାକୁ ଛାଡ଼ି ଦିଅନ୍ତୁ ମୋତେ ଗ୍ରେପ୍ତାର କରନ୍ତୁ ।'

ତାଙ୍କ କଥାରେ ସମବେତ ଲୋକେ ଯେପରି ସ୍ତମ୍ଭିତ ହୋଇଗଲେ, ସେହି ସମୟରେ ଅଦାଲତ ଗୃହରେ ଅଶନିପାତ ହୋଇଥିଲେ ବି ବୋଧ

ହୁଏ ସେପରି ହୋଇ ନଥାନ୍ତେ । ସମସ୍ତେ ବଜ୍ରାହତ ପଥିକ ପରି ନିଶ୍ଚଳ, ନିର୍ବାକ୍ ! ଦୟାମାୟାର ଆଧାର, ସୁବିଖ୍ୟାତ ମେୟର ମ୍ୟାଡ୍ରାଲିନ—ନୀତି-ପରିତ ମ୍ୟାଡ୍ରାଲିନ୍ ସହିତେ କଣ ଡକାଏତ ଜିନ୍ ! ମ୍ୟାଡ୍ରାଲିନ୍ ପୁନର୍ବାର କହିଲେ—'ମୋ ସହିତ ଏ ବ୍ୟକ୍ତିର ଆକୃତିଗତ ସୌସାଦୃଶ୍ୟ ଥିବାରୁ ପୂର୍ବତନ କଏଦୀଗଣ—ଯେଉଁମାନେ ସାକ୍ଷ୍ୟ ଦେଇ ସାରିଛନ୍ତି—ଏହାକୁ ଜିନ୍ ବୋଲି ସନାକ୍ତ କରିଛନ୍ତି । ମୋତେ ଦେଖିଲେ ସେମାନେ ନିଶ୍ଚୟ ଅନ୍ୟ ରୂପ ସାକ୍ଷ୍ୟ ଦେବେ—ସେମାନଙ୍କୁ ପୁଣି ତଲବ କରନ୍ତୁ ।'

ଜଜ୍ ସାହେବ ସେହି ସାକ୍ଷୀମାନଙ୍କୁ ପୁନର୍ବାର ଡ଼ାକି ସେ କଥା ପଚାରିଲେ । ସେମାନେ ଏଜଲାସରେ ଦଣ୍ଡାୟମାନ ମ୍ୟାଡ୍ରାଲିନଙ୍କ ପ୍ରତି ପୁନଃ ପୁନଃ ଦୃଷ୍ଟି ନିକ୍ଷେପ କରି କିଛି ସମୟ ଅଧୋମୁଖ ହୋଇ ରହିଲେ । ପରେ ଜଣକ ପରେ ଜଣେ—ମ୍ୟାଡ୍ରାଲିନଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ—'ହଜୁର ସେ ପ୍ରକୃତ ଜିନ୍ । ତାଙ୍କ ସହିତ ଆମେମାନେ ଦଶ ବାର ବର୍ଷ ଏକତ୍ର କାରାବାସ କରିଥିଲୁଁ ।'

ମ୍ୟାଡ୍ରାଲିନ୍ କହିଲେ, 'ଏଥିରେ ବି ଯଦି ଅଦାଲତ ତୃପ୍ତ ନୁହନ୍ତି, ତାହା ହେଲେ ମୁଁ ଆହୁରି ପ୍ରମାଣ ଦେଉଛି । ପ୍ରଥମ ସାକ୍ଷୀ ମୋର ବନ୍ଧୁ ଇନ୍‌ଗ୍ଲିସ—ତାଙ୍କ ପୃଷ୍ଠରେ ଗୋଟାଏ ଅର୍ଦ୍ଧଚନ୍ଦ୍ରାକୃତି ଚିହ୍ନ ଅଛି । ଦ୍ୱିତୀୟ ସାକ୍ଷୀ ରବର୍ଟ—ତାଙ୍କର ଦକ୍ଷିଣ ବାହୁ ମୂଳରେ 'ନନ୍ଡିଉ' ବାକ୍ୟ ଲିଖିତ ଅଛି ।'

ଅଦାଲତ ଚିହ୍ନ ସବୁ ତନ୍ନ ତନ୍ନ କରି ଦେଖିଲେ—ମ୍ୟାଡ୍ରାଲିନଙ୍କର କଥା ଠିକ୍ ! ମ୍ୟାଡ୍ରାଲିନଙ୍କର ଇଙ୍ଗିତ ଅନୁସାରେ ଯୋହନ୍ କାଠଗଡ଼ାରୁ ବାହାରି, ଧୀର ପଦ ବିକ୍ଷେପରେ ପ୍ରହରୀମାନଙ୍କଠାରୁ କୌଣସି ବାଧା ନପାଇ ପୃଷ୍ଠଭାଗକୁ ବାରମ୍ବାର ନିରୀକ୍ଷଣ କରି ଅଦାଲତ ତ୍ୟାଗ କଲି । ଜଜ୍ ସାହେବଙ୍କଠାରୁ ସାମାନ୍ୟ ଆରଦାଲି ପର୍ଯ୍ୟନ୍ତ ସମସ୍ତେ ଯେପରି ମନ୍ତ୍ରମୁଗ୍ଧ—କାହାରି ମୁଖରେ କଥା ନାହିଁ ।

ମ୍ୟାଡ଼ାଲିନ୍ କହିଲେ—'ବର୍ତ୍ତମାନ ମୋତେ ଗ୍ରେପ୍ତାର କରିବା ନ୍ୟାୟାନୁମୋଦିତ କାର୍ଯ୍ୟ । ମୋତେ କିଏ ଗ୍ରେପ୍ତାର୍ କରିବ କର, ନହେଲେ ଚାଲିଲି—ମୁଁ ବୃଥା ସମୟ ନଷ୍ଟ କରି ପାରିବି ନାହିଁ । ଏହା କହି କହି ସେ ଏଜଲାସରୁ ଅବତରଣ କରି ଧୀର ଓ ଦୃଢ଼ ପଦ ବିକ୍ଷେପରେ ଅଦାଲତର ବହିର୍ଭାଗ ପ୍ରତି ଅଗ୍ରସର ହୋଇଲ ।

ସତ୍ୟପ୍ରିୟତାର କି ପ୍ରଭାବ ! ତାଙ୍କ ଗତିରେ ବାଧା ଦେବା ଦୂରେ ଥାଉ, ସମବେତ ସହସ୍ରାଧିକ ଲୋକଙ୍କ ମଧ୍ୟରେ, କି ସରକାରି କି ବେସରକାରି—କାହାରି ବି ବାଙ୍ ନିଷ୍ପତ୍ତି କରିବାର ସାମର୍ଥ୍ୟ ରହିଲ ନାହିଁ । ସମସ୍ତେ ସ୍ତବ୍ଧ ହୋଇ ତାଙ୍କୁ ପଥ ଛାଡ଼ି ଦେଲେ । ଅଦାଲତ ଭାବିଲେ, ଗ୍ରେପ୍ତାର କରିବା ପୁଲିସର କାର୍ଯ୍ୟ—ଉପସ୍ଥିତ ପୁଲିସ ଭାବିଲେ, ଅଦାଲତ ହୁକୁମ ବ୍ୟତୀତ ଆମେମାନେ ବା କିପରି ଗ୍ରେପ୍ତାର କରିବୁଁ ।

ସତ୍ୟର ସମ୍ମାନ ରହିଲା—ମ୍ୟାଡାଲିନ୍ ଲି କୁ ପ୍ରତ୍ୟାବୃତ୍ତ ହେଲେ ।

*

# ସ୍ୱର୍ଗବାସ ଓ କାରାବାସ

ଆଜି ସେଇ ସଂସାର ଚିନ୍ତାନିର୍ଲିପ୍ତ ଅପାପବିଦ୍ଧ ପବିତ୍ର ଯୁବତୀର ଅକ୍ଷୟ ସ୍ୱର୍ଗବାସର ପ୍ରଥମ ଦିନ ଘୋଷଣା କରି ଦିନମଣି ପୂର୍ବାକାଶରେ ଉଦିତ ହେଲେ । ଆଜି ସେଇ ଅଶେଷ ଦୁଃଖଭାଗିନୀ କନ୍ୟା ସ୍ତ୍ରୀ ଓ ମାତା ମେରିଙ୍କର ଲାୟୁବଦ୍ଧ ପାର୍ଥିବ ଅସ୍ତିତ୍ୱର ଶେଷ ଦିନ । କରୁଣାର୍ଦ୍ରଚେତାଃ ମ୍ୟାଡ଼ାଲିନ୍ ମେରିଙ୍କ ପ୍ରକୋଷ୍ଠରେ ପ୍ରବେଶ କରି, ମୁମୂର୍ଷୁର ଶଯ୍ୟା ପାର୍ଶ୍ୱରେ ଠିଆ ହୋଇ ଅଶ୍ରୁ ସମ୍ବରଣ କରି ପାରିଲେ ନାହିଁ । ମେରିଙ୍କ ଚକ୍ଷୁରୁ ଅଜସ୍ର ଧାରାରେ ଅଶ୍ରୁ ବିସୃଷ୍ଟ ହେବାକୁ ଲାଗିଲା । ଗୁରି ଦିନ ହେଲା ସେ ଫାଦାରଙ୍କୁ ଦେଖି ନଥିଲେ । ତାଙ୍କର ଆକସ୍ମିକ ଅନୁପସ୍ଥିତିରେ ମେରି ଆଶା କରିଥିଲେ

ଯେ, ସେ ନିଷ୍ଟୟ କୁସୀକୁ ଆଣିବାକୁ ଯାଇଛନ୍ତି । ସେ ଅତି କାତର କଣ୍ଠରେ ପଚାରିଲେ, 'ଫାଦାର୍, କୁସୀ ଆସିଛି ?'

ମ୍ୟାଡ଼ାଲିନ୍—କୁସୀ ଆସିଛି, ବ୍ୟସ୍ତ ହୁଅ ନାହିଁ--ଏଇକ୍ଷଣି ତା'କୁ ଦେଖିବ ।

ମେରି—ଦୟାମୟ ପିତଃ, ଆପଣ ଦୀର୍ଘଜୀବୀ ହୁଅନ୍ତୁ । ମୁଁ କୁସୀକି ଦେଖି ମରିବ ।

ପ୍ରାୟ ଏକ ଘଣ୍ଟା ପରେ ଇନ୍‌ସପେକ୍ଟର ଜେଭେର୍ଟଙ୍କ ଦୁଇ ଜଣ କନଷ୍ଟେବଲଙ୍କ ସହିତ ଉକ୍ତ କକ୍ଷଦ୍ୱାରରେ ଉପସ୍ଥିତ ହୋଇ ମ୍ୟାଡ଼ାଲିନଙ୍କୁ ଜଣାଇଲେ, ତାଙ୍କ ନାମରେ ଖଣ୍ଡିଏ ଓୟାରେଣ୍ଟ (Warrant) ଅଛି । ମ୍ୟାଡ଼ାଲିନ୍ ତାଙ୍କ ଆଡ଼କୁ ତୀର୍ଯ୍ୟକ୍ ଦୃଷ୍ଟିରେ ଅନାଇଲେ, କିଛି କହିଲେ ନାହିଁ । ପୁଲିସକୁ ଦେଖି ମେରିଙ୍କର ମୁଖମଣ୍ଡଳ ପାଂଶୁବର୍ଣ୍ଣ ପ୍ରାପ୍ତ ହେଲା, ନୟନ ବିସ୍ଫାରିତ ହେଲା—ସେ ଏକ ଦୃଷ୍ଟିରେ ଚାହିଁ ରହିଲେ । ମୁମୂର୍ଷୁର ହୃଦୟରେ ଭୟ ବା ବିସ୍ମୟ ଜାତ ହୋଇ ପାରେ, ଏହି ଭୟରେ ମ୍ୟାଡ଼ାଲିନ୍ ଇନ୍‌ସପେକ୍ଟର ପ୍ରଭୃତିଙ୍କୁ କକ୍ଷ ବାହାରେ ଠିଆ ହେବାକୁ ଇଙ୍ଗିତ କଲେ । ପରେ ସେ ଧୀରେ ଧୀରେ ଜେଭେର୍ଟଙ୍କ ନିକଟକୁ ଯାଇ କହିଲେ, ମୁଁ ଏହି ଓୟାରେଣ୍ଟ କଥା ଜାଣିଛି, ଧୃତ ହେବାରେ ମୋର କୌଣସି ଆପତ୍ତି ନାହିଁ । ତେବେ କିଛି ସମୟ ମୁଁ ଏଠାରେ ରହିବ --ଏହି ନିରାଶ୍ରୟା ବାଳିକାର ଜୀବନର ଆଉ ଅଳ୍ପ ସମୟ ବାକି ଅଛି ।'

ଜେଭେର୍ଟ କିଛି ନ କହି ଦ୍ୱାର ଛାଡ଼ି ଠିଆ ହେଲେ । ଏକ ଘଣ୍ଟା ପରେ ସେ ପୁନର୍ବାର ଦ୍ୱାରଦେଶକୁ ଆସି ମ୍ୟାଡ଼ାଲିନ୍‌ଙ୍କୁ ଶୀଘ୍ର ବାହାରିବାକୁ ଆଦେଶ କଲେ । ସଙ୍ଗେ ସଙ୍ଗେ ଗାଡ଼ି ଆଣିବା ପାଇଁ ତାଙ୍କ ପ୍ରହରୀମାନଙ୍କୁ ହୁକୁମ ଦେଲେ । ସେତେବେଳେ ମେରିଙ୍କର ଶ୍ୱାସକଷ୍ଟ ଉପସ୍ଥିତ ହୋଇଥିଲା । ସେ ବାରମ୍ବାର ଚକ୍ଷୁମୁଦ୍ରିତ କରି ଖୋଲୁଥିଲେ ଏବଂ ପ୍ରଶ୍ନ କରୁଥିଲେ —'କୁସୀ ଆସିଛି ?' ନାର୍ସମାନେ 'ହଁ ଆସିଛି' ବୋଲି କହୁଥିଲେ । 'କୁସୀକି ମୋ କୋଳରେ ଦିଅ' ବୋଲି ମେରି ବାହୁ ପ୍ରସାରଣ କରି ଥରକୁ ଥର ଚକ୍ଷୁ ବୁଜୁଥିଲେ । ତଥାପି ଇନ୍‌ସପେକ୍ଟରଙ୍କ ହୁକୁମରେ କନଷ୍ଟେବଲ

ଦୁଇ ଜଣ କାଳାନ୍ତକ ଯମ ତୁଲ୍ୟ ମ୍ୟାଡ଼ାଲିନଙ୍କର ଦୁଇ ପାର୍ଶ୍ୱରେ ଯାଇ ଠିଆ ହେଲେ । ମ୍ୟାଡ଼ାଲିନ୍ ସେମାନଙ୍କୁ ଆଉ ଟିକଏ ଅପେକ୍ଷା କରିବାକୁ କହିଲେ । ଦୁହେଁ ସେ କଥା ମାନିଲେ ନାହିଁ, ସେଠାରେ ଠିଆ ହୋଇ ରହିଲେ । ମ୍ୟାଡ଼ାଲିନ୍ ଅଗ୍ନିଶର୍ମା ହୋଇ ଉଠିଲେ, ରୋଷକଷାୟିତ ନେତ୍ରରେ ଗାତ୍ରୋତ୍ଥାନ କରି ପୁନଃ ପୁନଃ ଭୀଷଣ ମୁଷ୍ଟି ପ୍ରୟୋଗରେ ସେମାନଙ୍କୁ ପ୍ରକୋଷ୍ଠରୁ ବାହାର କରି ଦେଲେ । ଏ କାଣ୍ଡ ଦେଖି ଜେଭେରାୟୁ ସ୍ତବ୍ଧ ଓ ବିସ୍ମିତ ହୋଇଗଲେ । ସେ ଓ କନଷ୍ଟେବଲମାନେ ମନେ ମନେ ମ୍ୟାଡ଼ାଲିନଙ୍କୁ ଗାଳିଦେଇ ସଡ଼କରେ ଯାଇ ଠିଆହେଲେ ।

ବନର ଫୁଲ ବନରେହିଁ ଶୁଖି ପଡ଼ିଲା । ଦଶ ମିନିଟ ମଧ୍ୟରେ ମେରି ସ୍ୱର୍ଗକୁ ଚାଲିଗଲେ । ସେଇ ଅପାର୍ଥିବ ଶ୍ରୀ ସୌନ୍ଦର୍ଯ୍ୟରାଶି ପୁନର୍ବାର ଅପାର୍ଥିବତାରେ ବିଲୀନ ହୋଇଗଲା । ଅଶେଷ ରିପୁକୁଳ-କଳକଳାୟିତ ସଂସାର-କ୍ଷେତ୍ରର ସେଇ ବୀର ରମଣୀ ସମ୍ମୁଖ ସମରରେ ଦେହପାତ କଲେ —ସେଇ ନିଦାରୁଣ ଝଞ୍ଜା-ବାୟୁ-ବିତାଡ଼ିତ କ୍ଷୁଦ୍ର ତରଣୀ ଭବ ଜଳଧିର ଉତ୍ତାଳ ତରଙ୍ଗମାଳା ଅତିକ୍ରମ କରି ନୀରବରେ ଶାନ୍ତିର ଉପକୂଳରେ ଯାଇ ଲାଗିଲା । ସେଇ ମୂର୍ତ୍ତିମନ୍ତ ମାତୃତ୍ୱ ଜଗତରେ ମାତୃପରାୟଣତା, କୃତଜ୍ଞତା, ସାଧୁତା, ସରଳତା, ସ୍ନେହଶୀଳତା ଓ ସହିଷ୍ଣୁତାର ସୁନ୍ଦର ଆଦର୍ଶ ରଖି ଲୋକ-ଲୋଚନର ଅନ୍ତରାଳରେ ଲୁଚିଗଲେ ।

ମ୍ୟାଡ଼ାଲିନ୍ ମେରିଙ୍କ ସମାଧିର ସମସ୍ତ ବନ୍ଦୋବସ୍ତ କରି ପୁଲିସ ନିକଟକୁ ଗଲେ । ଶକଟ ପ୍ରସ୍ତୁତ ଥିଲା । ସେ ଗାଡ଼ି ଚଢ଼ିଲେ । କନଷ୍ଟେବଲ ଦୁହେଁ ଶକଟ ଭିତରେ ବସିଲେ—ସେମାନଙ୍କର ଆଶଙ୍କା, ସେମାନେ ବଜ୍ରମୁଷ୍ଟିରୁ ଦୂରରେ ରହିଲେ । ଜେଭେରାୟୁ ମ୍ୟାଡ଼ାଲିନଙ୍କ ସମ୍ମୁଖରେ ଅତି ସଂଯତ ଓ ଉତ୍କଣ୍ଠିତ ଭାବରେ ବସିଲେ—ଉଗ୍ରପ୍ରକୃତି ଶିକ୍ଷକ ସମ୍ମୁଖରେ ଅପରାଧୀ ଛାତ୍ର ପରି, କ୍ଷୁଧାର୍ତ୍ତ ବ୍ୟାଘ୍ର ସମ୍ମୁଖରେ ସନ୍ତ୍ରସ୍ତ ହରିଣ ଶିଶୁ ପରି ।

ମ୍ୟାଡ଼ାଲିନଙ୍କ କଥା ଅନୁସାରେ ବ୍ୟାଙ୍କ୍ ନିକଟରେ ଗାଡ଼ି ବନ୍ଦ କରାଗଲା । ସେ ଗାଡ଼ିରୁ ଓହ୍ଲାଇ ଇନ୍ସପେକ୍ଟରଙ୍କୁ କହିଲେ—'ଆପଣ

ଉଦବଗ୍ନ ହେବେ ନାହିଁ । ବ୍ୟାଙ୍କରେ ମୋର କିଛି ପ୍ରୟୋଜନ ଅଛି । ଶୀଘ୍ର ଫେରିବି ।'

ମ୍ୟାଡାଲିନ୍ ବ୍ୟାଙ୍କ୍‌ରେ ମାତୃହୀନା କୁସୀର ନାମରେ ତିରିଶି ସହସ୍ର ଫ୍ରାଙ୍କ୍ ଅମାନତ କରି, ପୁନର୍ବାର ଶକଟାରୋହଣ କଲେ । କିଛି ଦିନ ପରେ ସେ କଠିନ ପରିଶ୍ରମ ସହ କାରାବାସ କରିବାକୁ ଲାଗିଲେ ।

*

## ପିତୃଭକ୍ତର ପୁରସ୍କାର

ଦଶ ଦିନ କାରାବାସ କରି ମ୍ୟାଡାଲିନ୍ ଜେଲ ଭାଙ୍ଗିବାର ଚେଷ୍ଟା କରିବାକୁ ଲାଗିଲେ । ତନ୍ନ ତନ୍ନ ପରୀକ୍ଷା କରି ଦେଖିଲେ ଯେ, ନିଜ ପ୍ରକୋଷ୍ଠରୁ ସହଜରେ ବାହାର ହୋଇ ପାରିବେ; କିନ୍ତୁ ଚତୁର୍ଦ୍ଦିଗସ୍ଥ ଉଚ୍ଚ ପ୍ରାଚୀର ଉଲ୍ଲଙ୍ଘନ କରିବା ଏକାବେଳକେ ଅସମ୍ଭବ । ଶେଷରେ ସଙ୍କଳ୍ପ କଲେ, ସେ ଜେଲଦ୍ୱାର ବାଟେହିଁ ବାହାର ହେବେ ।

ଦିନେ ଅର୍ଦ୍ଧରାତ୍ରି ସମୟରେ ତାହାଙ୍କୁ ଜେଲଫାଟକ ନିକଟରେ ଦେଖି ସେଠାରେ ପ୍ରହରୀ ବିସ୍ମିତ ହୋଇ ତାଙ୍କର ପରିଚୟ ଜାଣିଲା । ହଠାତ୍ ନିଜର ପରିଚୟ ନ ଦେଇ ମ୍ୟାଡାଲିନ୍ ପ୍ରହରୀକୁ ପ୍ରଶ୍ନ କଲେ— 'ଆପଣଙ୍କର ମାସିକ ବେତନ କେତେ ଜାଣି ପାରିବି ?'

ପ୍ରହରୀ—ପଞ୍ଚାଶ ଫ୍ରାଙ୍କ୍ । ଆପଣ ଏହା ପଚାରିଲେ କାହିଁକି ?

ମ୍ୟାଡାଲିନ୍—ଆପଣ ଏହି ସ୍ଥାନରେ ଦଶ ବର୍ଷରେ ଯେତେ ଉପାର୍ଜ୍ଜନ କରିବେ, ଏହି ମୁହୂର୍ତ୍ତରେ ଯଦି ତାହା ପ୍ରାପ୍ତ ହୁଅନ୍ତି, ତାହା ହେଲେ ଦ୍ୱାର ଖୋଲି ଦେଇ ପାରିବେ ?

ପ୍ରହରୀ କିୟତ୍‌କାଳ ମୌନାବଲମ୍ବନ କରି, ପଚାରିଲା 'ଆପଣ କଣ ଛଦ୍ମବେଶୀ ରାଜପୁରୁଷ ?'

ମ୍ୟାଡ଼ାଲିନ୍—ମୁଁ ସାମାନ୍ୟ କପୋତଗୀ ମାତ୍ର—ରାଜପ୍ରତୁଷ ନୁହେ । ଆଶା କରେ ମୋର ଅନୁରୋଧ ରକ୍ଷା କରିବେ ।

ଦ୍ୱାରପାଳ ନୀରବ ଭାବରେ ପ୍ରସନ୍ନ ମୁଖରେ ହସ୍ତ ପ୍ରସାରଣ କଲା । ସେହିକ୍ଷଣି ଦୁ' ସହସ୍ର ଫ୍ରାଙ୍କର ଦୁ' ଖଣ୍ଡ ବ୍ୟାଙ୍କ୍ ନୋଟ ତାହାର କରକମଳରେ ଅର୍ପିତ ହେଲା । ସଙ୍ଗେ ସଙ୍ଗେ ଜେଲ ଦ୍ୱାର ଉଦ୍‌ଘାଟିତ ହେଲା । ମ୍ୟାଡ଼ାଲିନ୍ ଆଉ ଥରେ ସ୍ୱାଧୀନ ସମୀର-ସେବନ-ସୁଖାନୁଭବ କଲେ ।

ଅନନ୍ତର ମ୍ୟାଡ଼ାଲିନ୍ ଫ୍ରାନ୍‌ସର ଅଧିକାଂଶ ସ୍ଥାନ ପରିଭ୍ରମଣ କରି, ପାରିସରେ ପୁଲିସ-ଉପଦ୍ରବ କମ୍ ନ ହେଲେହେଁ, ସେଠାରେ ଲୁଚି ରହିବାର ସ୍ଥାନ ଥିବାରୁ ଜୀବନର ଅବଶିଷ୍ଟ କେତେକ ଦିନ ନିରୁଦ୍‌ବେଗରେ କଟାଇବା ଉଦ୍ଦେଶ୍ୟରେ ପାରି ଯାତ୍ରା କଲେ ।

ଦୁର୍ଗମ ପଲ୍ଲୀ ପ୍ରାନ୍ତର ଓ ଅରଣ୍ୟ ମାର୍ଗରେ ତାଙ୍କୁ ଆସିବାକୁ ହେଲା । ଦିନେ ମଧ୍ୟାହ୍ନ ବେଳେ ସେ ଗ୍ରାଣ୍ଡିନ ପଲ୍ଲୀରେ ଉପନୀତ ହେଲେ । ସେଠାରେ ଦେଖିଲେ ପଥପାର୍ଶ୍ୱରେ ନିଭୃତ ଶ୍ମଶାନରେ ଜଣେ ଶୀର୍ଣ୍ଣକାୟ ଯୁବକ ଧ୍ୟାନନିମଗ୍ନ ଭାବରେ ଉପବିଷ୍ଟ ଅଛି । ମ୍ୟାଡ଼ାଲିନ୍ କୌତୂହଳାକ୍ରାନ୍ତ ହୋଇ ଯୁବକ ନିକଟକୁ ଗଲେ । ଯୁବକର ଚକ୍ଷୁଦ୍ୱୟ ନିମୀଳିତ, ମସ୍ତକ ଆନମିତ, ଜାନୁ ଭୂମି-ସଂଲଗ୍ନ ଏବଂ ଅଞ୍ଜଳି ପ୍ରଫୁଲ୍ଲ କୁସୁମଦାମରେ ପରିପୂର୍ଣ୍ଣ । ସେହି ମୁନିଜନୋଚିତ ମନୋହର ମୂର୍ତ୍ତିଦର୍ଶନରେ ଅନ୍ତଃସ୍ଥ ପ୍ରୀତିଲାଭ କରି, ମନ୍ତ୍ରମୁଗ୍ଧ ମ୍ୟାଡ଼ାଲିନ୍ ସମୀପବର୍ତ୍ତୀ ସମାଧି-ସ୍ତମ୍ଭ ଅନ୍ତରାଳରେ ଲୁଚି ରହିଲେ । ଯୁବକ କିଛିକ୍ଷଣ ପରେ ଚକ୍ଷୁରୁନ୍ମୀଳନ କରି 'ପିତଃ' —ଏପରି ସମ୍ବୋଧନ ମୁଖେ ସ୍ୱର୍ଗତ ପିତାଙ୍କ ଉଦ୍ଦେଶ୍ୟରେ ମର୍ମସ୍ପର୍ଶୀ ସ୍ତବ କରିବାକୁ ଲାଗିଲେ ।

ପରେ ମ୍ୟାଡ଼ାଲିନ୍ ପୂର୍ବାପେକ୍ଷା ଅଧିକତର ପ୍ରୀତ ହୋଇ ଯୁବକର ପଛେ ପଛେ ଅଲକ୍ଷ୍ୟ ଭାବରେ ରହିଲେ ଏବଂ ପାରିରେ ଉତ୍ତୀର୍ଣ୍ଣ

ହୋଇ ଗୁପ୍ତଭାବରେ ତାହାକୁ ପିତୃଭକ୍ତିର ଉପଯୁକ୍ତ ପୁରସ୍କାର ଦେବାକୁ ସ୍ଥିର କଲେ ।

ଏହି ପିତୃପରାୟଣ ଯୁବକହିଁ ଯେ ମେରୟୁସ୍, ପାଠକପାଠିକାମାନେ ତାହା ବୁଝି ପାରିଥିବେ । ମ୍ୟାଡ଼ାଲିନ୍ ପୁରସ୍କାର ଦାନର ପ୍ରସ୍ତାବ କରିବାରୁ, ମେରୟୁସ୍ କିପରି ତାହା ପ୍ରତ୍ୟାଖ୍ୟାନ କରିଥିଲେ, ତାହା ବି ପାଠକ-ପାଠିକାଗଣଙ୍କର ମନେ ଥିବ । ସେତେବେଳେ ଫାଦର୍ ମ୍ୟାଡ଼ାଲିନ୍ ମେରିୟୁସଙ୍କୁ ଯେଉଁ କଥା କହି ବିଦାୟ ନେଇଥିଲେ, ସେହି କଥା ଅନୁସାରେ, ସେହି ପୁରସ୍କାରର ଅନୁସନ୍ଧାନ ପାଇଁ ସେ ଅନନ୍ତ ବଳମଧ୍ୟେ ଚାଷ ପରିତ୍ୟାଗ କଲେ । ସେହି ପୁରସ୍କାର ଯେ କଣ ତାହା ସେହି ପରହିତ-ବ୍ରତ ମହାତ୍ମାହିଁ ଜାଣନ୍ତି ।

*

# ହତଭାଗିନୀ

ମଣ୍ଟ ଫାର୍ମେଲୋର ସରାଇରେ କୁସୀ ବହୁ ଦୁଃଖ କଷ୍ଟରେ ବାସ କରୁଥିଲା । ତାହାର ସ୍ନେହମୟୀ ଜନନୀ ନିଜେ ଅନାହାରରେ ରହି ଯଥା ନିୟମରେ ତାହାର ଭରଣପୋଷଣ ସକାଶେ ଟଙ୍କା ପଠାଉଥିଲେ, ତଥାପି ତାହାର ଅନଶନକ୍ଳିଷ୍ଟଭାବ ଘୁଞ୍ଚି ନଥିଲା । ତାହାର ଦରିଦ୍ରା ମାତା ନିଜର କେଶଗୁଚ୍ଛ ବିକି କରି ଯଥା ସମୟରେ ତାହାର ଶୀତବସ୍ତ୍ର ପ୍ରେରଣ କରିଥିଲେ, ତଥାପି ତାହାର ଅଙ୍ଗରେ ଶତ ଗ୍ରନ୍ଥିମୟ ଛିନ୍ନ ମଳିନ ବସନ ଭିନ୍ନ ଆଉ କିଛି ନାହିଁ । ହାୟ, ସଂସାର କି ଭୟଙ୍କର ସ୍ଥାନ ! ମେରି ପ୍ରାଣାନ୍ତ ପରିଶ୍ରମ କରି କୁସୀ ପାଇଁ ଯେଉଁ ଟଙ୍କା ପଠାନ୍ତି, ଥେନାର୍ଡ଼ିୟାରର ପୁରୁଷ ଓ ସ୍ତ୍ରୀ ତାହା ଆତ୍ମସାତ୍ କରି ଦିଅନ୍ତି ଏବଂ ଯେଉଁ ସକଳ ବ୍ୟକ୍ତି ସରାଇକୁ ଆସି ଭୋଜନ କରନ୍ତି ସେମାନଙ୍କର ଭୁକ୍ତାବଶିଷ୍ଟ ମାତ୍ର କୁସୀକୁ ଖାଇବାକୁ ଦିଅନ୍ତି । ମେରି କୁସୀ ପାଇଁ ଯେଉଁ ଜାମା, ଜୋତା ପଠାନ୍ତି ସେ ସବୁ ଥେନାର୍ଡ଼ିୟାରର କନ୍ୟା ଲୁସୀଦ୍ୱାରା ବ୍ୟବହୃତ ହୁଏ—କୁସୀ ସେହି ଦୁର୍ଦ୍ଦଶାରେ । କୁସୀକୁ ପ୍ରାୟ ଅନାହାରରେ ଦିବାରାତ୍ର ଖଟିବାକୁ ହୁଏ,

ଦାସୀର କାମ କରିବାକୁ ହୁଏ । କେବେ କୌଣସି କାର୍ଯ୍ୟରେ ଅବହେଳା କଲେ, ନିଦାରୁଣ ପ୍ରହାର ସହ୍ୟ କରିବାକୁ ହେଉଥିଲା ।

ମଣ୍ଟ ଫାର୍ମିଲେରେ ଜଳର ବିଶେଷ ସୁବିଧା ନାହିଁ । ନିକଟରେ କୌଣସି ନଦୀ ବା କୃତ୍ରିମ ଜଳାଶୟ ନାହିଁ—ଦୂରରେ ଯେଉଁ କେତୋଟି ଝରଣା ଅଛି, ସେଠାରୁ ଜଳଆଣି ଅଧିବାସୀମାନେ କଷ୍ଟରେ ଚଳନ୍ତି । ସରାଇର ଅର୍ଦ୍ଧ ମାଇଲ ଦୂରରେ ଗୋଟିଏ ଝରଣା – କୁସୀକୁ ପ୍ରତ୍ୟହ ସେଠାରୁ ଜଳ ଆଣିବାକୁ ହୁଏ । ସକାଳ ପାଞ୍ଚଟାଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ବାରମ୍ବାର ଜଳ ଆଣିବାରେ ସେଇ ଅର୍ଦ୍ଧାଶନା ବାଳିକାର କେତେ ଯେ କାୟିକକ୍ଲେଶ ହେବାର କଥା ତାହା ସହଜରେ ଅନୁମେୟ ।

ଅନ୍ଧକାରମୟୀ ରଜନୀ, ଦାରୁଣ ଶୀତ, କୁସୀ ଟେବିଲ ତଳେ ବସି କଂପୁଅଛି, ଏହି ସମୟରେ ସେ ଥେନାଡିୟାର କର୍ତ୍ତୃକ ଆହୂତ ହେଲା । ଜଣେ ଅତିଥିଙ୍କର ଅଶ୍ୱ ପାଇଁ ଗୋଟିଏ ବକେଟ୍ ଜଳ ଆଣିବାକୁ ଆଦିଷ୍ଟ ହେଲା । ସରାଇଓସ୍ତେଲା ତାହାକୁ କିଛି ପଇସା ଦେଇ ହୁକୁମ ଦେଲା— 'ଜଳ ନେଇ ଆସିବାବେଳେ ଦୋକାନରୁ ଖଣ୍ଡିଏ ରୁଟି ନେଇ ଆସିବୁ ।' କୁସୀ ପଇସାତକ ପକେଟରେ ରଖି ଠିଆ ହୋଇ ରହିଲା । ଅନ୍ଧକାରରେ, ଅର୍ଦ୍ଧ ମାଇଲ ଦୂରରେ, ପର୍ବତ ପାର୍ଶ୍ୱରେ, ବନ ଜଙ୍ଗଲ ମଧ୍ୟରେ ସେହି ନିଭୃତ ନିର୍ଝରରୁ ଜଳ ଆଣିବା ତାହା ପକ୍ଷରେ ଯେ କିପରି ଭୟଙ୍କର ବ୍ୟାପାର ତାହା କେବଳ ତାହାର ଅନ୍ତରାତ୍ମା ବୁଝେ । ସେହି ଅର୍ଦ୍ଧମାଇଲ ପଥରେ କେଉଁଠାରେ ଜନ ପ୍ରାଣୀର ସମାଗମ ନାହିଁ, ପରନ୍ତୁ ଉଭୟ ପାର୍ଶ୍ୱସ୍ଥ ଅତ୍ୟୁଚ୍ଚ ପାଦପାବଳୀ ଦିବାକୁ ସନ୍ଧ୍ୟା, ସନ୍ଧ୍ୟାକୁ ନିଶୀଥ ଏବଂ ନିଶୀଥକୁ ସାକ୍ଷାତ୍ ଅନ୍ଧତମିସ୍ର କରି ରଖିଅଛି ।

କୁସୀକୁ ନିଶ୍ଚଳ ଭାବରେ ଠିଆ ହେବାର ଦେଖି ଥେନାଡିୟାର ବେତ ଆଣିବାକୁ ଅଗ୍ରସର ହେଲା । କୁସୀ ଆଉ ବିଳମ୍ବ କଲା ନାହିଁ— ପ୍ରହାର ଭୟରେ ବକେଟ ଧରି ଚାଲିଲା । ସେ ଭାବିଲା, ଅନ୍ଧକାର ହେଉ, ବ୍ୟାଘ୍ର ହେଉ, ଭୂତ ହେଉ, କେହି ତାହା ପ୍ରତି ସରାଇଓସ୍ତାଣୀ ଅପେକ୍ଷା ଅଧିକ ନିଷ୍ଠୁର ହୋଇ ନପାରେ । ଦୁରନ୍ତ ଶୀତ ଯୋଗେ ରାସ୍ତାରେ

ଲୋକ-ନଥିଲେ । କେତେ ବେଳେ ଶରୀର ରୋମାଞ୍ଚିତ, କେତେବେଳେ ବିଦ୍ୟୁତ୍‌ବେଗରେ ଧମନୀରେ ପ୍ରବାହିତ, କେତେବେଳେ ବା ପ୍ରାଣ କଣ୍ଠାଗତ, ଏହି ଭାବରେ କୁସୀ ନର୍ଝର ନିକଟସ୍ଥ ପ୍ରକାଣ୍ଡ ଅଶ୍ୱତ୍ଥ ମୂଳରେ ଯାଇ ଉପସ୍ଥିତ ହେଲା । ବାଲ୍‌ଟିରେ ମସ୍ତକ ନତ କରି ଜଳ ଭରିବା କରିବା ବେଳେ ତାହାର ପକେଟରୁ ରୁଟିର ପଇସା ସବୁ ଖସି ଝରଣାରେ ପଡିଗଲା, ସେ ତାହା ଜାଣି ପାରିଲା ନାହିଁ, ବାଲ୍‌ଟି ପୂର୍ଣ୍ଣ ହେଲା । ଶୀତରେ କୁସୀର ହସ୍ତ ପଦ ଅବଶ ହୋଇ ଯାଉଛି, ସେ ବାଲ୍‌ଟି ଉଠାଇ ନପାରି ହତାଶାର ଚରମ ସୀମାରେ ପହଞ୍ଚିଛି, ଏପରି ସମୟରେ ଫାଦାର୍ ମ୍ୟାଡ୍‌ଲିନ୍ ଆସି ସେଠାରେ ଉପସ୍ଥିତ ହେଲେ ।

ମ୍ୟାଡ୍‌ଲିନ୍ ସମସ୍ତ ଦିବସ ପୁଲିସ ଭୟରେ ପର୍ବତର ଅପର-ପାର୍ଶ୍ୱରେ କୌଣସି ନିର୍ଜନ ସ୍ଥାନରେ ଲୁଚି ରହିଥିଲେ । ତାଙ୍କ ଗମନା-ଗମନର ସମୟ ଥିଲା ରାତି । ସନ୍ଧ୍ୟା ଉତ୍ତୀର୍ଣ୍ଣ ହେବାରୁ ସେ ମଣ୍ଟ ଫାର୍ମିଲ୍‌କୁ ଗମନ କଲେ । ସେ ଯଥାସମ୍ଭବ ନିକଟବର୍ତ୍ତୀ ହୋଇ ଦେଖିଲେ, ଜଣେ ବାଳିକା ଜଳପୂର୍ଣ୍ଣ ବାଲ୍‌ଟି ଉଠାଇ ନପାରି କଷ୍ଟ ଭୋଗ କରୁଛି । ସୁତରାଂ ସେ ଅଭୟ ପ୍ରଦାନ କରି କହିଲେ, 'ଭୟ ନାହିଁ, ଭୟ ନାହିଁ— ମୁଁ ଉଠାଇ ଦେଉଛି ।'

କୁସୀ ଚମକି ପଡିଲା, ଅଥଚ ତାହାର ପ୍ରାଣରେ କିଞ୍ଚିତ୍ ଭରସାର ସଞ୍ଚାର ହେଲା । ସେ କ୍ଷୀଣ ଓ କମ୍ପିତ କଣ୍ଠରେ ପଚାରିଲା—'ମହାଶୟ, ଆପଣଙ୍କର ପରିଚୟ ପାଇପାରିବି ?''

ମ୍ୟାଡ୍‌ଲିନ୍—ମୁଁ ଜଣେ ପଥିକ, ପାରିସରୁ ଆସିଛି । ଏଠାରେ କୌଣସି ସରାଇରେ ରାତ୍ରି ଯାପନ କରିବି ମନେ କରୁଛି । ମୋତେ ଗୋଟାଏ ସରାଇ ଦେଖାଇ ଦିଅ, ମୁଁ ତୁମର ଜଳପୂର୍ଣ୍ଣ ବାଲ୍‌ଟି ନେଇ ତୁମ ସଙ୍ଗେ ଯିବି । ଦୁହିଁଙ୍କର ଉପକାର ହେବ ।

କୁସୀ—ଆପଣଙ୍କର କଷ୍ଟ ହେବ । ଆପଣ ଯଦି ଦୟା କରି ବାଲ୍‌ଟିଟି ମୋ ପିଠି ଉପରକୁ ଉଠାଇ ଦିଅନ୍ତୁ, ତାହା ହେଲେ ମୁଁ

ଅନାୟାସରେ ନେଇଯାଇ ପାରିବ । ଆପଣ ଆମ ସରାଇକୁ ଆସିବେ ?

ମ୍ୟାଡ଼ାଲିନ୍—ତୁମ ସରାଇର ନାମ ?

କୁସୀ—ଥେନାଡ଼ିୟାର ।

ମ୍ୟାଡ଼ାଲିନ୍ ଏଥିପୂର୍ବେ ଅନୁମାନ କରିଥିଲେ, ବାଳିକାଟି ମେରିଙ୍କର ! (ଏତେ ରାତିରେ ଏହି ଭୟଙ୍କର ସ୍ଥାନରେ ଏକାକିନୀ ଜଳ ଆଣିବାକୁ ଆସିଛି, ଏଣୁ ଏହି ବାଳିକାଟି ସେହି ହତଭାଗିନୀ ଚିରଦୁଃଖିନୀ ମେରିଙ୍କର ନହୋଇ ଆଉ କାହାର ହୋଇ ପାରେ ।) 'ଥେନାଡ଼ିୟାର' ନାମ ଶୁଣି ତାଙ୍କର ଅନୁମାନ ସତ୍ୟରେ ପର୍ଯ୍ୟବସିତ ହେଲା । ପଚାରିଲେ, 'ତୁମର ନାମ କଣ ?'

କୁସୀ—ମୋର ନାମ ହେନରିୟଟା କୁସୀ ହେବାର୍ଟ ।

ବର୍ତ୍ତମାନ ଅନାଥର ନାଥ ଅଶ୍ରୁ ସମ୍ବରଣ କରି ପାରିଲେ ନାହିଁ । କହିଲେ, 'ମା, ଅଳ୍ପ ସମୟ ପୂର୍ବେ ମୁଁ ଝରଣା ନିକଟରେ ଗୋଟିଏ ବାଘ ଦେଖିଥିଲି, ସେ ଏଠାକୁ ଗଡ଼ିପାରେ । ଆସ, ତୁମକୁ କାଖେଇ ଚାଲିବି ।' କୁସୀ ଆପତ୍ତି କଲା ନାହିଁ । ଫାଦାର୍ ଦକ୍ଷିଣ ହସ୍ତରେ ବକେଟ୍ ଓ ବାମ କୋଡ଼ରେ କୁସୀକୁ ଧରି ସରାଇରେ ଉପସ୍ଥିତ ହେଲେ । କୁସୀ ବକେଟ୍ ନେଇ ଭିତରକୁ ଗଲା ଏବଂ ଆଗନ୍ତୁକଙ୍କର ଆଗମନ ସମ୍ବାଦ ଜଣାଇଲା ।

ମ୍ୟାଡ଼ାଲିନ୍ ଭିତରେ ଯାଇ ବସିବା ସଙ୍ଗେ ସଙ୍ଗେ ଥେନାଡ଼ିୟାର ସ୍ତ୍ରୀ ତାଙ୍କ ନିକଟରେ ଆସି ଠିଆ ହେଲା । ତାଙ୍କର ବେଶଭୂଷା ଦେଖି ସ୍ତ୍ରୀ ମନେ କଲା, ସେ ନିତାନ୍ତ ଦରିଦ୍ର । ସରାଇରେ ପ୍ରତ୍ୟେକ ଭଦ୍ରବ୍ୟକ୍ତିକୁ ଦିନକ ସକାଶେ ଦୁଇ ବା ତିନି ଫ୍ରାଙ୍କ୍ ଦେବାକୁ ହୁଏ । କିନ୍ତୁ ଥେନାଡ଼ିୟାର ସ୍ତ୍ରୀ ମ୍ୟାଡ଼ାଲିନଙ୍କୁ କହିଲା—'ତୁମେ ଏକ ଦିନ ସକାଶେ ଚାଳିଶି ଫ୍ରାଙ୍କ୍ ଦେବାକୁ ପ୍ରସ୍ତୁତ ଅଛ ?' ଅତିଥି ତାହା ଦେବାକୁ ସ୍ୱୀକୃତ ହେଲେ । ସ୍ତ୍ରୀର ମନରେ ଅନ୍ୟ ଏକ ସନ୍ଦେହ ଜାତ ହେଲା । ସେ ଦୈନିକ ଭଡ଼ାର ଅର୍ଦ୍ଧାଂଶ ଅଗ୍ରୀମ ଲୋଡ଼ିଲା । ମ୍ୟାଡ଼ାଲିନ୍ ସେହିକ୍ଷଣି କୋଡ଼ିଏ ଫ୍ରାଙ୍କ୍

ଦେଲେ । ସ୍ତ୍ରୀ ଆହ୍ଲାଦରେ ଅଧୀର ହୋଇ ତାହାର ସ୍ୱାମୀ ନିକଟକୁ ଧାଇଁଗଲା ।

ଅଳ୍ପ ସମୟ ପରେ ସରାଇଓ୍ୱାଲା ଖାଦ୍ୟ ଦ୍ରବ୍ୟାଦି ନେଇ ଆସିଲା, ମ୍ୟାଡ୍‌ଲାଇନ୍ ଆହାରରେ ବସିଲେ । ସ୍ତ୍ରୀ କୁସୀକୁ ପଚାରିଲା—'ରୁଟି କାହିଁ ?' କୁସୀର ରୁଟି କଥା ଆଦୌ ମନେ ନଥିଲା । ସେ ପକେଟରେ ଭୟ-କମ୍ପିତ ହାତ ଭରତି କରି ଦେଖିଲା, ପଇସା ନାହିଁ । ସେ ଭୟରେ ଥରି ଅବାକ୍ ହୋଇ ଠିଆ ହେଲା । ବିନା ଅପରାଧରେ ତ ରକ୍ଷା ନାହିଁ, ଏବେ ବାସ୍ତବିକ ଅପରାଧ ହୋଇଅଛି— କୁସୀକୁ ରକ୍ଷା କରୁଛି କିଏ ? ଥେନାଡ୍‌ୟାର-ସ୍ତ୍ରୀ ଚାବୁକ ଧରି କୁସୀ ପ୍ରତି ଅଗ୍ରସର ହେବାକ୍ଷଣି, ମ୍ୟାଡ୍‌ଲାଇନ୍ କହିଲେ—'ମିସେସ୍ ଥେନାଡ୍‌ୟାର, ହେଇଟି ଦେଖ, ତଳେ ପଡ଼ିଯାଇଛି ପଇସା—ମତେ ଗୃହ ଦେବା ବେଳେ ବାଳିକାର ପକେଟରୁ ଖସି ପଡ଼ିଛି ।'

ସ୍ତ୍ରୀ ଆଲୁଅ ନେଇ ଦେଖିଲା, ଟେବଲ ତଳେ ଗୋଟିଏ ରୌପ୍ୟ ମୁଦ୍ରା ପଡ଼ିଛି । ତାହା ଉଠାଇ ନେଲା; ତେବେ କୁସୀକୁ ପ୍ରହାର କରି ପାରିଲା ନାହିଁ ବୋଲି ବିଶେଷ ଦୁଃଖିତ ହେଲା ।

*

# ନିରାଶ୍ରୟାର ଆଶ୍ରୟ

ପରଦିନ ପ୍ରତ୍ୟୁଷରେ ମ୍ୟାଡ୍‌ଲାଇନ୍ କଥା ପ୍ରସଙ୍ଗରେ କୁସୀକୁ ତାହାର ପିତାମାତାଙ୍କ ନାମ, କାର୍ଯ୍ୟ ଇତ୍ୟାଦି ସମ୍ବନ୍ଧରେ ପଚାରିଲେ । କୁସୀ ଲୋତକଭରା ଚକ୍ଷୁରେ କହିଲା—'ପିତାଙ୍କର ନାମ କର୍ଣ୍ଣେଲ ଜୋସେଫ୍ ହେବାର୍ଟ, ମାତାଙ୍କର ନାମ ମେରି ଫ୍ୟାଣ୍ଟାଇନ୍ ହେବାର୍ଟ । ମୋ ମା ମରିଯାଇଛନ୍ତି । ସେ ଲି ନଗରରେ ଥିଲେ । ମୃତ୍ୟୁ ସମୟରେ ତାଙ୍କ ସଙ୍ଗେ ମୋର ଦେଖା ହୋଇ ପାରି ନାହିଁ । ପିତା 'ଓ୍ୱାଟର୍‌ଲୁ'ରେ ମରିଥିଲେ, ତାଙ୍କୁ ମୁଁ ଦେଖି ନାହିଁ । ମା ମୋ ଖର୍ଚ୍ଚ ପାଇଁ ଟଙ୍କା ପଠାଉଥିଲେ । ତାଙ୍କ

ମୃତ୍ୟୁ ପରେ ଗୃର ପାଞ୍ଚ ମାସ ହେଲା ଲି-ବ୍ୟାଙ୍କ୍‌ରୁ ମାସିକ ଦଶ ଫ୍ରାଙ୍କ୍ ଆସୁଛି—କିଏ ପଠାନ୍ତି କହି ପାରିବ ନାହିଁ ।'

ମ୍ୟାଡ଼ାଲିନ୍—ତୁମକୁ ଅନ୍ୟ କୌଣସି ସ୍ଥାନକୁ ନେଇଯିବାକୁ ଇଚ୍ଛା କରେ, ଆସିବ ?

ପ୍ରଶ୍ନ ଶୁଣି କୁସୀ ଯେପରି ହତବୁଦ୍ଧି ହୋଇ ପଡ଼ିଲା । ଜଗତରେ ଯେ ତାହା ପାଇଁ ଅନ୍ୟ କୌଣସି ସ୍ଥାନ ଅଛି, ଏ ବିଶ୍ବାସ ତାହାର ନଥିଲା । ସେ କିଛି ଉତ୍ତର ନଦେଇ ଅଧୋବଦନରେ ରହିଲା, ଅତିଥିଙ୍କ ମୁଖ ପ୍ରତି ଅନାଇଁ ରହିଲା । ତାହାର ଅଧର ପ୍ରାନ୍ତରେ ମୃଦୁହାସ୍ୟ-ରେଖା ପ୍ରତିଭାତ ହେଲା, ସଙ୍ଗେ ସଙ୍ଗେ ତାହାର ଏକ ବିନ୍ଦୁ ଅଶ୍ରୁପାତ ହେଲା । ଥେନାଡ଼ିଆର ସେତେବେଳେ ସେଠାରେ ଆସି ପହଞ୍ଚିବାରୁ କୁସୀ ସେଠାରୁ ଗୃଲିଗଲା ।

ମୃତ୍ୟୁ କାଳରେ ମେରି ଫାଦାର୍ ମ୍ୟାଡ଼ାଲିନଙ୍କୁ ତନୟାର ଅଭି-ଭାବକ ନିଯୁକ୍ତ କରିଥିଲେ । ଫାଦାର୍ ଥେନାଡ଼ିଆରକୁ ଉକ୍ତ ପତ୍ର ଦେଖାଇ କହିଲେ, 'ମୁଁ କୁସୀକୁ ନେଇଯିବି । ଦେଖୁଛି ତାହା ଲାଗି ତୁମମାନଙ୍କର ଘୋର କଷ୍ଟ ଅସୁବିଧା ହେଉଅଛି ।

ଥେନାଡ଼ିଆର—ଆପଣ କୁସୀକୁ ନେଇପାରନ୍ତି । କିନ୍ତୁ ତାହାର ଚିକିତ୍ସା ପାଇଁ ଡାକ୍ତରର ଯେଉଁ ସମସ୍ତ ବିଲ୍ ଅଛି ତାହା ଆପଣଙ୍କୁ ପରିଶୋଧ କରିବାକୁ ହେବ ।

ତାହା ଦେବାକୁ ମ୍ୟାଡାଲିନ୍ ସ୍ୱୀକୃତ ହେବାରୁ ସରାଇସ୍ୱାମୀ କେତୋଟି ବିଲ୍ ତାଙ୍କୁ ଦେଲା । ଫାଦାର୍ ଅମ୍ଳାନବଦନରେ ବିଲ୍‌ଗୁଡ଼ିକ ନେଇ ତାହାର ମୂଲ୍ୟ ପାଞ୍ଚଶତ ଫ୍ରାଙ୍କ୍ ଦେଲେ । ଥେନାଡିଆର ଓ ତାହାର ସ୍ତ୍ରୀ ଅତିଶୟ ଆହ୍ଲାଦରେ ଅଧୀର ହୋଇ ଅତିଥିଙ୍କୁ ଧନ୍ୟବାଦ ପ୍ରଦାନ କଲେ । ମ୍ୟାଡ଼ାଲିନ୍ କୁସୀକୁ ସଙ୍ଗେ ନେଇ ପ୍ରସ୍ଥାନ କଲେ ।

ସେ ଦୁହେଁ ସରାଇ ତ୍ୟାଗ କରିବାର କିଛି ସମୟ ପରେ ଥେନାଡିଆର ଭାବିଲା ଯେ, ସେ କୁସୀ ପାଇଁ ଏକ ହଜାର ଫ୍ରାଙ୍କ୍ ଲୋଡ଼ିଥିଲେ ମଧ୍ୟ ଅତିଥି

ଅକାତର ଭାବରେ ଦେଇଥାନ୍ତେ । ସେ ଅଧିକ କିଛି ଆଦାୟ କରିବା ଆଶାରେ ମ୍ୟାଡାଲିନଙ୍କ ଅନୁସନ୍ଧାନରେ ବହିର୍ଗତ ହେଲା ।

ମଧ୍ୟାହ୍ନବେଳେ ମ୍ୟାଡ଼ାଲିନ୍ ଶାନ୍ତିଦୂରକରଣାର୍ଥ କୁସୀ ସହିତ ଗୋଟିଏ ବୃକ୍ଷମୂଳରେ ବସିଛନ୍ତି, ଏହି ସମୟରେ ଥେନାର୍ଡିୟାର ସେଠାରେ ପହଞ୍ଚିଲା । କୁସୀର ପ୍ରାଣ ଯେପରି ଉଡିଯିବା ଉପକ୍ରମ—ସେ ଭୟ ଓ ବିସ୍ମୟରେ ଅଭିଭୂତ ହୋଇଗଲା । ଫାଦାର୍ ତାହାକୁ ଅଭୟ ଦେଲେ । ଥେନାର୍ଡିୟାର୍ ପକେଟରୁ ଆଉ କେତେଗୋଟି ବିଲ୍ ବାହାର କରି ମ୍ୟାଡାଲିନଙ୍କୁ ଦେଖାଇ କହିଲା—'ଭୁଲି ଯାଇଥିଲି, ଆପଣଙ୍କୁ ଏ ସମସ୍ତ ବିଲ୍‌ର ଟଙ୍କା ଦେବାକୁ ପଡିବ ।'

ମ୍ୟାଡ଼ାଲିନ୍—କୁସୀଠାରୁ ଶୁଣିଲି, ତାହା ପାଇଁ ଆପଣ ଦିନେ ହେଲେ ଚିକିତ୍ସକ ଡ଼ାକି ନାହାନ୍ତି କିମ୍ବା ଔଷଧ କିଣି ନାହାନ୍ତି । ତଥାପି ଆପଣଙ୍କ କଥା ଅନୁସାରେ ପାଞ୍ଚ ଶତ ଫ୍ରାଙ୍କ୍ ଦେଇଅଛି । ଆଉ ବିରକ୍ତ କରନ୍ତୁନା—ଆଉ କିଛି ଦେବ ନାହିଁ ।

ତାଙ୍କର ହସ୍ତସ୍ଥିତ ଲଠି ଓ ଆରକ୍ତ ଚକ୍ଷୁ ଦେଖି ଥେନାର୍ଡିୟାର୍ ଅନ୍ତରିକ୍ତ ଭୟରେ ଗୃହକୁ ଫେରିଲା ।

ବହୁ କଷ୍ଟରେ ମ୍ୟାଡ଼ାଲିନ୍ ପାରିସରେ ଉପନୀତ ହେଲେ । ନଗର ଉପକଣ୍ଠରେ ଅନେକ ବ୍ୟାରେକ୍ ଥିଲା, ସେଠାରେ ଅନେକ ଲୋକ ଏକତ୍ର ବାସ କରନ୍ତି । ଗୋଟାଏ ସୁଦୀର୍ଘ ଦ୍ୱିତଳ ଗୃହରେ ନ୍ୟୂନାଧିକ ତିନି ଶତ କାମରା ଥିଲା । ମ୍ୟାଡ଼ାଲିନ ଗୋଟିଏ କାମରା ଭଡ଼ା କରି ରହିଲେ । ସେ ସେଠାରେ କଥଞ୍ଚିତ୍ ନିରୁଦ୍‌ବେଗ ଭାବରେ ବାସ କରିପାରିଥାନ୍ତେ । କିନ୍ତୁ ସେହି ସମୟରେ ଇନ୍‌ସପେକ୍ଟର ଜେଭେରିୟ ପାରିସକୁ ବଦଳି ହୋଇ ଆସିଥିବାରୁ ମ୍ୟାଡ଼ାଲିନ୍ ସତର୍କତା ଅବଲମ୍ବନ କରିବାକୁ ବାଧ୍ୟ ହେଲେ । ସେ ଦିବାଭାଗରେ ଆଦୌ ବାହାର ହୁଅନ୍ତି ନାହିଁ ।

ଦିନେ ରାତ୍ରି ପ୍ରାୟ ଏଗାରଟାବେଳେ ବ୍ୟାରାକର ସମସ୍ତ ଲୋକ ନିଦ୍ରିତ, ମ୍ୟାଡ଼ାଲିନ୍ ମାତ୍ର ଜାଗ୍ରତ ଅଛନ୍ତି, ଏପରି ସମୟରେ ତିନି ଜଣ

ଲୋକ ସେଠାରେ ଧୀରପଦ ବିକ୍ଷେପରେ ପ୍ରବେଶ କଲେ । ସେମାନଙ୍କୁ ଦେଖି ମ୍ୟାଡ଼ାଲିନ୍ ବୁଝିଲେ, ସେମାନେ ପୁଲିସ । ସେ ଅତି ଶୀଘ୍ର ଗୃହରେ ପ୍ରବିଷ୍ଟ ହୋଇ ଦ୍ୱାରରୁଦ୍ଧ କରିଦେଲେ ଏବଂ ନିଦ୍ରିତା କୁସୀକୁ କୋଳରେ ଧରି ପୃଷ୍ଠଭାଗର ଝରକା ବାଟେ ଲମ୍ଫ ଦେଲେ, ପରେ ଦ୍ରୁତପଦରେ ଉଦ୍ୟାନବାଟେ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ।

ଏଣେ କନେଷ୍ଟବଲଦ୍ୱୟ ଦ୍ୱାର ଭାଙ୍ଗି ଦେଖିଲେ ଘର ଭିତରେ କେହି ନାହିଁ । ସେ ସ୍ଥିର କଲେ ଆସାମୀ କଟିକ ବାଟେ ଡେଇଁ ବନରେ ପ୍ରବେଶ କରିଛି । ସେ ସାନୁଚର ଅରଣ୍ୟର ଅପର ପାର୍ଶ୍ୱସ୍ଥ ସୀନ୍ ନଦୀର ସେତୁ ଦିଗରେ ଅଗ୍ରସର ହେଲେ । ମ୍ୟାଡ଼ାଲିନ୍ ସେତୁ ପାର ହେଲେ । ନିଶୀଥ— ରାସ୍ତା ଲୋକଶୂନ୍ୟ । ଦୁରନ୍ତ ଶୀତରେ ଅବିଶ୍ରାନ୍ତ ତୁଷାରପାତ ହେଉଥିଲା । ମ୍ୟାଡ଼ାଲିନ୍ ପଶ୍ଚାଦ୍‌ଭାଗକୁ ନିରୀକ୍ଷଣ କରି ସେତୁର ଅନ୍ୟ ପ୍ରାନ୍ତରେ ପୁଲିସ ଦ୍ୱିମୂର୍ତ୍ତିଙ୍କୁ ଦେଖିଲେ । ଦ୍ରୁତତର ଗତି ବ୍ୟତୀତ ଗତ୍ୟନ୍ତର ନାହିଁ । ତେବେ ତାଙ୍କ କୋଳରେ କୁସୀ ପ୍ରଗାଢ଼ ନିଦ୍ରାଭିଭୂତା । ସେତୁ ମାର୍ଗ ବରାବର ସରଳରେଖାକ୍ରମେ ଦୁଇ ତିନି ମାଇଲ ବ୍ୟାପ୍ତ । ବର୍ତ୍ତମାନ ସେ ଯେଉଁ ସ୍ଥାନରେ ପହଞ୍ଚିଥିଲେ, ତାହାର ଉଭୟ ପାର୍ଶ୍ୱରେ ଦୁଇଟି ଗ୍ଳେଟ ଗଳି ଥିଲା । ସେ ପୁଲିସକୁ ଫାଙ୍କି ଦେବା ପାଇଁ ଗଳି ପଥରେ ନଯାଇ ରାଜମାର୍ଗରେ ସରଳରେଖାକ୍ରମେ ଚାଲିଲେ । ଶତ୍ରୁମାନେ କିନ୍ତୁ ପ୍ରତାରିତ ହେଲେ ନାହିଁ । ସେମାନେ ସେହି ରାସ୍ତାର କଥା ଭଲ କରି ଜାଣିଥିଲେ । ସେମାନେ ଜାଣନ୍ତି, ଦୁଇଟି ସ୍ୱ ପଥ ଅଦୂରରେ ପୁନର୍ବାର ସେହି ରାଜପଥରେ ମିଳିତ ହୋଇଅଛି । ସେମାନେ ପୂର୍ବାପେକ୍ଷା ଅଧିକତର ବେଗରେ ସେଇ ପଥରେହିଁ ଅଗ୍ରସର ହେଲେ ।

ମ୍ୟାଡ଼ାଲିନ୍ ପୁଣି ପଛକୁ ମୁଖ ବୁଲାଇ ଦେଖିଲେ, ଶତ୍ରୁଦ୍ୱୟ ନିକଟବର୍ତ୍ତୀ ହୋଇଅଛନ୍ତି । ସେଠାରେ ଲୁଚିବାର ସ୍ଥାନ ନଥିଲା, ସମସ୍ତ ଗୃହର ଦ୍ୱାର ବନ୍ଦ ଥିଲା । ସେ ଅତି ଚଞ୍ଚଳ କୁସୀକୁ କୋମର-ବନ୍ଧଦ୍ୱାରା ପିଠିରେ ବାନ୍ଧି ହସ୍ତଦ୍ୱୟ ମୁକ୍ତ କରି ନେଲେ । ବର୍ତ୍ତମାନ ଶତ୍ରୁମାନଙ୍କର ପଦଶବ୍ଦ ଶ୍ରୁତ ହେଲା । ଆଉ ଉପାୟ ନାହିଁ । ମ୍ୟାଡ଼ାଲିନ୍ ବାମ ପାର୍ଶ୍ୱରେ ଗୋଟାଏ ପ୍ରାଚୀର ଦେହରେ କେତୋଟି ଦଉଡ଼ି ଝୁଲୁ ଥିବାର ଦେଖିଲେ ।

ତନ୍ନତ ଧରି ଉପରକୁ ଉଠିଲେ, ପ୍ରାଚୀର ଅପର ପାର୍ଶ୍ୱକୁ ଡେଇଁ ଗୋଟିଏ ସୁରମ୍ୟ ଉଦ୍ୟାନରେ ଅବତରଣ କଲେ । ସେଠାରେ ଶତ୍ରୁମାନେ ଉପସ୍ଥିତ ହୋଇ ଆସାମୀଙ୍କୁ ଆଉ ଦେଖିପାରିଲେ ନାହିଁ । ସୁତରାଂ ସେମାନେ ହତାଶ ହୋଇ ବର୍ଦ୍ଧିତ ମୂଲ୍ୟରେ ଗୃହକୁ ଫେରିଲେ ।

ଉଦ୍ୟାନର ଏକ ଭାଗରେ ପ୍ରଶସ୍ତ ଭବନ, ଅନ୍ୟ ଭାଗଟି ନାନା ଜାତିର ବୃକ୍ଷ ବଲ୍ଲରୀରେ ସୁଶୋଭିତ । ମଧ୍ୟ ମଧ୍ୟରେ ଲତାକୁଞ୍ଜ, ପୁଷ୍ପ ବାଟିକା, ଶ୍ୟାମାୟମାନ ଔଷଧିସମୂହ । କୁସୀ ଶୀତରେ ଅତ୍ୟନ୍ତ କାତର ହୋଇ ପଡ଼ିଥିଲା, ତାହାର ଅଙ୍ଗ ପ୍ରତ୍ୟଙ୍ଗ ଅବଶ, ବାକ୍‌ସ୍ଫୂର୍ତ୍ତି ହେଉ ନଥିଲା, ଶ୍ୱାସ ପ୍ରଶ୍ୱାସ ନଥିଲା—ତାହାର ଦେହରୁ କ୍ଷଣିକ ପାଇଁ ଜୀବନର ସମସ୍ତ ଲକ୍ଷଣ ତିରୋହିତ ହୋଇଥିଲା । ମ୍ୟାଡ଼ାଲିନ୍ ଆଶ୍ରୟ ଲାଭର ଚେଷ୍ଟା କଲେ— ଆଶ୍ରୟ ମିଳିଲା ନାହିଁ । ବର୍ତ୍ତମାନ ଅଗ୍ନି ଭିନ୍ନ ଅନ୍ୟ ଉପାୟ ନାହିଁ । ସେ ନିଜର ଦୀର୍ଘ ଅଙ୍ଗରେଖାରେ କୁସୀକୁ ଆଚ୍ଛାଦିତ କରି ଲତା-ଗୃହ ମଧ୍ୟରେ ରଖି ଜାଳେଣି କାଷ୍ଠ ଖୋଜିବାକୁ ଯାଉଛନ୍ତି । ଏହି ସମୟରେ ଆଗରେ ଜଣେ ଲୋକକୁ ଦେଖିଲେ । ତାହାକୁ ଟିକିଏ ନିଆଁ ମାଗିଲେ । ତାଙ୍କର କଣ୍ଠ ସ୍ୱର ଶୁଣି ଲୋକଟି ତାଙ୍କୁ ଚିହ୍ନି ପାରିଲା । କହିଲା—'ମୁଁ ମୋ ଆଗରେ ବୋଧହୁଏ ଫାଦାର୍ ମ୍ୟାଡ଼ାଲିନଙ୍କୁ ଦେଖୁଅଛି ।'

ମ୍ୟାଡ଼ାଲିନ୍—ଅବଶ୍ୟ । ମୁଁ ତୁମକୁ କିନ୍ତୁ ଚିହ୍ନି ପାରୁ ନାହିଁ । ଅଗ୍ନି ଅଭାବରେ ମୋ ବାଳିକାଟି ମୃତପ୍ରାୟ ହୋଇ ପଡ଼ିଛି, ଶୀଘ୍ର ତାହାର ବ୍ୟବସ୍ଥା କରିବା ଆବଶ୍ୟକ ।

ଲୋକଟି କହିଲା—'ବାଳିକାକୁ ମୋ ଘରକୁ ନେଇ ଆସନ୍ତୁ, ସେଇଠି ନିଆଁ ଅଛି । ଫାଦାର୍, ଆପଣ ଯାହାର ଉପକାର କରନ୍ତି, ତାହାକୁ ଶୀଘ୍ର ଭୁଲି ଯାଆନ୍ତି । ଆପଣ ମୋତେ ଥରେ ଲ ନଗରରେ ଶକଟ ତଳୁ ରକ୍ଷା କରି ନଥିଲେ ? ମୁଁ ସେ ଦିନୁ ମୋକ୍ତାର ଛାଡ଼ି ଏହି ବାଳିକା ବିଦ୍ୟାଳୟରେ ଦ୍ୱାରପାଳ କାର୍ଯ୍ୟ କରୁଅଛି ।'

ଏହି ଦ୍ୱାରବାନ ଥିଲେ ଲ ନଗରରେ ଜଣେ ମୋକ୍ତାର । ତାଙ୍କର ଗୋଟିଏ ଘୋଡ଼ା-ଗାଡି ଥିଲା—ଯାହାର ସମସ୍ତ ଚକର ପରିଧି ଅସମାନ ।

ଡାହାଣ ଦିଗର ଚକର ପରିଧି ଅପେକ୍ଷାକୃତ କମ୍ ଥିବାରୁ ଶକଟ ସରଳ ରେଖାରେ ଚଳୁ ନଥିଲା । ବିଶେଷତଃ ଉର୍ଦ୍ଧ୍ୱଭାଗଟି ଅଧିକ ଭାରୀ ଥିବାରୁ ଗାଡ଼ିଟି ଯେପରି ଯୌବନଭାରାକ୍ରାନ୍ତ ନବଢ଼-ନିତମ୍ବିନୀ ପରି ହଲି ଦୋହଲି ଯାଉଥିଲା । ଦିନେ ସାୟାହ୍ନରେ ମୋକ୍ତାର ମହାଶୟ ଉକ୍ତ ଶକଟରେ ଯିବାବେଳେ, ଶକଟଟି ହଠାତ୍ ରାସ୍ତାର ଧାରରେ ଗୋଟାଏ କର୍ଦ୍ଦମମୟ ସ୍ଥାନରେ ଖସି ପଡ଼ିଲା । ମୋକ୍ତାର ଗାଡ଼ି ତଳେ ଚିତ୍ ହୋଇ ପଡ଼ିଲେ । ଲୌହ ଅକ୍ଷଦଣ୍ଡ ତାଙ୍କ ବକ୍ଷଃସ୍ଥଳରେ ସଂଲଗ୍ନ ହେଲା, ଗାଡ଼ିର ଚକ କର୍ଦ୍ଦମରେ ଯେତିକି ବସିବାକୁ ଲାଗିଲା, ତାଙ୍କର ହୃତ୍‌ପିଣ୍ଡ ସେତିକି ଗୁରୁତର ଚାପ ପାଇବାକୁ ଲାଗିଲା । ସେ ଚିତ୍କାର କରିବାକୁ ଲାଗିଲେ । ଚତୁର୍ଦ୍ଦିଗରୁ ଅନେକ ଲୋକ ଦଉଡ଼ି ଆସି ସେଠାରେ ଜୁଣ୍ଡ ହେଲେ ସତ୍ୟ, କିନ୍ତୁ ତାଙ୍କୁ କିପରି ଉଦ୍ଧାର କରିବାକୁ ହେବ କେହି ବୁଝି ପାରିଲେ ନାହିଁ—ସ୍ତମ୍ଭିତ ହୋଇ ଠିଆ ହେଲେ । ସେତିକିବେଳେ ମ୍ୟାଡ଼ାଲିନ୍ ଦୈବାତ୍ ସେଠାରେ ଉପସ୍ଥିତ ହେଲେ । ଏ ଘଟଣା ଦେଖିବାକ୍ଷଣି ସେ ନିଜର ଲମ୍ବା କୋଟ ଦେହରୁ ବାହାର କରିଦେଲେ । ଗାଡ଼ି ତଳେ ମୁହଁ ମାଡି ଶୋଇ ଦୁଇ ହାତରେ କାଦୁଅ ବାହାର କରି ବୁକରେ ଭରା ଦେଇ ଘୁଞ୍ଚି ଅକ୍ଷଦଣ୍ଡ ତଳେ ମୁଣ୍ଡ ଗଳାଇଲେ । କ୍ରମେ ସ୍କନ୍ଧ ଓ ମେରୁଦଣ୍ଡ ଅକ୍ଷଦଣ୍ଡ ତଳେ ରଖି ଅପୂର୍ବ ପିଠି ବଳରେ ଗାଡ଼ିଟି ଉଠାଇ ମୋକ୍ତାରଙ୍କୁ ଟାଣି ବାହାର କଲେ ।

ମ୍ୟାଡ଼ାଲିନ୍ ଉଲ୍ଲିଖିତ ଘଟଣା ସ୍ମରଣ କରି ଆହ୍ଲାଦ ସହିତ ଭୂତପୂର୍ବ ମୋକ୍ତାରଙ୍କର କରମର୍ଦ୍ଦନ କଲେ । ପରେ କୁସୀକୁ ନେଇ ତାଙ୍କ ପ୍ରକୋଷ୍ଠକୁ ଗଲେ । ସେଠାରେ ଅଗ୍ନି ତାପ ସାହାଯ୍ୟରେ କୁସୀ ସଂଜ୍ଞା ଲାଭ କଲା । ପରେ ଫାଦାର୍ ପୂର୍ବ ପରିଚିତ ବନ୍ଧୁଙ୍କୁ ଆତ୍ମବୃତ୍ତାନ୍ତ ବର୍ଣ୍ଣନ କଲେ । ମୋକ୍ତାର ହର୍ଷ ବିଷାଦରେ ପରିପ୍ଳୁତ ହୋଇ କହିଲେ—'ଆପଣ ଯେତେ ଦିନ ଇଚ୍ଛା 'ସେତେ ଦିନ ଏଠାରେ ରହି ପାରିବେ । ମୋର ଆତ୍ମୀୟ ବୋଲି ପରିଚୟ ଦେଲେ କର୍ତ୍ତୃପକ୍ଷ କୌଣସି ଆପତ୍ତି କରିବେ ନାହିଁ । ଏଠାରେ ବିଦ୍ୟାଳୟ ସଂପୃକ୍ତ ଲୋକ ବ୍ୟତୀତ ଆଉ

କାହାର ପ୍ରବେଶାଧିକାର ନାହିଁ । ବିଶେଷତଃ ମୁଁ ଯେତେବେଳେ ଦ୍ୱାରବାନ୍, ଆପଣଙ୍କ ନିକଟକୁ କେହି ସହଜରେ ଆସି ପାରିବେ ନାହିଁ ।'

ମ୍ୟାଡାଲିନ୍ ସମ୍ମତ ହେଲେ । ଏଠାରେ ସେ ଦୁଇଟି ବିଶେଷ ସୁବିଧା ଦେଖିଲେ । ବାଳିକା ବିଦ୍ୟାଳୟରେ କୁସୀ ବିନାମୂଲ୍ୟରେ ଶିକ୍ଷା ପାଇବ । ଦ୍ୱିତୀୟତଃ ସେ ପୁନର୍ବାର ପୁଲିସ କର୍ତ୍ତୃକ ଧୃତ ହେଲେ ଭୂତପୂର୍ବ ମୋକ୍ତାରଙ୍କୁ ତାହାର ଅଭିଭାବକ ନିଯୁକ୍ତ କରି ଦିବେ । ବର୍ତ୍ତମାନ ଦ୍ୱାରବାନ ତାଙ୍କର ମ୍ୟାନେଜର ନିଯୁକ୍ତ ହୋଇ ମାସିକ ପଞ୍ଚାଶ ଫ୍ରାଙ୍କ୍ ବେତନ ପାଇବାକୁ ଲାଗିଲେ । ମ୍ୟାଡ଼ାଲିନ୍ ଓ କୁସୀଙ୍କର ବିଶେଷ ସୁବିଧା ହେଲା ।

⁕

# ମହାବୀରଙ୍କର ତିରୋଧାନ

ସେଣ୍ଟ୍ ହେଲେନାରେ ତିନି ବର୍ଷ ପୂର୍ଣ୍ଣ ନ ହେଉଣୁ ନେପୋଲିୟନଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହୋଇ ପଡିଲା । ୧୮୨୦ ସାଲ ଅକ୍ଟୋବର ୨୬ଶ ଦିନ ତାଙ୍କର ସର୍ବାଙ୍ଗ କମ୍ପିତ ହେବାକୁ ଲାଗିଲା । ଯକୃତରେ ଅସହ୍ୟ ବେଦନା ସଙ୍ଗେ ଦାରୁଣ ପିପାସା ହେଲା । ନେପୋଲିୟନ ସମୀପବର୍ତ୍ତୀ ଭଦ୍ରଲୋକ-ମାନଙ୍କୁ କହିଲେ, 'ମହାଶୟଗଣ, ଏଥର ବୋଧହୁଏ ଆମମାନଙ୍କ କାରା-ଯନ୍ତ୍ରଣାର ଅବସାନ ହେବ ।'

କେତେକ ଦିନ ନିଦ୍ରା ନ ହେବାରୁ ସେ ସାତିଶୟ ଦୁର୍ବଳ ହୋଇ ପଡିଲେ । ସେ ଶଯ୍ୟାରୁ ଆଦୌ ଉଠି ପାରିଲେ ନାହିଁ । ଉଠାଇ ଦେଲେ ପୁନର୍ବାର ଶୋଇ ପଡ଼ନ୍ତି । ଡ଼ାକ୍ତର ଔଷଧ ଦେଲେ ସେବନ କରନ୍ତି ନାହିଁ । ଔଷଧ ସେବନ କରିବାକୁ ଡାକ୍ତରଙ୍କଦ୍ୱାରା ବାରମ୍ବାର ଅନୁରୁଦ୍ଧ ହେବାରୁ ଦିନେ ସେ ଡ଼ାକ୍ତରଙ୍କୁ କହିଲେ,—'ଡାକ୍ତର ମହାଶୟ, ଆପଣ କଣ ଦେଖୁ ନାହାନ୍ତି, ଜଗତରେ ସର୍ବୋଚ୍ଚ ସିଂହାସନ ଅପେକ୍ଷା ଏହି ଶଯ୍ୟାର ମୂଲ୍ୟ ଅଧିକ ? ଔଷଧରେ ମୋର କିଛି ଉପକାର ହେବ ନାହିଁ ।

ବ୍ୟାୟାମ ଅଭାବରେ ହିଁ ମୋର ଏହି ଶୋଚନୀୟ ଅବସ୍ଥା ଉପସ୍ଥିତ ହୋଇଅଛି । ମୁଁ ଯଦି ଆଜ ଥରେ ସ୍ୱାଧୀନ ଭାବରେ ଅଶ୍ୱ ଚଢ଼ି ଇଉରୋପରେ ଭ୍ରମଣ କରିବାକୁ ଅନୁମତି ପା'ନ୍ତି, ତାହାହେଲେ ମୋର ସ୍ୱାସ୍ଥ୍ୟ କଦାପି ଆକାଶ କୁସୁମରେ ପର୍ଯ୍ୟବସିତ ହୁଅନ୍ତା ନାହିଁ ।'

୧୮୨୧ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ ସମ୍ରାଟଙ୍କର ଅବସ୍ଥା ସାତିଶୟ ଶୋଚନୀୟ ହୋଇ ପଡ଼ିଲା । ସେ ବନ୍ଧୁମାନଙ୍କୁ କହିଲେ, 'ମୋ ମୃତ୍ୟୁ ପରେ ଆପଣମାନେ ମୋ ଦେହର ବ୍ୟବଚ୍ଛେଦ କରାଇବେ । ମୋର ହୃତ୍ପିଣ୍ଡ ଉଗ୍ରବୀର୍ଯ୍ୟ ସୁରାରେ ରଖି ପ୍ରିୟତମା ମେରି ଲୁଇସାଙ୍କ ହସ୍ତରେ ଅର୍ପଣ କରିବେ ଏବଂ କହିବେ, ମୁଁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କୁ ପ୍ରେମ, ସ୍ନେହ କରିଅଛି । ଆପଣମାନେ ରୋମ୍‌କୁ ଯାଇ ମୋର ଶୋକାତୁରା ଜନନୀଙ୍କୁ ସାନ୍ତ୍ୱନା ଦେବେ ଏବଂ ଆତ୍ମୀୟବର୍ଗଙ୍କୁ ମୋର ମୃତ୍ୟୁକାହାଣୀ ଶୁଣାଇବେ ।

ଏପ୍ରିଲ ୨୯ଶ ଦିନ ସମ୍ରାଟଙ୍କ ଉଦରରେ ଅସହ୍ୟ ଯନ୍ତ୍ରଣା ଅନୁଭୂତ ହେଲା । ସେ ଅଦୂରବର୍ତ୍ତୀ ନିର୍ଝରର ସୁଶୀତଳ ଜଳ ପାନରେ କଥଞ୍ଚିତ୍ ଆରାମ ବୋଧ କଲେ । ମେ ମାସର ଚତୁର୍ଥ ଦିବସ ସନ୍ଧ୍ୟାରେ ଗଗନରେ ପ୍ରଳୟ ମେଘମାଳା ସଞ୍ଚିତ ହେଲା । ନେପୋଲିୟନ କ୍ରମଶଃ ଅବସାଦ-ଗର୍ଭରେ ବୁଡ଼ିବାକୁ ଲାଗିଲେ । ଦେଖୁଁ ଦେଖୁଁ ପ୍ରବଳ ଝଟିକା ଓ ଅବିଶ୍ରାନ୍ତ ବାରିବର୍ଷଣ ହେବାକୁ ଲାଗିଲା । ସେଣ୍ଟ୍ ହେଲେନା ତିମିର-ବସନ ପରିଧାନ କଲା । ସେହି ଭୀଷଣ ଦୁର୍ଯୋଗରେ ମ୍ୟାଡ଼ାମ୍ [ କାଉଣ୍ଟ] ବାରଟ୍ରାଣ୍ଡ ଓ ତଦୀୟ ପତ୍ନୀ ବାଳକ ବାଳିକାମାନଙ୍କ ସଙ୍ଗେ ସମ୍ରାଟଙ୍କର ଶେଷ ଦେଖା କରିବାକୁ ଆସିଲେ ।

ଯେଉଁ ସମସ୍ତ ଫରାସୀ ଭଦ୍ରଲୋକ ଇଚ୍ଛା ପୂର୍ବକ ନେପୋଲିୟନଙ୍କ ସହିତ କାରାବାସ କରିବାକୁ ଯାଇଥିଲେ ସେମାନଙ୍କ ମଧ୍ୟରେ କାଉଣ୍ଟ ବାରଟ୍ରାଣ୍ଡ ଥିଲେ ପ୍ରଧାନ । ସେ ତାଙ୍କ ସ୍ତ୍ରୀ ଓ ପଞ୍ଚମ ବର୍ଷୀୟ ପୁତ୍ର ସଙ୍ଗେ ସେଣ୍ଟ୍ ହେଲେନାରେ କାରାଦଣ୍ଡ ଭୋଗୁଥିଲେ ।

ବ୍ରାରଟ୍ରାଣ୍ଡଙ୍କ ସଙ୍ଗେ ତାଙ୍କର ଶିଶୁ ପୁତ୍ର ସମ୍ରାଟଙ୍କୁ ଦେଖି ଯିବାକୁ ବାହାରିଲ । ଶିଶୁଟି ସମ୍ରାଟଙ୍କୁ ବଡ଼ ଭଲ ପାଉଥିଲା, ସବଦା ତାଙ୍କ ପାଖରେ ରହୁଥିଲା, ତାଙ୍କ ସହିତ ରୁ, ବିସ୍କୁଟ ପ୍ରଭୃତି ଖାଉଥିଲା । ସେ ସମ୍ରାଟଙ୍କୁ 'ନେପୋ' ବୋଲି ଡ଼ାକେ । ସେ କହିଲା—'ମା, ମୁଁ ବି ନେପୋଙ୍କୁ ଦେଖିଯିବି ।' ମା କହିଲେ—'ଆଜି ତ ସେ କିଛି ଖାଇବେ ନାହିଁ, ତୁ ଯାଇ କଣ କରିବୁ ? ସେ ଆଜି ସ୍ୱର୍ଗକୁ ଯାଉଛନ୍ତି ।'

ଶିଶୁ—ମା, ମୁଁ ବି ସ୍ୱର୍ଗକୁ ଯିବି ।

ମା—ଆଜି ସେ ମରିବେ ।

ଶିଶୁ—ମା ମୁଁ ବି ମରିବି ।

ମା— ଏପରି କଥା କହ ନାହିଁ ବାବା ।

ଶିଶୁ— କାହିଁକି କହିବି ନାହିଁ ମା ? ନେପୋ ଖାଇଲେ ମୁଁ ଖାଏଁ, ନେପୋ ଗଲେ ମୁଁ ଯାଏଁ—ନେପୋ ମଲେ ମୁଁ ମରିବି ନାହିଁ କାହିଁକି ମା ?

ଜନନୀ ଶିଶୁ ପୁତ୍ରକୁ ସଙ୍ଗେ ନେଲେ । ସେହି ସମୟରେ ନେପୋଲିୟନଙ୍କର ଚେତନା ନଥିଲା । ସେ ମଧ ମଧରେ ନାତିପରିସ୍ଫୁଟ ସ୍ୱରରେ "ଫ୍ରାନସ—ସେନା--ସେନାନାୟକ—ଯୋସେଫାଇନ୍" ଇତ୍ୟାଦି ଶବ୍ଦ ଉଚ୍ଚାରଣ କରୁଥିଲେ । ତାଙ୍କର ଶ୍ୱାସକୃଚ୍ଛ୍ର ଉପସ୍ଥିତ ହୋଇଥିଲା । ଗୃହ ମଧରେ ଫରାସୀ ଭଦ୍ରଲୋକମାନେ ନୀରବ ଭାବରେ ତାଙ୍କ ଚତୁର୍ଦ୍ଦିଗରେ ଠିଆ ହୋଇଥିଲେ । ଜଣେ କ ପୁରୋହିତ ସମ୍ରାଟଙ୍କ ମସ୍ତକ ନିକଟରେ ଠିଆ ହୋଇ ଅନ୍ତିମକାଳୀନ ପ୍ରାର୍ଥନାଦି ପାଠ କରୁଥିଲେ । ବାଳକ ବାଳିକାଗଣ ଆସି ମୁମୂର୍ଷୁ ସମ୍ରାଟଙ୍କର ବାହୁ ଯୁଗଳ ଚୁମ୍ବନ ଓ ଅଶ୍ରୁଜଳରେ ପ୍ଲାବିତ କରୁଥିଲେ । ଏହି ସମୟରେ ଶିଶୁ ବାରଟ୍ରାଣ୍ଡ୍ ସମ୍ରାଟଙ୍କ ସମ୍ମୁଖରେ ଯାଇ ଧୀର ସ୍ଥିର ଭାବରେ ଠିଆ ହେଲା, ବିସ୍ମିତ ଭାବରେ ତାଙ୍କ ମୁଖକୁ ଚାହିଁ ରହିଲା । ଓୟାଟାଲୁରେ ଏକ ଦିଗରେ ଅନୁସରଣକାରୀ ଡ୍ୟୁକ୍ ଅବ୍ ଓ୍ୱେଲିଂଟନ, ଅନ୍ୟ ଦିଗରେ ନେପୋଲିୟନ, ଏହି ଦୁହିଙ୍କ

ମଧ୍ୟରେ ଓଲ୍ଡ୍ ଗାର୍ଡ୍‌ର ସେନାପତି କାମ୍ବ୍ରନ୍ ଯେପରି ଠିଆ ହୋଇ ଥିଲେ, ଆଜି ଏଠାରେ ଏକ ଦିଗରେ ମୃତ୍ୟୁ, ଅନ୍ୟ ଦିଗରେ ସମ୍ରାଟ୍, ମଧ୍ୟସ୍ଥଳରେ ଶିଶୁଟି ସେପରି ବକ୍ଷଃସ୍ଥଳ ଉନ୍ନତ୍ ସ୍ଫୀତ କରି ଛିଡ଼ା ହେଲା । ଶିଶୁ ବାରଟ୍ରାଣ୍ଡ୍ 'ନେପୋ'ଙ୍କର ମୃତ୍ୟୁକାଳୀନ ହାବଭାବାଦି ଅନୁକରଣ କରିବାକୁ ଲାଗିଲା । ଦେଖୁଁ ଦେଖୁଁ ସମ୍ରାଟଙ୍କର ପ୍ରାଣବାୟୁ ବହିର୍ଗତ ହୋଇଗଲା, ସଙ୍ଗେ ସଙ୍ଗେ ଶିଶୁଟି ମଧ୍ୟ ଛିନ୍ନମୂଳ ଗୁଳ୍ମ ଭଳି ଧରାଶାୟିତ ହେଲା । ସ୍ତନନ୍ଦପୁରର ଜଗତକୁ ଦେଖାଇ ଗଲା, ଏକ ଗୃହସ୍ଥ ଓ ଖଣ୍ଡିଏ ରସକୁଣ୍ଡର ଋଣ କିପରି ପରିଶୋଧ କରିବାକୁ ହୁଏ, ବନ୍ଧୁ ପ୍ରତି ବନ୍ଧୁକୁ କିପରି ସହାନୁଭୂତି ପ୍ରକାଶ କରିବାକୁ ହୁଏ—ଦେଖାଇ ଦେଇ ଗଲା, ଜଗତରେ ପ୍ରତିଭାଶାଳୀ ବ୍ୟକ୍ତିଙ୍କର କେତେ ଦୂର ଅନୁଗମନ କରିବାକୁ ହୁଏ ଏବଂ ସର୍ବଜନାନୁମୋଦିତ ରାଜା ପାଇଁ ପ୍ରଜାମାନଙ୍କୁ କିପରି ଜୀବନ ଦାନ କରିବାକୁ ହୁଏ ।

ବାରଟ୍ରାଣ୍ଡ ସ୍ତ୍ରୀ-ପୁରୁଷ ମସ୍ତକରେ କରାଘାତ କରି କରି ଶିଶୁକୁ କୋଳକୁ ଉଠାଇଲେ, ମୁହୁର୍ମୁହୁ ତାହାର ସରଳ ସୁନ୍ଦର ମୁଖ ଚୁମ୍ବନ କରିବାକୁ ଲାଗିଲେ । ପରେ ଆନନ୍ଦାଶ୍ରୁ ବର୍ଷଣ କରି କରି ଶିଶୁର ଶବକୁ ସମ୍ରାଟଙ୍କ କୋଳରେ ରଖି କହିଲେ—'ସମ୍ରାଟ୍ ! ଆପଣ ବାହୁବଳରେ ସମଗ୍ର ଇଉରୋପ ଜୟ କରିଥିଲେ, ଜଗତର ସର୍ବୋଚ୍ଚ ସିଂହାସନ ଆରୋହଣ କରିଥିଲେ, ଆପଣ ସାଧାରଣଙ୍କ ପ୍ରତି ଆଭିଜାତ୍ୟର ଅତ୍ୟାଚାର ଓ ଉତ୍ପୀଡ଼ନ ନିବାରଣ କରି କୋଟି କୋଟି ଲୋକଙ୍କର ଆଶୀର୍ବାଦ ଭାଜନ ହୋଇଥିଲେ । ଆପଣ ପତିତ ଫରାସୀ ଜାତିକୁ ଗୌରବର ଚରମ ସୀମାକୁ ଉନ୍ନୀତ କରିଛନ୍ତି । ଆଜି ଫରାସୀ ଜାତିର ଏଇ ଶେଷ ପ୍ରୀତି-ଉପହାର ଗ୍ରହଣ କରନ୍ତୁ ।'

ଜୀବିତ ଅପେକ୍ଷା ମୃତ ପ୍ରତି ଇଂଲଣ୍ଡର ସମଧିକ ଦୟା ଓ ସମ୍ମାନ ଦୃଷ୍ଟ ହୋଇଥାଏ । ବ୍ରିଟିଷ୍ ରଣତରୀ ଓ ଦୁର୍ଗରୁ ଅନବରତ ଶୋକସୂଚକ ତୋପ ଧ୍ୱନି ଉତ୍ଥିତ ହେଲା ।

ସମ୍ରାଟଙ୍କୁ ସମାଧିସ୍ଥ କରି ଫରାସୀ ଭଦ୍ରଲୋକଗଣ ଇଉରୋପକୁ ପ୍ରତ୍ୟାଗମନ କଲେ । ଏକମାତ୍ର ହେବାର୍ଟ ସେହି ନିବିଡ଼ ଅରଣ୍ୟରେ ଏକାଦିକ୍ରମେ ଊଣିଶି ବର୍ଷ କାଳ ନେପୋଲିୟନଙ୍କ ସମାଧି ସମ୍ମୁଖରେ ବସି ରହିଥିଲେ । ଧନ୍ୟ ହେବାର୍ଟ ! ଜଗତରେ କେହି ତୁମ ପରି ଭକ୍ତି ଓ ପ୍ରେମର ପରିଚୟ ଦେଇପାରି ନାହିଁ । ୧୮୪୦ ସାଲରେ ଯେତେବେଳେ ବ୍ରିଟିଶ୍ ସରକାର ନେପୋଲିୟନଙ୍କର ସମାଧି ସେଣ୍ଟ୍ ହେଲେନାରୁ ଫ୍ରାନ୍ସକୁ ଆଣିବାକୁ ଅନୁମତି ଦେଲେ, ସେତେବେଳେ ହେବାର୍ଟ ବି ସମାଧି ସଙ୍ଗେ ଗୃହକୁ ପ୍ରତ୍ୟାବୃତ୍ତ ହୋଇଥିଲେ ।

*

## ପୁରସ୍କାର ଗ୍ରହଣ

କାଳକ୍ରମେ ଲ ବ୍ୟାରନ୍ ମେକିୟୁସ୍ ପଣ୍ଡମାର୍ସିଙ୍କର ଆର୍ଥିକକଷ୍ଟ ତିରୋହିତ ହେଲା । ସେ ଓକିଲତି ବ୍ୟବସାୟରେ ମାସିକ ତିନି ଶତ ଫ୍ରାଙ୍କ୍ ଉପାର୍ଜ୍ଜନ କରିବାକୁ ଲାଗିଲେ । ସେ ଦାସ ଦାସୀ ସ୍ୱତନ୍ତ୍ର ଭାବରେ ଗୋଟାଏ ଘର ଭଡ଼ା କରି ବାସ କଲେ ।

ପ୍ରେମ ଦ୍ୱିବିଧ—ଶରୀର-ପ୍ରେମ, ଆତ୍ମା-ପ୍ରେମ । ଦେହର ପ୍ରେମ ମାଟିରେ ମିଶିଯାଏ, ଆତ୍ମାର ପ୍ରେମ ସ୍ୱର୍ଗକୁ ଚାଲିଯାଏ । ମେକିୟୁସ୍ ଶରୀର ଅପେକ୍ଷା ଆତ୍ମାକୁ ଅଧିକ ପ୍ରେମ କରୁଥିଲେ । ସେ ନିଜ ପିତାଙ୍କୁ ପ୍ରେମ କରି ପରର ପିତାଙ୍କୁ ପ୍ରେମ କରିବାର ଶିଖିଥିଲେ । ସେ ନିରୁପାୟ ଦୀନ-ଜନଙ୍କ ପ୍ରତି କରୁଣାର ହସ୍ତ ବିସ୍ତାର କରୁଥିଲେ । ନିଜ ଗୃହରେ ରୁଗ୍ଣ ବ୍ୟକ୍ତିମାନଙ୍କର ଚିକିତ୍ସା ଓ ଶୁଶ୍ରୂଷାର ବିହିତ ବ୍ୟବସ୍ଥା କରିଥିଲେ ।

ପାଠକ ପାଠିକାମାନେ ଅବଗତ ଅଛନ୍ତି, ଥେନାର୍ଡ଼ିୟାରର ପ୍ରଧାନ ବ୍ୟବସାୟ ଥିଲା ମିଥ୍ୟା ଓ ପ୍ରବଞ୍ଚନା, ସେ ଅତ୍ୟନ୍ତ ବିଦ୍ୱେଷପରାୟଣ ଓ ସ୍ୱାର୍ଥପର । ଥେନାର୍ଡିୟାର ବୈରନିର୍ଯାତନ କଲେ ମ୍ୟାଡ୍ଲାଲିନଙ୍କୁ

ଅନ୍ୱେଷଣ କରିବାକୁ ଲାଗିଲା । ଲି ନଗରରେ ଯେଉଁ ସମସ୍ତ ଲୋକ ଛ' ସାତବର୍ଷ କାଳ (ଯାବତ୍) ମ୍ୟାଡ୍‌ଲାଇନଙ୍କ ଅଧୀନରେ ହିଁ ପ୍ରତିପାଳିତ ହୋଇଥିଲେ, ସେମାନେ ଥେନାର୍ଡିୟାରକୁ ଫାଦାରଙ୍କର ସନ୍ଧାନ କହି ଦେଲେ । ସେ ଦ୍ୱିଗୁଣ ଉତ୍ସାହରେ ଇନ୍‌ସପେକ୍ଟର ଜେଭେରିୟୁଙ୍କର ସାହାଯ୍ୟ କରିବାକୁ ପାଖକୁ ଗଲା । ତାହାର ଏହି ପାପ ସଙ୍କଳ୍ପରେ ବାଧା ଦେବା ପାଇଁ ବୋଧହୁଏ ତାହା ପ୍ରତି ମା ଶୀତଳାଙ୍କର ତୀବ୍ର ଦୃଷ୍ଟି ପଡ଼ିଲା । ସେ ବସନ୍ତ ରୋଗରେ ପୀଡ଼ିତ ହୋଇ ପଡ଼ିଲା । ଦିନେ ସେ ପୀଡ଼ିତ ହୋଇ ରାସ୍ତାଧାରରେ ଅସହାୟ ଅବସ୍ଥାରେ ପଡ଼ି ରହିଛି, ଏପରି ସମୟରେ ମେରିୟସ୍ ତାହାକୁ ସ୍କନ୍ଧରେ ବହି ନିଜ ଆବାସକୁ ନେଇ ଗଲେ ଏବଂ ତାହାର ଚିକିତ୍ସାର ବନ୍ଦୋବସ୍ତ କଲେ ।

ଥେନାର୍ଡ଼ିୟର ଆରୋଗ୍ୟ ଲାଭ କରି ଦିନେ ମେରିୟସ୍‌ଙ୍କୁ କହିଲା— 'ମହାଶୟ, ଆପଣ ମୋର ଯେଉଁ ଉପକାର କରିଛନ୍ତି, ତାହା ଜୀବନରେ କେବେ ଭୁଲି ପାରିବି ନାହିଁ । ମୋର ଏହି ସ୍ମାରକ ଅଙ୍ଗୁରୀୟଟି କୃତଜ୍ଞତାର ନିଦର୍ଶନ ସ୍ୱରୂପ ଦେଉଅଛି, ଗ୍ରହଣ କରନ୍ତୁ ।'

ମେରିୟସ୍—ଆପଣ କଣ ମୋତେ କୃତୋପକାର ମୂଲ୍ୟ ଦେବାକୁ ଚାହାନ୍ତି ? ପୁରସ୍କାର ଲାଳସାରେ ଆପଣଙ୍କର ଶୁଶ୍ରୂଷା କରି ନାହିଁ । ଆପଣ ପୁନର୍ବାର ଏପରି ଅନୁରୋଧ କରିବେ ନାହିଁ । ଯାହା ହେଉ, ଆପଣ ଏହି ମହାମୂଲ୍ୟ ଦ୍ରବ୍ୟଟି କେଉଁଠାରୁ ପାଇଛନ୍ତି କହି ମୋର କୌତୂହଳ ଦୂର କରି ପାରିବେ ?

ଥେନାର୍ଡ଼ିୟାର୍—ଓ୍ୱାଟର୍ଲୁ ଯୁଦ୍ଧରେ କର୍ଣ୍ଣେଲ୍ ପଣ୍ଟମର୍ସି ନାମକ ଜଣେ ସୈନିକ ଦାରୁଣ ଆହତ ହୋଇ ଅଚେତନ ଅବସ୍ଥାରେ ଶବରାଶି ମଧ୍ୟରେ ପଡ଼ିଥିଲେ—ଆଉ କେତୋଟି ମିନଟ୍ ମଧ୍ୟରେ ତାଙ୍କର ପ୍ରାଣବାୟୁ ବହିର୍ଗତ ହୋଇଥାନ୍ତା । ଏହି ସମୟରେ ମୁଁ ତାଙ୍କୁ ସେହି ଦୁର୍ଗମ ସ୍ଥାନରୁ ଟାଣି ବାହାର କଲି । ଏଣୁ ସେ ମୋତେ ଏହି ଅଙ୍ଗୁରୀୟଟି ପୁରସ୍କାର ଦେଇଥିଲେ ।

ମିଥ୍ୟାବାଦୀ ତାହାର ପ୍ରକୃତ ତ୍ୟାଗ କରିବ କାହିଁକି ? ପଣ୍ଟମାର୍ସି ତାହାକୁ ପୁରସ୍କାର ଦେଇ ନଥିଲେ । ଦସ୍ୟୁ ଥେନାଡ଼ିୟାର ସଜ୍ଞାହୀନ ପଣ୍ଟମାର୍ସିଙ୍କ ଅଙ୍ଗୁଳିରୁ ତାହା ବାହାର କରି ଆଣିଥିଲା ।

ମେରିୟସ୍ ପିତାଙ୍କ ନାମ ଶୁଣି ଛଳ ଛଳ ଚକ୍ଷୁରେ କହିଲେ— 'ତାହା ହେଲେ ଆପଣ ମୋର ପ୍ରକୃତ ବନ୍ଧୁ ହୋଇଅଛନ୍ତି, ମୁଁ କର୍ଣ୍ଣେଲ ପଣ୍ଟମାର୍ସିଙ୍କର ହତଭାଗ୍ୟ ପୁତ୍ର । ମୁଁ ଆପଣଙ୍କ ନିକଟରେ କୃତଜ୍ଞ । ଆଦେଶ କରନ୍ତୁ, ମୋ ଦ୍ୱାରା ଆପଣଙ୍କର କି ଉପକାର ହୋଇପାରେ ।'

ଥେନାଡ଼ିୟାର—ବତ୍ସ, ମୁଁ ତୁମ ପିତାଙ୍କର ଜୀବନ ରକ୍ଷା କରିଥିଲି—

ତୁମେ ବି ମୋ ଜୀବନ ରକ୍ଷା କରିଛ, ମୋର ପ୍ରଭୂତ ଉପକାର କରିଅଛ । ମୋ ନିକଟରେ ତୁମର ଆଉ କିଛି ଋଣ ନାହିଁ । ତଥାପି ଯଦି ନିଜ ଗୁଣରେ ମୋତେ ଆହୁରି ଉପକୃତ କରିବାକୁ ଚାହଁ, ତାହା ହେଲେ ଅନୁଗ୍ରହ କରି ଥରେ ମୋ ପଲ୍ଲୀ ନିବାସକୁ ଆସ ।

ଥେନାଡ଼ିୟାର ନିଜର ନାମ, ପଲ୍ଲୀର ନାମ, ନିଜର ବ୍ୟବସାୟ ଇତ୍ୟାଦି ଜଣାଇଲା । ମେରିୟସ୍ ଆନନ୍ଦରେ ତାହା ସହିତ ମଣ୍ଟ ଫର୍ମିଲ୍‌କୁ ଗମନ କଲେ ।

ମେରିୟସଙ୍କୁ ନିଜ ଗୃହକୁ ନେବାରେ ଥେନାଡ଼ିୟାରର ଅବଶ୍ୟ ସ୍ୱାର୍ଥ ଥିଲା । ତାହାର ଆଶା ଥିଲା, ସେହି ବ୍ୟାରନ୍-ସନ୍ତତି ଲୁସୀର ରୂପ ଓ ଗୁଣରେ ଆକୃଷ୍ଟ ହୋଇ ତାହାକୁ ପତ୍ନୀରୂପେ ଗ୍ରହଣ କରି ପାରନ୍ତି । ଥେନାଡିୟାର ପୁରୁଷ ଓ ସ୍ତ୍ରୀ ମନ୍ଦ ପ୍ରକୃତିର ଲୋକ ହେଲେହେଁ, ସେମାନଙ୍କର କନ୍ୟା ଲୁସୀ ବିବିଧ ସଦ୍‌ଗୁଣରେ ଭୂଷିତ ଥିଲେ । ବର୍ତ୍ତମାନ ଲୁସୀଙ୍କର ବୟସ କୋଡ଼ିଏ ବର୍ଷ । ସେ ସ୍ୱାର୍ଥାନ୍ଧ ପିତାମାତାଙ୍କ ଅଙ୍କରେ ପ୍ରତିପାଳିତ ହେଲେହେଁ, ଥିଲେ ଶାନ୍ତ ପ୍ରକୃତି, ଉଦାର ହୃଦୟା ଓ ସାଧୁଶୀଳା । ତାଙ୍କର ସ୍ୱାଭାବିକ ପ୍ରତିଭା ଲୋକମାନଙ୍କୁ ମୁଗ୍ଧ ଚକିତ

କରୁଥିଲା । ତାଙ୍କର ଦୈହିକ ସୌନ୍ଦର୍ଯ୍ୟ ମାନସିକ ସଦ୍‌ବୃତ୍ତି ନିଚୟର ଅନୁରୂପ ଥିଲା । ତାଙ୍କର ସୁକୋମଳ ମୁଖଚ୍ଛବିରେ ଶାନ୍ତ, ଦାକ୍ଷିଣ୍ୟ ଓ ତ୍ୟାଗଶୀଳତାର ଛାୟା ଦେଖା ଯାଉଥିଲା ।

ଲୁସୀ ମେରିୟୁସଙ୍କର ସମ୍ବର୍ଦ୍ଧନାରେ ନିଯୁକ୍ତ ହେଲେ । ମେରିୟୁସ୍ ଯେ ଅତ୍ୟନ୍ତ ସତ୍ୟନିଷ୍ଠ, ଉନ୍ନତଚେତା ଓ ତ୍ୟାଗଶୀଳ ଯୁବକ, ତାହା ଲୁସୀ ଆଗରୁ ପିତାଠାରୁ ଶୁଣିଥିଲେ । ଅତିଥିଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଓ ଅନୁରାଗ ସ୍ୱତଃ ଉଦ୍ଦୀପିତ ହୋଇଥିଲା । ସେ ମନେ ମନେ ମେରିୟୁସଙ୍କୁ ପତିରୂପେ ବରଣ କରି ନେଇଥିଲେ । ମେରିୟୁସ୍ ଲୁସୀଙ୍କର ଅପୂର୍ବ ରୂପଲାବଣ୍ୟ, ସଦ୍‌ଗୁଣ, ସଦ୍‌ବ୍ୟବହାର ଓ ସାଦର ଅଭ୍ୟର୍ଥନାରେ ମୁଗ୍‌ଧ ହେଲେ ।

ମେରିୟୁସ୍ କେତେକ ଦିନ ମଣ୍ଟ ଫାର୍ମିଲୋରେ ଅବସ୍ଥାନ କରି ପାରିସ୍‌କୁ ପ୍ରତ୍ୟାଗମନ କଲେ । ବିଦାୟ ସମୟରେ ଲୁସୀଙ୍କର ଶରଦିନ୍ଦୁନିଭ ମୁଖମଣ୍ଡଳ ସହସା ମଳିନ ହୋଇ ଯିବାର ଦେଖି, ଯୁବକ ପ୍ରସନ୍ନ ମୁଖରେ କହିଥିଲେ—'ସୁନ୍ଦରି ! ଦୁଃଖ କର ନାହିଁ, ମୁଁ ପୁଣି ଆସିବି ।'

ନେପୋଲିୟନଙ୍କର ପରଲୋକ ଗମନ ପରେ, ରୟାଲିଷ୍ଟମାନେ ବି ବୁଝି ପାରିଲେ ଯେ, ବିଧାତାଙ୍କ ସୃଷ୍ଟିରେ ଏଡ଼େ ବଡ଼ ଲୋକ ଆଉ କେବେ ଜନ୍ମଗ୍ରହଣ କରି ନାହାନ୍ତି । ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର ପ୍ରକୃତ ଜୀବନ ଆରବ୍‌ଧ ହୁଏ ସେମାନଙ୍କର ମୃତ୍ୟୁ ଦିନଠାରୁ । ରୟାଲିଷ୍ଟଗଣଙ୍କର ଅନ୍ତଃକରଣ ବି ଏତେ ଦିନକେ ଶିଥିଳ ହେଲା ।

ମେରିୟୁସଙ୍କର ମାତାମହ ତାଙ୍କୁ ଡାକି ପଠାଇଲେ । କହିଲେ, 'ଭାଇ, ଆଉ କେତେ ଦିନ ରାଗ କରି ରହିବ ? ଏଥର ଘରକୁ ଆସ, ବିଷୟ ସମ୍ପତ୍ତି ଦେଖ—ମୁଁ ଆଉ କେତେ ଦିନ ବଞ୍ଚିବି ?' ମେରିୟୁସ୍ କହିଲେ, 'ଆପଣ ମୋର ସ୍ୱର୍ଗଗତ ପିତାଙ୍କ ପ୍ରତି ବିଦ୍ୱେଷଭାବ ଦେଖାଇବାରୁ ମୁଁ ଗୃହ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲି ।'

ମାତାମହ— ନା ନା ବିଦ୍ୱେଷ ନାହିଁ— ତୁମର ପିତା ଭଲ ଲୋକ ଥିଲେ ।
ତୁମେ କେବେ ଘରକୁ ଫେରିବ ?

ମେରିୟୁସ୍ ମାତାମହଙ୍କ ମୁଁହରୁ ପିତାଙ୍କର ସୁଖ୍ୟାତିବାଦ ଶୁଣି ଆନନ୍ଦାଶ୍ରୁ ବିସର୍ଜ୍ଜନ କରି କହିଲେ, 'ଉଦ୍‌ବେଗ ତ୍ୟାଗ କରନ୍ତୁ, ଆପଣଙ୍କର ମେରିୟୁସ୍ ଘରକୁ ଫେରିଲା ।'

ଫ୍ରାନ୍‌ସ ତମାମ ରିପବ୍ଲିକାଷ୍ଟମାନଙ୍କର ଏହି ଭାବ ଦେଖି ରାଜା ପ୍ରମାଦ ଗଣିଲେ । ସୌଭାଗ୍ୟକ୍ରମେ ତାଙ୍କର ମୃତ୍ୟୁ ସନ୍ନିକଟ ହେଲା । ସେ ମୃତ୍ୟୁଶଯ୍ୟାରେ ଶାୟିତ ହୋଇ ସମ୍ଭାବିତ ରାଷ୍ଟ୍ର-ବିପ୍ଳବ ନିବାରଣ ନିମିତ୍ତ ବିସ୍ତୃତ ବୋର୍ବନ ବଂଶ ତନ୍ନ ତନ୍ନ କରି ଦେଖି, ପ୍ରବୀଣ ବୟସ୍କ ଲୁଇ ଫିଲିପ୍ ଇଗାଲିଇଟଙ୍କୁ ଭାବୀ ରାଜା ନିର୍ବାଚିତ କଲେ । ରାଜା ଲୁଇ ଫିଲିପ୍ ଇଗାଲିଇଟ ସତ୍ୟନିଷ୍ଠ ଅମାୟିକ, ସମୁଦାରପ୍ରକୃତି, ବିଦ୍ୱାନ୍ ଓ ନିରହଙ୍କାର ପୁରୁଷ ଥିଲେ । ସେ ସମସ୍ତଙ୍କ ସଙ୍ଗେ ମିଳାମିଶା କରନ୍ତି, ପଦବ୍ରଜରେ ବାହାରନ୍ତି ଏବଂ ଏକାକୀ ପ୍ରତି ପଲ୍ଲୀରେ ବୁଲି ଯାନ୍ତି ।

ରାଜା ଭବିଷ୍ୟତ ପାଇଁ ଏପରି ବନ୍ଦୋବସ୍ତ କଲେ ସତ, କିନ୍ତୁ ତାଙ୍କର ଜୀବିତାବସ୍ଥାରେ କାହାକୁ ହେଲେ ମୁଣ୍ଡ ଟେକିବାକୁ ଦେଲେ ନାହିଁ । ସେ ଆଦେଶ ପ୍ରଚ୍ଚର କଲେ ଯେ, ଯେଉଁମାନେ ନେପୋଲିୟନଙ୍କ ପାଇଁ ପ୍ରକାଶ୍ୟ ଭାବରେ ଶୋକ ପ୍ରକାଶ କରିବେ ସେମାନେ କାରାଗାରରେ ନିକ୍ଷିପ୍ତ ହେବେ । କହିବା ବାହୁଲ୍ୟ, ଶୋକ-ପ୍ରକାଶ-ସମିତିର ନେତା ପିତୃଭକ୍ତ ଯୁବକଗଣ କ୍ରମଶଃ ପାରିସର ଊନପଞ୍ଚାଶତ୍ ଜେଲ୍ ପୂର୍ଣ୍ଣ କରିବାକୁ ଲାଗିଲେ – ମେରିୟୁସ୍ ସେମାନଙ୍କ ମଧ୍ୟରେ ଥିଲେ ପ୍ରଧାନ ।

ଏଣେ ମ୍ୟାଡ୍ରାଲିନ୍ ପଞ୍ଚବର୍ଷ ପୂର୍ଣ୍ଣ ହୋଇଯିବାରୁ ମେରିୟୁସଙ୍କୁ ଅଙ୍ଗୀକୃତ ପୁରସ୍କାର ଦେବାପାଇଁ ଆସିଲେ; କିନ୍ତୁ ତାଙ୍କର ସାକ୍ଷାତ୍ ପାଇଲେ ନାହିଁ । କେତେ ଲୋକଙ୍କୁ ପଚାରିଲେ, କେହି ମେରିୟୁସଙ୍କର ସନ୍ଧାନ କହି ପାରିଲେ ନାହିଁ । ଫାଦାର୍ ଅତ୍ୟନ୍ତ ଚିନ୍ତିତ ହେଲେ । ସେ ଭଗ୍ନ ପ୍ରାଣରେ କୁସୀକୁ ନେଇ ଦେଶାନ୍ତରକୁ ଯିବାର ଉପକ୍ରମ କରୁଛନ୍ତି, ଏହି ସମୟରେ ଥେନାଡିୟାର ତାଙ୍କୁ ଦେଖିଲା ଏବଂ ଅବିଳମ୍ବେ ଜେଭେରିୟୁଙ୍କୁ ସମ୍ବାଦ

ହେଲା । ପାର୍କଠାରୁ ଏକ ମାଇଲ ଦୂରରେ ମ୍ୟାଡ଼ାଲିନଙ୍କୁ ଇନ୍‌ସପେକ୍ଟର ଧରି ପକାଇଲେ । କୁସୀ ଅବିଶ୍ରାନ୍ତ ରୋଦନ କରିବାକୁ ଲାଗିଲେ । ସେ ଜେଭେରଙ୍କ ପଦତଳେ ପଡ଼ି କହିଲେ, 'ଇନ୍‌ସପେକ୍ଟର ମହାଶୟ, ଦୟା କରି ମୋତେ ମଧ୍ୟ ଜେଲକୁ ପଠାନ୍ତୁ ।' ଜେଭେରସ ପ୍ରାର୍ଥନା ଗ୍ରହଣ କଲେ ।

ଈଶ୍ୱରଙ୍କର ଲୀଳା କି ବିଚିତ୍ର ! କାରାଗାରରେ ଯେଉଁ କକ୍ଷରେ ମ୍ୟାଡ଼ାଲିନ୍ ଓ କୁସୀଙ୍କର ସ୍ଥାନ ହେଲା, ତାହାର ପାର୍ଶ୍ୱବର୍ତ୍ତୀ କକ୍ଷରେ ବ୍ୟାରନ୍ ମେରିୟସ୍ କାରାରୁଦ୍ଧ ଥିଲେ । ମଧ୍ୟରେ ଗୋଟାଏ ଝରକା ଥିଲା । ଦିନେ ରାତି ବେଳେ ମ୍ୟାଡ଼ାଲିନ୍ ମେରିୟସଙ୍କୁ ସମ୍ଭାଷଣ କରି କହିଲେ, 'ପିତୃଭକ୍ତ ଯୁବକ ! ପାଞ୍ଚବର୍ଷ ତଳେ ମୁଁ ତୁମକୁ ପିତୃଭକ୍ତିର ପୁରସ୍କାର ଦେବାକୁ ଇଚ୍ଛା କରିଥିଲି । ସେ ସମୟ ପୂର୍ଣ୍ଣ ହୋଇଅଛି—ମୁଁ ତୁମର ପୁରସ୍କାର ନେଇ ଆସିଛି ।'

ମେରିୟସ୍ ଅତ୍ୟନ୍ତ ବିସ୍ମୟ ସହିତ ତାଙ୍କୁ ଅଭିବାଦନ କରି କହିଲେ, 'ମହାଶୟ, ଆପଣଙ୍କ ପରି ସ୍ଥିରପ୍ରତିଜ୍ଞ ପୁରୁଷଙ୍କୁ ମୁଁ କେବେ ଦେଖି ନାହିଁ । ଆପଣଙ୍କର ଅଭିଳାଷ ପୂର୍ଣ୍ଣ ହେଉ । ଆପଣ ମୋ ପାଇଁ ଯେଉଁ ପୁରସ୍କାର ଆଣିଛନ୍ତି, ମୋତେ ତାହା ଦିଅନ୍ତୁ-- ତାହା ଏ ଅଧମର ଶିରୋଧାର୍ଯ୍ୟ ।'

ମ୍ୟାଡ଼ାଲିନଙ୍କ ଆଶ୍ୱାସନା ଓ ଆହ୍ଲାଦର ସୀମା ରହିଲା ନାହିଁ । ସେ ପ୍ରୀତି-ବିସ୍ଫାରିତ ନୟନରେ କୁସୀଙ୍କୁ ନେଇ ମେରିୟସଙ୍କ ସମ୍ମୁଖରେ ଠିଆ କରାଇ କହିଲେ, 'ବତ୍ସ, ହେଉଛି ତୁମର ପୁରସ୍କାର, ଦୟାପୂର୍ବକ ଗ୍ରହଣ କର ।' ଏହା କହୁଁ କହୁଁ ତାଙ୍କର ଅଶ୍ରୁଧାରା ବହିଗଲା । କୁସୀ ଲଜ୍ଜାରେ ଅଧୋବଦନା ହୋଇ ଠିଆ ହେଲେ । ମେରିୟସ୍ ଈଷତ୍ ବ୍ରୀଡ଼ା-ରଞ୍ଜିତ ମୁଖରେ ଉତ୍ତର କଲେ, 'ମହାଶୟ, ଉଦ୍‌ବେଗ ତ୍ୟାଗ କରନ୍ତୁ । ମୁଁ ଆନନ୍ଦ ସହକାରେ ଆପଣଙ୍କର ଦତ୍ତ ଏହି ସୁନ୍ଦର ବହୁମୂଲ୍ୟ ପୁରସ୍କାର ପିତାଙ୍କର ଆଶୀର୍ବାଦ ସ୍ୱରୂପ ଗ୍ରହଣ କରୁଅଛି ।''

⁂

# ଭାଗ୍ୟ ପରିବର୍ତ୍ତନ

ଅଷ୍ଟାଦଶ ଲୁଇ ସ୍ୱଗାରୋହଣ କରିବାରୁ, ଲୁଇ ଫିଲିପ୍ ଇଗାଲିଟିଙ୍କ ସିଂହାସନ ଆରୋହଣ କଲେ । ନୂତନ ରାଜା ପୁନର୍ବାର ଫ୍ରାନ୍ସର କାରାଦ୍ୱାର ଉନ୍ମୁକ୍ତ କରି ଦେଲେ । ମେରିୟୁସ୍ ଡେନେରିସ୍ଫୋ ଲୁସୀଙ୍କୁ ସଙ୍ଗେ ନେଇ ମାତାମହଙ୍କ ଭବନକୁ ଫେରିଲେ । ମାତାମହ ଆଗରୁ ଲୁସୀଙ୍କ ସମ୍ବନ୍ଧରେ ସବୁ ଶୁଣିଥିଲେ, କେଣ୍ଟରୁ 'ଅବତରଣ କରିବାକ୍ଷଣି ଲୁସୀଙ୍କର ଅଲୌକିକ ରୂପଲାବଣ୍ୟ ଦର୍ଶନରେ ଅତିଶୟ ସନ୍ତୁଷ୍ଟ ହୋଇ ପ୍ରସନ୍ନ ମୁଖରେ ପରିହାସ କରି କହିଲେ, 'ଭାଇ ମେରିୟୁସ୍, ବଧୂଟି ବୋଧହୁଏ ମୋ ପାଇଁ ଆଣିଛ ।'

ଲୁସୀ ବୃଦ୍ଧଙ୍କୁ ଅଭିବାଦନ କରି ବ୍ରୀଡ଼ାବନତ ବଦନରେ ତାଙ୍କର ଦକ୍ଷିଣହସ୍ତ ଚୁମ୍ବନ କଲେ । ମାତୃଷ୍ୱସା ବି ଅତ୍ୟନ୍ତ ଆଦରରେ ଭଗ୍ନୀ-ବ୍ୟାରନେସଙ୍କର କର ଚୁମ୍ବନ କରି ତାଙ୍କୁ ଘରକୁ ନେଲେ ।

ମେରିୟୁସ୍ ମଣ୍ଟ ଫାର୍ମିଲେରୁ ବାହୁଡ଼ିବା ଦିନ ଲୁସୀଙ୍କୁ କହିଥିଲେ, 'ମୁଁ ଏଠାକୁ ପୁଣି ଆସିବି ।' ଅତଏବ ତାଙ୍କର କାରାମୋଚନ ସମ୍ବାଦ ପାଇ ଲୁସୀ ଅତିଶୟ ଆନନ୍ଦ ଓ ଆଶାରେ ଅଧୀର ହୋଇଗଲେ । ସ୍ଥିର କଲେ, ଏଥର ଆସିଲେ ବ୍ୟାରେନଙ୍କୁ ନିଜର ମନ କଥା ଖୋଲି କହିବେ । ସେ ଯୁବକଙ୍କର ମୁନିଜନୋଚିତ ମନୋରମ ମୂର୍ତ୍ତି ଦର୍ଶନରେ ଲୁସୀଙ୍କର ଧୈର୍ଯ୍ୟ ଚ୍ୟୁତି ଘଟିଥିଲା – ସେ ଆତ୍ମହରା ହୋଇ ପଡ଼ିଥିଲେ ।

ଦିନ ପରେ ଦିନ ଗତ ହେବାକୁ ଲାଗିଲା, ତଥାପି ମେରିୟୁସ୍ ମଣ୍ଟ ଫାର୍ମିଲେରେ ପଦାର୍ପଣ କଲେ ନାହିଁ । ଲୁସୀ କ୍ରମଶଃ ଆହାର ନିଦ୍ରା ପରିହାର କରି ବସିଲେ—ଏକା ସେଇ ଚିନ୍ତା, ମେରିୟୁସ୍ ଭାବନା । ଏଥେନାଡ଼ସ୍ପାର ତାଙ୍କୁ ନେଇ ପାଶ୍ ିଗମନ କଲା । ସେଠାରେ ସେ ଦୁହେଁ

ମେରିଯୁସ ଓ ଲୁସୀଙ୍କର ଆସନ୍ନ ପରିଣୟ ସମ୍ବନ୍ଧରେ ସମସ୍ତ ଅବଗତ ହୋଇ ହତାଶ ହେଲେ ନାହିଁ । ଥେନାର୍ଡିୟାର ମେରିଯୁସଙ୍କର ସାକ୍ଷାତ କରିବାକୁ ଗଲା, ତା ସହିତ ଲୁସୀ ବି ଗଲେ । ଗୋଟିଏ ସୁରମ୍ୟ ଭବନରେ ମେରିଯୁସ୍ ଉପବିଷ୍ଟ, ଲୁସୀ ତାଙ୍କ ପାର୍ଶ୍ୱରେ ଦଣ୍ଡାୟମାନା ହୋଇଅଛନ୍ତି, ଏପରି ସମୟରେ ଥେନାର୍ଡିୟାର ଓ ଲୁସୀ ସେଠାରେ ପ୍ରବେଶ କଲେ । ମେରିଯୁସ୍ ସସମ୍ଭ୍ରମ ଗାତ୍ରୋତ୍ଥାନ କରି ଦୁହିଁଙ୍କୁ ପରମ ଆଦରରେ ବସିବାକୁ ଆସନ ଦେଲେ ।

ଥେନାର୍ଡିୟାର ଲୁସୀକୁ ଲକ୍ଷ୍ୟ କରି ଯୁବକଙ୍କୁ କହିଲା,—'ଏହି ବାଳିକା ସହିତ ଆପଣଙ୍କର ଆସନ୍ନ ପରିଣୟ କଥା ଶୁଣି ମୁଁ ବିସ୍ମିତ ହୋଇ ଅଛି । ଆପଣ ଲୁସୀଙ୍କୁ ବିବାହ କରନ୍ତୁ ବା ନକରନ୍ତୁ, ସେ ବିଷୟରେ ମୋର କହିବାର କିଛି ନାହିଁ – କିନ୍ତୁ ଏହି ଅଜ୍ଞାତ କୁଳଶୀଳା ବାଳିକାର ପାଣିଗ୍ରହଣ କରିବେ କିପରି ? ତାହାର ମାତା ବେଶ୍ୟା ବୃତ୍ତି କରୁଥିଲା, ଏ ନଗରରେ ଜନ୍ ନାମକ କୌଣସି ଫେରାର୍ ଆସାମୀ ତାହାର ଉପପତି ଥିଲା । ମୁଁ ଆପଣଙ୍କର ପିତୃବନ୍ଧୁ ଏବଂ ହିତାକାଂକ୍ଷୀ । ମୋ କଥା ଶୁଣନ୍ତୁ, ଏହି ଜାରସମ୍ଭବା ବାଳିକାକୁ ବିବାହ କରି ଶରି ନିର୍ମଳ ପଣ୍ଟମାର୍ସି କୁଳରେ କଳଙ୍କ ଲଗାନ୍ତୁ ନାହିଁ ।'

ଏ କଥା ଶୁଣି ଲୁସୀଙ୍କର ପ୍ରାଣ ବିଦୀର୍ଣ୍ଣ ହୋଇଗଲା, ତାଙ୍କ ନୟନରୁ ଧାର ଧାର ଲୋତକ ବହିଲା । ମେରିଯୁସ୍ ଅଧୋବଦନ ଓ ନୀରବ ରହିଲେ । ଥେନାର୍ଡିୟାର ପୁନର୍ବାର କହିଲା,--'ଦୈହିକ ଓ ମାନସିକ ସୌନ୍ଦର୍ଯ୍ୟରେ ଲୁସୀ ଆଦୌ ଲୁସୀର ସମକକ୍ଷ ନୁହେ । ଆପଣ ଉଭୟଙ୍କୁ ଦେଖିଛନ୍ତି, ଉଭୟଙ୍କ ସହିତ ଆଳାପ କରିଛନ୍ତି—ସତ୍ୟ କରି କହନ୍ତୁ, ଅଧିକ ସୁନ୍ଦରୀ କିଏ, କାହାର ବା ପ୍ରୀତିଭକ୍ତି ଅଧିକ ପ୍ରକଟିତ ?'

ମେରିଯୁସ୍ ପ୍ରୀତିପ୍ରଫୁଲ୍ଲ ମୁଖରେ କହିଲେ, 'ମହାଶୟ, ଆପଣଙ୍କର ଲୁସୀ ଅନବଦ୍ୟାଙ୍ଗୀ, ତାଙ୍କ ମାନସିକ ସଦ୍‌ବୃତ୍ତିର ସମୂହ ବି ସବିଶେଷ

ପୁଷ୍ଟ ଓ ବର୍କିତ । ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରେଁ, ସେ ହରି ଲୁସୀ ଅଚିରେ ଆତ୍ମାନୁରୂପ ବର ଲାଭ କରିବେ । ତେବେ ତାଙ୍କୁ ମୁଁ କାହିଁକି ପତ୍ନୀରୂପେ ଗ୍ରହଣ କରି ନାହିଁ, ତାହା ମୁଁ କହି ପାରିବି ନାହିଁ । ସବୁ ଈଶ୍ୱରଙ୍କର ଇଚ୍ଛାଧୀନ ।'

ଥେନାଡ଼ିୟାର କହିଲା, 'ଆପଣଙ୍କ କଥାର କିଛି ଅର୍ଥ ନାହିଁ । ଯେଉଁ ବାଳିକା ମୋ ଘରେ ଦାସୀ ବୃତ୍ତି କରି ବଞ୍ଚିଥିଲା, ସେ ବ୍ୟାରନେସ୍-ପଦର ଯୋଗ୍ୟ ହେଲା ଏବଂ ମୋର ରାଜଭୋଗରେ ପାଳିତା ସର୍ବାଙ୍ଗ-ସୁନ୍ଦରୀ କନ୍ୟାଟି ଏକାବେଳକେ ନଗଣ୍ୟ ! ଦେଖୁଛି ଆପଣଙ୍କର ବିବେଚନା-ଶକ୍ତି ନାହିଁ, ଆପଣଙ୍କ ନିକଟରେ ଭଦ୍ରଲୋକର ମାନ ନାହିଁ, ପିତୃବନ୍ଧୁର ସମ୍ମାନ ନାହିଁ, ରୂପଗୁଣର ବି ଆଦର ନାହିଁ ।'

ଲୁସୀ ଏତେ ବେଳ ଯାଏ ନୀରବ ହୋଇ ଅଧୋମୁଣ୍ଡରେ ବସି ଥିଲେ । ସେ ବର୍ତ୍ତମାନ ହଠାତ୍ ଉଠି କହିଲେ, 'ବାବା କ୍ଷାନ୍ତ ହୁଅନ୍ତୁ । ଉଦାର ହୃଦୟ ବ୍ୟାରନ୍‌ଙ୍କୁ ଆଉ ଭର୍ତ୍ସନା କରନ୍ତୁ ନାହିଁ—ଏହାଙ୍କର କୌଣସି ଦୋଷ ନାହିଁ । ଏ ମୋତେ ବାଗ୍‌ଦାନ କରି ନାହାନ୍ତି । ଏ ମହାତ୍ମା ପ୍ରିୟ ଭଗିନୀ କୁସୀଙ୍କୁ ବ୍ୟାରନେସ୍ କରିବାକୁ କୃତସଂକଳ୍ପ ହୋଇ ଉଦାରତାର ପରିଚୟ ଦେଇଛନ୍ତି । ନିଜର ଭାଗ୍ୟ ମନ୍ଦ ଥିବାବେଳେ ପର ନିନ୍ଦାରେ ଫଳ କଣ ? ବିଶେଷତଃ ସାଧୁଜନଙ୍କ ନିନ୍ଦାରେ ପାପ ହୋଇଥାଏ ସିନା ? ମେରି କେବେ ଅସତୀ ନଥିଲେ । ଉଦରାନ୍ନ ପାଇଁ ମେରିଙ୍କୁ ଦନ୍ତ ଓ କେଶ ବିକ୍ରୟ କରିବାକୁ ହୋଇଥିଲା । ଏହା କଣ ଅସତୀର କାର୍ଯ୍ୟ ? ପରୋପକାରନିରତ ଫାଦାର୍ ମ୍ୟାଡ଼ାଲିନ୍ ଆମର କୌଣସି ଅନିଷ୍ଟ କରି ନାହାନ୍ତି । ସେ ତ ଯଥା ସମୟରେ ଓ ଯଥା ସ୍ଥାନରେ ବ୍ୟାରେନଙ୍କର ସାକ୍ଷାତ୍ ନପାଇ କୁସୀଙ୍କୁ ସଙ୍ଗେ ନେଇ ଦେଶାନ୍ତରକୁ ଚାଲି ଯାଉଥିଲେ । ଆପଣ ତ ତାଙ୍କୁ ପୁଲିସ ଧରାଇ ଦେଇଥିଲେ । ଆପଣଙ୍କ ଲାଗି ଫାଦାର୍ ଜେଲରେ ବ୍ୟାରନଙ୍କ ହାତରେ କୁସୀଙ୍କୁ ସମର୍ପଣ କରିଛନ୍ତି, ଯାହାର ଅନିଷ୍ଟ କରିବାକୁ ଯାଅ, ତାହାର ଇଷ୍ଟ ହୁଏ, ଅନିଷ୍ଟ ହୁଏ ନିଜର । ଦୁଃଖିନୀ ମେରିଙ୍କର ପ୍ରେରିତ ଅର୍ଥ ଆମେମାନେ ଆତ୍ମସାତ୍

କରନ୍ତୁ—ଲୁସୀକୁ ଦାସୀ ବୃତ୍ତି କରି ଖାଇବାକୁ ହୋଇଅଛି । ମେରି ଦୁଃଖ କଷ୍ଟ ସହିବ ପ୍ରତି ମାସ ଟଙ୍କା ପଠାଉଥିଲେ କଣ ମୋର ଖେଳନା ଓ ବିଳାସ ପାଇଁ ?

'ଏତେ ସ୍ୱାର୍ଥପରତା ଧର୍ମ୍ମ ସହିବ କିପରି ? ଅପତ୍ୟ ସ୍ନେହର ବଶବର୍ତ୍ତିନୀ ହୋଇ ମେରି ଯେଉଁ ଦିନ ମସ୍ତକର କେଶ ବିକ୍ରୟ କରି ଲୁସୀ ପାଇଁ ଶୀତବସ୍ତ୍ର ପଠାଇଥିଲେ, ସେ ଦିନ ତାହା ଆପଣମାନେ ମୋତେ ଦେଇଥିଲେ । ଆପଣମାନେ ସ୍ୱାର୍ଥ ପାଇଁ ନୀତିର ଅବମାନନା କରି ଦୁଃଖିନୀ ଲୁସୀର ଶୀତବସ୍ତ୍ର କାଢ଼ିନେଇ ମୋ ଦେହରେ ଝୁଲାଇ ଥିଲେ, ଦେଖନ୍ତୁ ଆଜି ଦଶ ବର୍ଷ ପରେ ସେହି ପ୍ରତିହିଂସା ପରାୟଣ ନୀତି ମୋର କୋଳରୁ ହୃଦୟ-ସର୍ବସ୍ୱ ଧନ ମେରିପୁସଙ୍କୁ କାଢ଼ି ନେଇ ଲୁସୀର ଅଞ୍ଚଳରେ ବାନ୍ଧି ଦେଇଛି ।'

ପରେ ଲୁସୀ ଲୋତକପୂର୍ଣ୍ଣ ଚକ୍ଷୁରେ କୁସୀଙ୍କ ହାତ ଧରି କହିଲେ, 'ଭାଇ କୁସୀ, ଏଇ ପତିଧନ ତୁମରି, ତୁମେ ଏହାଙ୍କ ପାଇଁ ତପସ୍ୟା କରିଛ । ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ମୋ ପିତାହିଁ ତୁମକୁ ଏହି ସୌଭାଗ୍ୟ-ସୋପାନରେ ଉଠାଇଛନ୍ତି । ଅତଏବ ଅଶ୍ରୁବିନୀୟ ସମ୍ପଦରେ ସମ୍ମାନିତା ହେଲେହେଁ ସେମାନଙ୍କୁ ଭୁଲି ଯିବ ନାହିଁ ।'

ଶେଷରେ ଲୁସୀ ମେରିପୁସଙ୍କ ସମ୍ମୁଖରେ ଯାଇ ପ୍ରୀତି-ବିକଶିତ ବଦନରେ କହିଲେ—'ବ୍ୟାରେନ୍ ମହାଶୟ, ଆପଣ ମଣ୍ଟ ଫାର୍ମିଲୋରୁ ଆସିବା ସମୟରେ ମୋତେ କହିଥିଲେ, 'ସୁନ୍ଦରି, ଦୁଃଖିତ ହୁଅ ନାହିଁ, ମୁଁ ଏଠାକୁ ପୁଣି ଆସିବି ।' ଆପଣ ସେ କଥା ରଖିଲେ ନାହିଁ କିଆଁ ? ଦିନ ପରେ ଦିନ ଗଲା, ତଥାପି ଆପଣ ମଣ୍ଟ ଫାର୍ମିଲୋକୁ ଆଉ ଥରେ ଚରିତାର୍ଥ କଲେ ନାହିଁ କାହିଁକି ? ଆପଣ ମଣ୍ଟ ଫାର୍ମିଲୋକୁ ଯାଇଥିଲେ, ମୁଁ କଣ ଆପଣଙ୍କୁ ଧରି ରଖିଥାନ୍ତି ? ମାୟାଜାଲରେ ପକାଇ ଦେଇଥାନ୍ତି ? ପକାଇଲେ ମଧ୍ୟ ଆପଣ ତ ବିଦ୍ୱାନ୍, ତପସ୍ୱୀ, ଜିତ-ମନ୍ମଥ ଓ ସହିଷ୍ଣୁ—ସେ

ଜାଲ କଣ ଛିନ୍ନ କରି ପାରି ନଥା'ନ୍ତେ ? ଆପଣ ନିର୍ଲିପ୍ତ ଭାବରେ ହତଭାଗିନୀର ମନସ୍କାମ ପୂର୍ଣ୍ଣ କରି ଆସି ପାରିଥାନ୍ତେ ।

'ଯାହା ହେଉ ବ୍ୟାରେନ୍ ମହାଶୟ ! ବର୍ତ୍ତମାନ ମୁଁ ଯାଉଛି— ଆଉ ବିଳମ୍ବ କରି ଲାଭ ନାହିଁ । ଆପଣ ରୂପ ଗୁଣ ଗୃହାନ୍ତି ନାହିଁ, ଆଦର ସ୍ନେହ ଗୃହାନ୍ତି ନାହିଁ, ଗୃହାନ୍ତି କେବଳ ତପସ୍ୟା । ମୁଁ ତପସ୍ୟା କରି ନାହିଁ, ଏଣୁ ଆପଣଙ୍କୁ ପାଇ ପାରିଲି ନାହିଁ । ମୋର ଆଉ କହିବାର କିଛି ନାହିଁ । ଜଗତରେ ସାଧନା ଭିନ୍ନ ଆଉ କିଛି ହୁଏ ନାହିଁ—ମୁଁ ସାଧନା କରି ନାହିଁ, ମୋର ଏ ଜଗତରେ ରହି କିଛି ଫଳ ନାହିଁ । ମୁଁ ଯାଉଛି, ସେଇ କରୁଣାମୟ ପରମେଶ୍ୱରଙ୍କର ଦ୍ୱାରସ୍ଥ ହେବି—ସେ ମୋର ତାପିତ ପ୍ରାଣରେ ଶାନ୍ତି ଢାଳିବେ । ବିଦାୟ !'

ଏହା କହୁଁ କହୁଁ ଲୁସୀ ମୂର୍ଚ୍ଛିତା ହୋଇ ପଡ଼ିଲେ । ବହୁ କଷ୍ଟରେ କିଛିକ୍ଷଣ ପରେ ତାଙ୍କର ମୂର୍ଚ୍ଛାପନୋଦନ ହେଲା । ଥେନାଡ୍ୟୁର ତାଙ୍କୁ ନିଜ ପଲ୍ଲୀକୁ ନେଇଗଲା । ସେଠାରେ ଲୁସୀ ଭଗ୍ନ ହୃଦୟରେ ପ୍ରାଣତ୍ୟାଗ କଲେ ।

ଯାଅ ଲୁସୀ, ସ୍ୱର୍ଗକୁ ଯାଅ—ସ୍ୱର୍ଗହିଁ ତୁମ ଭଳି ଦେବୀଙ୍କର ଯୋଗ୍ୟ ସ୍ଥାନ ! ତୁମେ ପ୍ରତିଭାଶାଳିନୀ, ସତ୍ୟବାଦିନୀ, ପରାର୍ଥେ ସ୍ୱାର୍ଥତ୍ୟାଗିନୀ । ତୁମର ବାକ୍ୟରେ ନ୍ୟାୟ, ଧର୍ମ-ନିର୍ଯ୍ୟାସ, ଭକ୍ତି ଓ ପ୍ରେମ ଉଚ୍ଛ୍ୱସିତ ! ତୁମେ ଯେଉଁ ନିଃସ୍ୱାର୍ଥ ପ୍ରେମର ଆଦର୍ଶ ଦେଖାଇ ଗଲ, ତାହା ଚିରଦିନ ରମଣୀ ହୃଦୟରେ ସମୁଜ୍ଜ୍ୱଳ ଆଲୋକ ଢାଳିବ, ସନ୍ଦେହ ନାହିଁ ।

ଫାଦାର୍ ମ୍ୟାଡ୍‌ଲିନ୍ ଲୁସୀଙ୍କର ସମାଧି ନିର୍ମାଣ ନିମିତ୍ତ ଥେନାଡ୍ୟୁର ହାତରେ ଏକ ଲକ୍ଷ ଫ୍ରାଙ୍କ୍ ଅର୍ପଣ କରିଥିଲେ ।

ମହାସମାରୋହ ସହିତ କୁସୀଙ୍କ ସଙ୍ଗେ ମେରିୟୁସଙ୍କର ପରିଣୟ ସମ୍ପନ୍ନ ହେଲା । ଆନନ୍ଦର ଢେଉ ଖେଳିଗଲା । ମେରିୟୁସ୍ ଓ କୁସୀ ସୁଖ ସନ୍ତୋଷରେ ଦିନ ଯାପନ କରିବାକୁ ଲାଗିଲେ । ମ୍ୟାଡ୍‌ଲିନ୍ ତାଙ୍କର

ଅବଶିଷ୍ଟ ସମ୍ପତ୍ତି ଲୁସୀଙ୍କୁ ଅର୍ପଣ କରି ଆଉ ତିନି ଚାରି ବର୍ଷ କାଳ ମାତ୍ର ଜୀବିତ ଥିଲେ । ଯେତେବେଳେ ମେରିଯୁସ, ତାଙ୍କର ମାତାମହ, ଲୁସୀ ଓ ଫାଦାର୍ ମ୍ୟାଣ୍ଡାଲିନ୍ ବସି କୌତୁକାଳାପ କରୁଥିଲେ, ଏପରି ସମୟରେ ମ୍ୟାଣ୍ଡାଲିନ୍ ପ୍ରୀତି-ପ୍ରଫୁଲ୍ଲ ମୁଖରେ ମେରିଯୁସଙ୍କୁ କହିଲେ, 'ବ୍ୟାରନ୍ ମହାଶୟ, ତୁମର ଅଗାଧ ପିତୃଭକ୍ତି, ସରଳତା, ଉଦାରତା ଓ ଧର୍ମ ପରାୟଣତା ଯୋଗେ ଏବଂ ଲୁସୀଙ୍କର ଅପୂର୍ବ ସହିଷ୍ଣୁତା ଯୋଗେ ତୁମ ଦୁହିଁଙ୍କର ଭାଗ୍ୟ ପରିବର୍ତ୍ତନ ହୋଇଅଛି ।' ଯୁବକ ସ୍ମିତ ମୁଖରେ କହିଲେ—'ଏ ପରିବର୍ତ୍ତନ ମୂଳରେ ଆପଣ ବିଦ୍ୟମାନ ।'

ମେରିଯୁସଙ୍କର ମାତାମହ କହିଲେ, 'ଫାଦାର୍, ମେରିଯୁସ ଓ ଲୁସୀଙ୍କର, ହେବାର୍ଟ ଓ ମେରିଙ୍କର, ଲୁସୀଙ୍କର, ସର୍ବୋପରି ଆପଣମାନଙ୍କର ସଚ୍ଚରିତାବଳୀ ଯେପରି ଗୋଟାଏ ସ୍ୱଚ୍ଛସୁନ୍ଦର **ପୀୟୂଷ-ପ୍ରବାହ** ।'

*